ବିଶ୍ୱ ପ୍ରସିଦ୍ଧ ଟୀକାକାର

# ପଣ୍ଡିତ ଶ୍ରୀଧରସ୍ୱାମୀ



# ବିଶ୍ୱ ପ୍ରସିଦ୍ଧ ଟୀକାକାର

# ପଣ୍ଡିତ ଶ୍ରୀଧର ସ୍ୱାମୀ

ସଂକଳକ - ଡଃ ଭାଗବତ ପ୍ରସାଦ ଦାସ

# ବିଶ୍ୱପ୍ରସିଦ୍ଧ ଟୀକାକାର ପଣ୍ଡିତ ଶ୍ରୀଧର ସ୍ୱାମୀ

ସଂକଳକ :
ଡଃ. ଭାଗବତ ପ୍ରସାଦ ଦାସ, ଏମ୍.ଏ (ଓଡ଼ିଆ), ଏମ୍.ଏ(ଇଂରାଜୀ),
ଏମ୍. ଏଡ୍.,ଏମ୍.ଫିଲ୍.,ପିଏଚ୍.ଡ଼ି.
ରେମୁଣା, ବାଲେଶ୍ୱର - ୭୫୬୦୧୯

ପ୍ରକାଶକ :
'ଶ୍ରୀଧର ସ୍ୱାମୀ ସ୍ମୃତି ପରିଷଦ' ମୟୂରଗ୍ରାମ,
ବଡ଼ପାଳ, ରେମୁଣା, ବାଲେଶ୍ୱର
ସ୍ୱତ୍ତ୍ୱାଧିକାରୀ :
ଶ୍ରୀ ହରେକୃଷ୍ଣ ଗିରି
ଶ୍ରୀ ଗୋପୀନାଥ କୃପାକୁଟୀର
ରେମୁଣା, ବାଲେଶ୍ୱର, ପିନ୍ - ୭୫୬୦୧୯

ମୁଦ୍ରାକାର :
କ୍ଷୀରଚୋରା ଅଫ୍‌ସେଟ୍
ଜାନୁଗଂଜ, ବାଲେଶ୍ୱର

ପ୍ରଥମ ସଂସ୍କରଣ :
ପବିତ୍ର ମାଘ ସପ୍ତମୀ
ତା୧୯ ଫେବୃୟାରୀ, ୨୦୦୨ ।
(ଶ୍ରୀ ଶ୍ରୀଧର ସ୍ୱାମୀଙ୍କ ଜୟନ୍ତୀ)

ମୂଲ୍ୟ ଟ. ୧୦୦/- (ଏକଶତ ଟଙ୍କା) ମାତ୍ର ।

**BISWA PRASIDHHA TIKAKAR PANDIT SRIDHARASWAMI**

Compliler : Dr. Bhagabat Prasad Das, M.A. (O), M.A. (Eng.)
M.Ed, M.Phil, Ph.D.
Publisher : Sridhara Swami Smriti Parishad"
Mayurgram, Badapal, Remuna, Bls.
Proprietor : Harekrushna Giri
Sri Gopinth KrupaKutir
Gouradanda, Remuna, Balasore
Pin - 756019
Printer : Kshirachora Offset, Januganj Golei, Balasore
First Edition :
Pabitra Magha Saptami
Dated : 19th February 2002 (Sridharaswami Jayanti)
Price : Rs. 100/- (One Hundred) Only.

# ଅଗ୍ରଲେଖ

ଯାହା ସତ୍ୟ, ଯାହା ଶାଶ୍ୱତ, ତାହା କାଳଗର୍ଭରେ କେବେ ବିଲୀନ ହୋଇପାରେନା । ପାଉଁଶ ତଳର ଅଗ୍ନିକଣା ପରି ତାହା ଦିନେ ନା ଦିନେ ଆତ୍ମ ପ୍ରକାଶ କରି ନୂତନ ଆଲୋକରେ ବିଶ୍ୱକୁ ମୁଗ୍ଧ ଚକିତ କରିଥାଏ । ଗୋପବଂଧୁଙ୍କ ଭାଷାରେ -

"ଲୁଚି ରହେ ନାହିଁ ସତ୍ୟ ଚିରଦିନ କାଳେ ହୁଏ ତା ବିବୃତି
ନାହିଁ ଧର୍ମପଦ ଭାଙ୍ଗିଛି ଦେଉଳ ଅଛି ଏବେ ଜନଶ୍ରୁତି" ।(ଧର୍ମପଦ)

ରେମୁଣା ତଥା ଓଡ଼ିଶାର ଗର୍ବ ଓ ଗୌରବ ବିଶ୍ୱ ପ୍ରସିଦ୍ଧ ଟୀକାକାର ପଣ୍ଡିତ ଶ୍ରୀଧର ସ୍ୱାମୀ ଭାରତୀୟ ଧାର୍ମିକ ଓ ଦାର୍ଶନିକ ପରଂପରାର ଏକ ବଳିଷ୍ଠ ପ୍ରତିଭା । ଅଦ୍ୱୈତବାଦର ଅନ୍ୟତମ ପ୍ରବକ୍ତା ଭାବରେ ସେ ଯଶସ୍ୱୀ । ମାତ୍ର କ୍ଷୋଭର ବିଷୟ, ଅନେକ ଓଡ଼ିଆ ଏହି ବିଶ୍ୱ ପ୍ରସିଦ୍ଧ ଭାଷ୍ୟକାରଙ୍କ ସଂପର୍କରେ ଜ୍ଞାତ ନୁହଁନ୍ତି । ପ୍ରଖ୍ୟାତ ଯଶା ଟୀକାକାର ଶ୍ରୀଧର ସ୍ୱାମୀଙ୍କ ଲୁପ୍ତ ପ୍ରତିଭାକୁ ଚିହ୍ନଟ ଓ ପ୍ରସାରିତ କରିବା ଉକ୍ତ ସଂକଳନର ପ୍ରଧାନ ଉଦ୍ଦେଶ୍ୟ ।

ରେମୁଣାର ଅନ୍ୟତମ ବରପୁତ୍ର ସୁସାହିତ୍ୟିକ ସ୍ୱର୍ଗତ ଚନ୍ଦ୍ରମୋହନ ମହାରଣା ଶ୍ରୀଧର ସ୍ୱାମୀଙ୍କ ସମ୍ବନ୍ଧରେ ମାସିକ 'ମୁକୁର'ରେ ପ୍ରକାଶିତ କରି ପ୍ରଥମେ ଲୋକଲୋଚନକୁ ଆଣିଥିଲେ ବୋଲି ଗବେଷକଗଣ ଅଦ୍ୟାବଧି ମତ ଦେଇ ଆସୁଛନ୍ତି । କିନ୍ତୁ ଉକ୍ତ ପ୍ରବନ୍ଧଟି 'ମୁକୁର' ରେ କେଉଁ ନିର୍ଦ୍ଦିଷ୍ଟ ସଂଖ୍ୟା କିମ୍ବା ବର୍ଷରେ ପ୍ରକାଶିତ, ତା'ର ସୂଚନା ନାହିଁ । ଚନ୍ଦ୍ରମୋହନ ମହାରଣାଙ୍କ 'ଶ୍ରୀଧର ସ୍ୱାମୀ' ଶୀର୍ଷକ ପ୍ରବନ୍ଧଟି ଉତ୍କଳ ସାହିତ୍ୟ ୬ଷ୍ଠ ବର୍ଷ ୪ର୍ଥ ସଂଖ୍ୟା, ଶ୍ରାବଣ ୧୩୦୯, ପୃଷ୍ଠା ୭୭,୭୮ରେ ପ୍ରକାଶିତ ହୋଇଅଛି (ଏବେ ଉକ୍ତ ପ୍ରବନ୍ଧଟି ଚନ୍ଦ୍ରମୋହନଙ୍କ ଗ୍ରନ୍ଥାବଳୀ - ୧୯୯୧ - ସଂଗ୍ରାହକ - ଡଃ ଅରବିନ୍ଦ ଗିରି ପ୍ରକାଶିତ) । ଚନ୍ଦ୍ରମୋହନଙ୍କ ପୂର୍ବରୁ ଶ୍ରୀ ରାମଚନ୍ଦ୍ର ନନ୍ଦ ଢେଙ୍କାନାଳ ଇତିହାସ (୧୯୨୯)ରେ ଶ୍ରୀଧର ସ୍ୱାମୀଙ୍କ ସଂପର୍କରେ ପ୍ରଥମେ ଉଲ୍ଲେଖ କରିଥିଲେ ବୋଲି ଅନେକ ଗବେଷକ ମତ ଦିଅନ୍ତି । ସ୍ୱର୍ଗତ ଚନ୍ଦ୍ରମୋହନ ଓ ରାମଚନ୍ଦ୍ର ନନ୍ଦଙ୍କ ଠାରୁ (୧୯୨୯ ଠାରୁ ଆଜି ପର୍ଯ୍ୟନ୍ତ ୨୦୦୨) ଅନ୍ୟୁନ ୨୫ଜଣରୁ ଉର୍ଦ୍ଧ୍ୱ ପ୍ରତିଷ୍ଠିତ ଗବେଷକ, ଗବେଷିକାଗଣ ଶ୍ରୀଧର ସ୍ୱାମୀଙ୍କ ସମ୍ବନ୍ଧରେ ଯେଉଁ ମୂଲ୍ୟବାନ ଐତିହାସିକ ପ୍ରମାଣ ମାନ ଦେଇଛନ୍ତି, ସେହି ସମସ୍ତ ତଥ୍ୟକୁ ବିଶ୍ଳେଷଣ କଲେ ଶ୍ରୀଧର ସ୍ୱାମୀ ବାଲେଶ୍ୱର ଜିଲ୍ଲା ରେମୁଣାର ଲୋକ ବୋଲି ପ୍ରମାଣିତ ହୁଏ ।

ଶ୍ରୀଧର ସ୍ୱାମୀଙ୍କର ସମୟ ନିରୂପଣ, ସାଧନା କ୍ଷେତ୍ର, ତାଙ୍କର ପାଣ୍ଡିତ୍ୟ, ଦର୍ଶନ ତତ୍ତ୍ୱ, ଅଲୌକିକ ଧୀମତ୍ତା, ସାହିତ୍ୟକୃତି ଓ ଟୀକା ସମୂହର କୃତିତ୍ୱ ଆଦି ସଂପର୍କରେ ପୁଙ୍ଖାନୁପୁଙ୍ଖ ଆଲୋଚନା କରିବା ଗବେଷଣା ସାପେକ୍ଷ । ଉକ୍ତ ସଂକଳନରେ ୨୧ଟି ପ୍ରବନ୍ଧ ମାଧ୍ୟମରେ ପଣ୍ଡିତ ଶ୍ରୀଧର ସ୍ୱାମୀଙ୍କ ବିଭିନ୍ନ ଦିଗ ଉପରେ ଆଲୋକପାତ କରିବା ପାଇଁ ପ୍ରାଥମିକ ପ୍ରୟାସ କରାଯାଇଛି । ଶ୍ରୀଧର ସ୍ୱାମୀଙ୍କ ସମୟ ପ୍ରାୟତଃ ଚତୁର୍ଦ୍ଦଶ ଶତାବ୍ଦୀ । ତେଣୁ ବହୁ ବର୍ଷ ତଳର ପ୍ରଖ୍ୟାତ ଯଶା ପଣ୍ଡିତ ଶ୍ରୀଧର ସ୍ୱାମୀଙ୍କର ଦୁଷ୍ପ୍ରାପ୍ୟ ଗ୍ରନ୍ଥଗୁଡ଼ିକ

ଲୋକ ଲୋଚନକୁ ଆସିପାରିନାହିଁ କିମ୍ବା ସେଗୁଡ଼ିକ ଆଲୋଚିତ ହୋଇନାହିଁ । ତେଣୁ ଉକ୍ତ ସଂକଳନରେ ଅନେକ ପ୍ରବନ୍ଧ ଜନଶ୍ରୁତି ଓ କିମ୍ବଦନ୍ତୀ ଉପରେ ଆଧାରିତ ଓ ଅନେକ ପ୍ରବନ୍ଧ ସ୍ଥଳବିଶେଷରେ ଏକ ପ୍ରକାର ତଥା ପୁନରାବୃତ୍ତିମୂଳକ ହୋଇ ପଡ଼ିଛି ।

ଶ୍ରୀଧର ସ୍ୱାମୀଙ୍କ ସଂପର୍କରେ ଏହାକୁ ଏକ ପୂର୍ଣ୍ଣାଙ୍ଗ ପ୍ରାମାଣିକ ଆଲୋଚନା ଗ୍ରନ୍ଥ ବୋଲି କହି ହେବ ନାହିଁ । ଶ୍ରୀଧର ସ୍ୱାମୀଙ୍କ ସଂପର୍କରେ ଲବ୍ଧ ପ୍ରତିଷ୍ଠିତ ପ୍ରାବନ୍ଧିକ, ଗବେଷକଙ୍କର ଗବେଷଣାତ୍ମକ ପ୍ରବନ୍ଧ ଗୁଡ଼ିକୁ ନେଇ ସଂକଳନଟିଏ କରିବା ବସ୍ତୁତଃ ଏହା ସର୍ବ ପ୍ରଥମ ଉଦ୍ୟମ ।

ଶ୍ରୀଧର ସ୍ୱାମୀଙ୍କ ସଂପର୍କରେ ସଂକଳନଟି ଏ ପ୍ରକାଶ କରିବାର ଇଚ୍ଛା ଓ ସ୍ୱପ୍ନ ବହୁ ଦିନରୁ; ମାତ୍ର ଅର୍ଥାଭାବ ତଥା ଗବେଷଣାତ୍ମକ ଲେଖା ଅଭାବ ଯୋଗୁଁ ଏହାର ପ୍ରକାଶ ବହୁ ବିଳମ୍ବିତ ହୋଇଛି । ପ୍ରାୟତଃ ୧୦ ବର୍ଷରୁ ଉର୍ଦ୍ଧ୍ୱ ଏହି ସଂକଳନ ପାଇଁ ପ୍ରଚେଷ୍ଟା ଅବ୍ୟାହତ ରଖିଥିଲି । ବହୁ ପ୍ରତିଶ୍ରୁତି, ଆଶ୍ୱାସନା ପାଇ ମଧ୍ୟ ଶ୍ରୀଧର ସ୍ୱାମୀଙ୍କ ପୁସ୍ତକଟି ବାସ୍ତବ ରୂପ ନେଇ ପାରୁନଥିଲା । ଆନନ୍ଦ ଓ ଗର୍ବର କଥା ରେମୁଣାର ଅନ୍ୟତମ ଗବେଷକ ଶ୍ରୀ ହରେକୃଷ୍ଣ ଗିରିଙ୍କ ଆନ୍ତରିକ ପୂର୍ଣ୍ଣ ଉତ୍ସାହ ଓ ଆର୍ଥିକ, ମାନସିକ ଦିଗରେ ସାହାଯ୍ୟ ଉକ୍ତ ଉଦ୍ୟମକୁ ତ୍ୱରାନ୍ୱିତ କରିଥିଲା । ସେ ବିଭିନ୍ନ ସ୍କୁଲ କଲେଜମାନଙ୍କରେ ଗୀତା ପ୍ରଶ୍ନୋତ୍ତର ପ୍ରତିଯୋଗିତା ମାଧ୍ୟମରେ ଶ୍ରୀଧର ସ୍ୱାମୀଙ୍କ ଜୟନ୍ତୀ ୧୯୯୨ ମସିହାରୁ ଅଦ୍ୟାବଧି ପାଳନ କରିଆସୁଛନ୍ତି । ଏହି ଅବସରରେ ତାଙ୍କୁ ମୁଁ ଆନ୍ତରିକ ଅଭିନନ୍ଦନ ଓ କୃତଜ୍ଞତା ଜଣାଉଛି ।

ସଂକଳନ ପାଇଁ ଯେଉଁ ଚିନ୍ତାଶୀଳ ଗବେଷକ, ଗବେଷିକା, କଷ୍ଟ ସ୍ୱୀକାର କରି ପ୍ରବନ୍ଧମାନ ପଠାଇଛନ୍ତି ତାଙ୍କୁ କୃତଜ୍ଞତା ଜଣାଉଛି । ଅପରିହାର୍ଯ୍ୟ କାରଣ ବଶତଃ କେତେକ ପ୍ରବନ୍ଧକୁ ଏଥିରେ ସନ୍ନିବେଶ କିରାଯାଇ ପାରିନଥିବାରୁ ଦୁଃଖିତ ।

ସଂକଳନ ପ୍ରକାଶ ନିମନ୍ତେ 'ଶ୍ରୀଧର ସ୍ୱାମୀ ସ୍ମୃତି ପରିଷଦ, ମୟୂରଗ୍ରାମ - ସଭାପତି ଶ୍ରୀ ପ୍ରତାପ ଚନ୍ଦ୍ର ପଣ୍ଡା, ଇଂ ଦୟାଲ ଚନ୍ଦ୍ର ଦାଶ, ସାରଦାନନ୍ଦ ପାଲିତ, ଅଧ୍ୟାପକ କରୁଣାକର ଦାସ, ଲକ୍ଷ୍ମଣ ନାୟକ, ଜ୍ଞାନେନ୍ଦ୍ର ଦାସ, ପ୍ରଭାକର ସାହୁ ଏବଂ ଆହୁରି ଅନେକ ବନ୍ଧୁ ଆର୍ଥିକ ସହାୟତା କରିଥିବାରୁ ତାଙ୍କୁ ବିନମ୍ର କୃତଜ୍ଞତା ଜଣାଉଛି ।

ଶ୍ରଦ୍ଧେୟ ଛାତ୍ର ଶ୍ରୀମାନ୍ ସତ୍ୟରଂଜନ ରଣା, କ୍ଷୀରଚୋରା ଅଫସେଟ୍‌ର ମାଲିକ, ଉକ୍ତ ସଂକଳନର ମୁଦ୍ରଣ ଦାୟିତ୍ୱ ନେଇଥିବାରୁ ତାଙ୍କୁ ଶୁଭାଶିଷ ଜଣାଉଛି ।

ସଂକଳନର କେତେକ ସ୍ଥଳରେ ମୁଦ୍ରଣ ଦୋଷ ରହିଥାଇ ପାରେ । ଆଶା ପାଠକବର୍ଗ ଆବଶ୍ୟକ ସ୍ଥଳେ ସଂଶୋଧନ କରି ପାଠ କରିବା ସହିତ ଉଦାର ଗୁଣରେ କ୍ଷମା ଦେବେ । ସଂକଳନରେ ୨ୟ ସଂସ୍କରଣକୁ ଅଶୁଦ୍ଧିକୁ ଦୂର କରିବା ପାଇଁ ଅଧିକ ଯତ୍ନବାନ ହେବୁ ।

ଏହି ପୁସ୍ତକ ସୁଧୀପାଠକ, ଗବେଷକ ଓ ଛାତ୍ରଛାତ୍ରୀଙ୍କ ଦ୍ୱାରା ଆଦୃତ ହେଲେ ଶ୍ରମ ସାର୍ଥକ ହେବ ।

ସଂକଳକ

ଡଃ ଭାଗବତ ପ୍ରସାଦ ଦାସ

# ସୂଚୀପତ୍ର

# ଶ୍ରୀଧର ସ୍ୱାମୀ

● ଚନ୍ଦ୍ରମୋହନ ମହାରଣା

ଯେଉଁମାନେ ତତ୍ତ୍ୱ ଆବିଷ୍କାର କରନ୍ତି ଓ ଯେଉଁମାନେ ତତ୍ତ୍ୱବୋଧର ପଥ ପ୍ରଶସ୍ତ କରିଦିଅନ୍ତି, ସେମାନେ ଉଭୟେ ମାନବମଣ୍ଡଳୀର ଉପକାରୀ, ତେଣୁ ପ୍ରାତଃସ୍ମରଣୀୟ । ଗ୍ରନ୍ଥକାର ଓ ଟୀକାକାର ଅନନ୍ୟ ସମ୍ବନ୍ଧରେ ଏହିପରି ସମ୍ବନ୍ଧ ହୋଇ ଅମରତ୍ୱ ଲାଭ କରନ୍ତି । କାଳିଦାସଙ୍କ ସହିତ ମଲ୍ଲିନାଥ, ବ୍ୟାସଦେବଙ୍କ ସହିତ ଶ୍ରୀଧର ଏହିପରି ଅମର ହୋଇ ରହିଅଛନ୍ତି । ଏହି ଶ୍ରୀଧର ସ୍ୱାମୀଙ୍କ ଜୀବନୀ ଓ ବଂଶାବଳୀ ବିଷୟରେ ମୁଁ କୁତ୍ରାପି କୌଣସି ଉଲ୍ଲେଖ ଦେଖି ନାହିଁ । ପ୍ରାୟ ଚାରିବର୍ଷ ହେବ ଦୈବାତ୍ ଗୋଟିଏ ଘଟଣାରୁ ମୁଁ ଅନୁମାନ କରିବାକୁ ସାହସୀ ହେଲି ଯେ ସେହି ପ୍ରାତଃସ୍ମରଣୀୟ ଶ୍ରୀଧର ସ୍ୱାମୀଙ୍କର ଜନ୍ମଭୂମି ବାଲେଶ୍ୱର ଜିଲ୍ଲାର ଅନ୍ତଃପାତୀ ରେମୁଣା ବା ତାହାର ଅଦୂରବର୍ତ୍ତୀ ଗ୍ରାମ ଥିଲା ।

ରେମୁଣା-ନିବାସୀ ବୃନ୍ଦାବନ ପତି ନାମକ ବ୍ରାହ୍ମଣ ବାଳକ ମଧ-ଛାତ୍ରବୃତ୍ତି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ କଟକ ଟ୍ରେନିଂ ସ୍କୁଲ ସଂଲଗ୍ନ ସେଣ୍ଟ୍ରାଲ୍ କ୍ଲାସରେ ଅଧ୍ୟୟନ କରୁଥିଲା । ବୃନ୍ଦାବନର ପିତା ମହାଦେବ ପତି ପୁତ୍ରସ୍ନେହରେ ଆକୃଷ୍ଟ ହୋଇ ତାହାକୁ ଦେଖିବା ପାଇଁ କଟକ ଆଗମନ କଲେ; ତଦନନ୍ତର ଜଗନ୍ନାଥ ଦର୍ଶନ କରି କଟକରୁ ପ୍ରତ୍ୟାଗମନ କଲେ । ପୁରୀରେ ଅବସ୍ଥାନ କାଳରେ ସ୍ୱଗ୍ରାମବାସୀ ସଙ୍ଗତିସମ୍ପନ୍ନ ପରିଚିତ, ତୈଳଜାତୀୟ କୌଣସି ବ୍ୟକ୍ତି ତାଙ୍କୁ ଦାନଗ୍ରହଣ କରିବାକୁ ଅନୁରୋଧ କଲେ । ତୀର୍ଥ-ସ୍ଥାନରେ ଦାନ ଗ୍ରହଣ କଲେ ପୁଣ୍ୟ ହାନି ହୁଏ, ଏହି ବିଶ୍ୱାସ ହେତୁରୁ ପତି ଗୋସାଇଁ କ୍ରୋଧରେ ଅଧୀର ହୋଇ କହିଲେ, ''ତୁମେ ଜାଣନା, ଆମ୍ଭେ ଶ୍ରୀଧର ସ୍ୱାମୀଙ୍କ ବଂଶର, ଦରିଦ୍ର ହୋଇଗଲୁଁ ବୋଲି ଆମ୍ଭଙ୍କୁ ତୁମ୍ଭେ ତୀର୍ଥ ସ୍ଥାନରେ ଦାନ ଗ୍ରହଣ କରିବାକୁ କହୁଅଛ ।'' ସ୍ୱଗ୍ରାମବାସୀର ଦାନ ଗ୍ରହଣ ଅନୁରୋଧରେ ମହାଦେବ ପତି ଅତି ମର୍ମାହତ ହୋଇଥିଲେ । କଥାଟା କିଛିକାଳ ତାଙ୍କ ସ୍ମୃତିପଥରେ ଜାଗରୂକ ହୋଇ ରହିଲା । କଟକରେ ଅବସ୍ଥାନ ସମୟରେ ଦିନେ ସାୟଂ କାଳରେ ମୋ ଠାରେ ଏହି ଘଟଣାର ବିବୃତି କରି ସେ କ୍ଷୋଭ ପ୍ରକାଶ କଲେ । ମୁଁ ଶ୍ରୀଧର ସ୍ୱାମୀଙ୍କ ନାମୋଚ୍ଚାରଣ ଶୁଣି କ୍ଷଣକାଳ ବିସ୍ମିତ ହୋଇ ରହିଲି । ଅଧୁନା ଅଧଃପତିତ ଉତ୍କଳଭୂମି ଯେ କ୍ଷଣଜନ୍ମା ଶ୍ରୀଧର ସ୍ୱାମୀଙ୍କର ଜନ୍ମଭୂମି, ଏ ପ୍ରତୀତି ଏହା ଗ୍ରହଣ କରିବାକୁ ମନ କୁଣ୍ଠିତ ହେଲା । ''କେଉଁ ଶ୍ରୀଧର ସ୍ୱାମୀ ?'''ତାଙ୍କ ସହିତ ତୁମ୍ଭର ସମ୍ପର୍କ କଣ ?'', ''ତାଙ୍କ କଥା କଣ ଜାଣ ?'' ଇତ୍ୟାଦି ପ୍ରଶ୍ନ କରିବାରେ ପତି ଉତ୍ତର ଦେଲେ ଯେ ଶ୍ରୀମଦ୍ଭାଗବତ ଓ ଶ୍ରୀମଦ୍ଭଗବତ୍ ଗୀତାର ଟୀକାକାର ଶ୍ରୀଧରଙ୍କ କଥା ସେ କହୁଥିଲେ; ତାଙ୍କର ଜନ୍ମଭୂମି ରେମୁଣାର ଅଦୂରବର୍ତ୍ତୀ; ସେ ସଂସ୍କୃତ ଭାଷାରେ ବ୍ୟୁତ୍ପତ୍ତି ଲାଭ କରି ନବଦ୍ୱୀପରେ ପଣ୍ଡିତମାନଙ୍କ ସହବାସରେ

ଜୀବନର ଅଧିକାଂଶ କଟାଇଥିଲେ; ପୁରୀର ରାଜସଭାରେ ତାଙ୍କର ପ୍ରତିପତ୍ତି ଓ ଆଦର ଥିଲା; ଏବଂ କ୍ୱଚିତ୍ କାଶୀଗମନ କରୁଥିଲେ ।

ଭୂୟୋଽନୁସନ୍ଧାନରେ ଅବଗତ ହେଲି ଯେ ମରେଇଗାଁ ଶ୍ରୀଧରଙ୍କ ଜନ୍ମସ୍ଥାନ । ବଡସୋନ ଓ ଗଙ୍ଗାହାର ବଳଙ୍ଗର ଉପନଦୀ ଅଟନ୍ତି । ଏହି ତଟିନୀଦ୍ୱୟର ମଧ୍ୟବର୍ତ୍ତୀ ଓ ବଡସୋନର କୂଳବର୍ତ୍ତୀ ମରେଇଗାଁ ବର୍ତ୍ତମାନ ରେମୁଣାରୁ ପ୍ରାୟ ଦୁଇ କ୍ରୋଶ ଉତ୍ତରକୁ ଓ ଗନିପୁର ତାଲୁକର ଅନ୍ତଃପାତୀ ଅଟେ । ମୟୂରଭଞ୍ଜର ସୀମା ମରେଇଗାଁର ସମୀପବର୍ତ୍ତୀ । ଶ୍ରୀଧର ଦାଶ-ସଂଜ୍ଞକ ଥିଲେ । ତାଙ୍କର କୌଣସି ଉତ୍ତର ପୁରୁଷ ରେମୁଣା ନିବାସୀ ଥିଲେ ।

ଅପୁତ୍ରିକ ପତି-ସଂଜ୍ଞକ କୌଣସି ବ୍ରାହ୍ମଣଙ୍କର ପୌଷ୍ୟପୁତ୍ର ହୋଇ ଆସିଲେ ବୋଲି ପତିବଂଶରେ ପୂର୍ବୋକ୍ତ ମହାଦେବଙ୍କର ଜନ୍ମ । ସମ୍ଭବତଃ ପଶ୍ଚାତ୍ ମରେଇଗାଁର ଦାଶବଂଶ ଲୁପ୍ତ ହେଲା ଏବଂ ତାହାର ସ୍ୱତ୍ତ୍ୱ ଭୂସମ୍ପତ୍ତି ପତିମାନେ ଉତ୍ତରାଧିକାରିତ୍ୱ ସୂତ୍ରରେ ପ୍ରାପ୍ତ ହେଲେ । ଅଦ୍ୟାପି ମହାଦେବଙ୍କର ଜ୍ଞାତି ସେହି ବ୍ରହ୍ମୋତ୍ତର ଭୂସମ୍ପତ୍ତି ଭୋଗ କରୁଅଛନ୍ତି । ସ୍ୱଧର୍ମରତ ନିଷ୍ଠାପର ମହାଦେବ ଅଳ୍ପକାଳ ହେଲା ପରଲୋକ ଗମନ କରିଅଛନ୍ତି । ଶ୍ରୀଧର ଓ ତାଙ୍କ ମଧ୍ୟରେ ସମ୍ବନ୍ଧ ସନ୍ତୋଷଜନକରୂପେ ନିର୍ଣ୍ଣୟ କରିବା ବର୍ତ୍ତମାନ ସାଧ୍ୟ ବୋଲି ବୋଧହେଉନାହିଁ । ମହାଦେବଙ୍କ ଜ୍ୟେଷ୍ଠପୁତ୍ର ବିଦ୍ୟାର୍ଥୀ ହୋଇ ପିତାଙ୍କ ଜୀବନଦଶାରେ ଗୃହ ପରିତ୍ୟାଗ କରିଅଛନ୍ତି । ପତିଙ୍କର ତିନିପୁତ୍ର ମଧ୍ୟରେ ବୃନ୍ଦାବନ ଜ୍ୟେଷ୍ଠ ଏବଂ ସମସ୍ତେ ସ୍ୱଳ୍ପ-ବୟସ୍କ । ମହାଦେବଙ୍କର କନିଷ୍ଠ ଭ୍ରାତା ଭଗବାନଙ୍କ ସହିତ ଅଦ୍ୟାପି ମୋର ସାକ୍ଷାତ ହୋଇନାହିଁ । ସାକ୍ଷାତ ହେଲେ ସୁଦ୍ଧା ତାଙ୍କଠାରୁ ଅଧିକ କିଛି ଜ୍ଞାତବ୍ୟ ବିଷୟ ମିଳିବ କି ନାହିଁ, ସେଥିରେ ସନ୍ଦେହ । ମହାଦେବଙ୍କ ପିତା ବଳଭଦ୍ର ପତି, ପିତାମହ ହରିହର ପତି, ପ୍ରପିତାମହ ଶିବରାମ ଦେବ । ଏହି ଦେବତ୍ୱର ପତିତ୍ୱକି ଦାଶତ୍ୱ ଅନ୍ତର୍ହିତ, ତାହା ଏ ପର୍ଯ୍ୟନ୍ତ ବର୍ଣ୍ଣିତ ହୋଇ ନାହିଁ ।

ଉକ୍ତ ପତିବଂଶଙ୍କ ଗୃହରେ ତାଳପତ୍ରରେ ସଂସ୍କୃତ ଓ ଉତ୍କଳ ଭାଷାରେ ଉତ୍କଳାକ୍ଷରରେ ଲିଖିତ ଅନେକଗୁଡିଏ ଗ୍ରନ୍ଥ ବିଦ୍ୟମାନ । ମାତ୍ର ଉତ୍କୃଷ୍ଟ ଗ୍ରନ୍ଥମାନଙ୍କରୁ ଅଧିକାଂଶ ଅକାଳକୁଷ୍ମାଣ୍ଡ କୌଣସି କୌଣସି ବଂଶଧର ସ୍ୱଳ୍ପ ମୂଲ୍ୟରେ ଅପାତ୍ରରେ ବିକ୍ରୟ କରିଅଛନ୍ତି ବା ବନ୍ଧକ ଦେଇଅଛନ୍ତି । ସେଗୁଡିକର ଉଦ୍ଧାର ଏବେ ଅସମ୍ଭବ । ଶୁଣିଲି ଶ୍ରୀଧରଙ୍କ ସ୍ୱହସ୍ତ ଲିଖିତ ଗ୍ରନ୍ଥ ମଧ୍ୟ ବିଦ୍ୟମାନ, ମାତ୍ର ମୁଁ ସେଗୁଡିକ ଦର୍ଶନ କରିନାହିଁ । ତାଙ୍କ ରଚିତ ଖଣ୍ଡିଏ ଦୁଇଖଣ୍ଡି ଗ୍ରନ୍ଥ ଦେଖିଅଛି । ସେଥିରେ ସେ ଆତ୍ମ ପରିଚୟ ଦେଇନାହାନ୍ତି ।

(ଉତ୍କଳ ସାହିତ୍ୟ ଷଷ୍ଠ ଭାଗ ୪ର୍ଥ ସଂଖ୍ୟାରେ ପ୍ରକାଶିତ ।)

## - ଶ୍ରୀଧର ସ୍ୱାମୀ ଓ ବଳଦେବ ବିଦ୍ୟାଭୂଷଣ -

### (ଦୁଇଜଣ ଭାରତ-ବିଦିତ ଓଡ଼ିଆ ବୈଷ୍ଣବ ଭାଷ୍ୟକାର)

• *ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ*

ବିଂଶ ଶତାବ୍ଦୀର ଦୁଇଜଣ ବିଖ୍ୟାତ ଧର୍ମ ସାହିତ୍ୟର ଐତିହାସିକ ଡକ୍ଟର ଜେ.ଏନ୍. ଫରକ୍‌ହାର (J.N. Farquhar) ଓ ଡକ୍ଟର ସୁଶୀଲ କୁମାର ଦେଙ୍କର ନାମ ଚିରସ୍ମରଣୀୟ ରହିବ ଯେ ସେମାନେ ଶ୍ରୀଧର ସ୍ୱାମୀ ଓ ବଳଦେବ ବିଦ୍ୟାଭୂଷଣଙ୍କ ଉପରେ ପ୍ରଭୂତ ଆଲୋକପାତ କରିଅଛନ୍ତି । ଏଥି ସହିତ 'ବିଶ୍ୱକୋଷ' ର ସଂପାଦକ ସ୍ୱର୍ଗୀୟ ନଗେନ୍ଦ୍ର ନାଥ ବସୁ ଓ 'ଶ୍ରୀକ୍ଷେତ୍ର'ର ଲେଖକ ସୁନ୍ଦର ନନ୍ଦ ବିଦ୍ୟାଭୂଷଣଙ୍କ ନାମ ମଧ ସେମାନଙ୍କର ବଙ୍ଗଳାର ଲେଖା ପାଇଁ ଉଲ୍ଲେଖଯୋଗ୍ୟ । ଅଳ୍ପ କେତେକ ମାସ ପୂର୍ବେ ଏହି ବିଶିଷ୍ଟ ବୈଷ୍ଣବ ଲେଖକ ମାନଙ୍କର ଇତିହାସ ସଂକଳନ ପ୍ରତି ମୋର ଦୃଷ୍ଟି ଆକୃଷ୍ଟ ହେବାରୁ ମୁଁ ଯାହା ସଂଗ୍ରହ କରିପାରିଛି ତାହାର ବିବରଣ ତଳେ ଲେଖୁଅଛି ।

### ୧ - ଶ୍ରୀଧର ସ୍ୱାମୀ

ବଙ୍ଗଳା ଭାଷାରେ ମୁଦ୍ରିତ 'ବିଶ୍ୱକୋଷ'ରେ ଶ୍ରୀଧର ସ୍ୱାମୀଙ୍କ ଉପରେ ଗୋଟିଏ ମାତ୍ର ପରିଚ୍ଛେଦ ଲିଖିତ ଅଛି । ସେଥିରୁ ଜଣାଯାଏ ଯେ ଶ୍ରୀଧର ସ୍ୱାମୀଙ୍କର ଗୁରୁଙ୍କର ନାମ ପରମାନନ୍ଦ ଥିଲା ଓ ସେ ଭାଗବତର ଭାଷ୍ୟ ଲେଖିଥିଲେ । ତତ୍‌ସହିତ ସେ ମଧ ଭାଗବତ ଗୀତାର ଭାଷ୍ୟ ଲେଖିଥିଲେ । ବିଶ୍ୱକୋଷରୁ ଏତିକି ମାତ୍ର ବିଷୟ ଜଣାଯାଏ ।

ୟୁରୋପୀୟ ପଣ୍ଡିତମାନଙ୍କ ମଧରେ ଡାକ୍ତର ଫରକ୍‌ହାର ତାଙ୍କର ଗ୍ରନ୍ଥ - Outline of the Religious Literature of India ପୁସ୍ତକରେ ନିମ୍ନଲିଖିତ ମତ ବ୍ୟକ୍ତ କରିଅଛନ୍ତି । ଏହି ପୁସ୍ତକଟି ୧୯୨୦ରେ ଅକସ୍‌ଫୋର୍ଡ କମ୍ପାନୀଙ୍କ ଦ୍ୱାରା ମୁଦ୍ରିତ ହୋଇଥିଲା ।

''ସମ୍ଭବତଃ ଖ୍ରୀଷ୍ଟୀୟ ୧୪୦୦ ଅବ୍ଦରେ ପୁରୀର ଶଙ୍କର ସମ୍ପ୍ରଦାୟ ମଠର ମହନ୍ତ ଶ୍ରୀଧର ସ୍ୱାମୀ ଭାଗବତ ପୁରାଣର 'ଭାଗବତ-ଭାବାର୍ଥ-ଦିପିକା' ନାମକ ଭାଷ୍ୟ ରଚନା କରିଥିଲେ । ଏହି ଭାଷ୍ୟଟି ଭାଗବତ ଉପରେ ସର୍ବଶ୍ରେଷ୍ଠ ଓ ପ୍ରସିଦ୍ଧ ପ୍ରାମାଣିକ ଗ୍ରନ୍ଥ । ସେ ସ୍ପଷ୍ଟତଃ ଜଣେ ଅଦ୍ଭୁତ କର୍ମୀ ପଣ୍ଡିତ ଥିଲେ ଓ ତାଙ୍କର ଅତିଶୟ ବିଶ୍ୱାସଯୋଗ୍ୟ ସଂସ୍କୃତିମୂଳକ (tradition) ବିଷୟମାନ ଜାଣିବାର ସୁଯୋଗ ଥିଲା । ସେ ତାଙ୍କର ଭାଷ୍ୟରେ ଲେଖିଅଛନ୍ତି ଯେ ପ୍ରସିଦ୍ଧ ପୁରାଣ

ଭାଗବତ ବୋପଦେବଙ୍କ ଦ୍ୱାରା ଲିଖିତ ହୋଇ ନ ଥିଲା । ବୋପଦେବଙ୍କ ଲେଖାର ପ୍ରଚଳନ କଥାରୁ ସ୍ପଷ୍ଟ ଜଣାଯାଉଅଛି ଯେ ସେ ଖ୍ରୀଷ୍ଟାବ୍ଦ ୧୩୦୦ର ପରବର୍ତ୍ତୀ ଯେତେବେଳେ କି ବୋପଦେବଙ୍କର ଆବିର୍ଭାବ ହୋଇଥିଲା, ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀର ଶେଷ ବେଳକୁ ତାଙ୍କର ଭାଷ୍ୟ ସର୍ବତ୍ର ସୁବିଦିତ ହୋଇଥିଲା । ଶ୍ରୀଧରଙ୍କ ଜୀବନ କାଳ ଯୁକ୍ତିଯୁକ୍ତ ଭାବରେ ଖ୍ରୀଷ୍ଟାବ୍ଦ ୧୪୦୦ ବୋଲି ଧରାଯାଇପାରେ । ତାଙ୍କର ପୁରାଣ ବାଖ୍ୟା ଅଦ୍ୱୈତ ତତ୍ତ୍ୱଦର୍ଶୀ କାରଣ ସେ ଶଙ୍କର-ସଂପ୍ରଦାୟର ଶିଷ୍ୟ । ଭାଗବତ ଗ୍ରନ୍ଥ ଓ ଏକେଶ୍ୱରବାଦ ଉପରେ ପ୍ରତିଷ୍ଠିତ ହୋଇଥିବାରୁ ଶ୍ରୀଧର ସ୍ୱାମୀଙ୍କର 'ଦୀପିକା' ମୁଖ୍ୟଭାବରେ ଏକ ପ୍ରମାଣମୂଳକ ଗ୍ରନ୍ଥ ବୋଲି ପରିଗଣିତ ହୁଏ ।''(ପୃ ୨୯୭)

ଡାକ୍ତର ଫରକ୍ ହାରଙ୍କ ପରେ ଡାକ୍ତର ସୁଶୀଲ କୁମାର ଦେ ଶ୍ରୀଧର ସ୍ୱାମୀଙ୍କ ଉପରେ ଆଲୋଚନା କରିଅଛନ୍ତି । ତାଙ୍କ ଦ୍ୱାରା ଲିଖିତ 'ବଙ୍ଗଳାର ଚୈତନ୍ୟ ପୂର୍ବବର୍ତ୍ତୀ ବୈଷ୍ଣବ ଧର୍ମ ' ପ୍ରବନ୍ଧରେ ସେ ପ୍ରଥମେ ଆଲୋଚନା କରନ୍ତି । ଏହି ପ୍ରବନ୍ଧ ୧୯୩୩ରେ **Festschrift Moniy winternity** ପୃ ୧୯୫ ଠାରୁ ପୁସ୍ତକରେ ମୁଦ୍ରିତ ହୋଇଥିଲା । ତତ୍ପରେ ଡାକ୍ତର ଦେ ମହାଶୟ ଏହି ପ୍ରବନ୍ଧକୁ ପରିବର୍ଦ୍ଧିତ କରି ''ବଙ୍ଗଳାରେ ବୈଷ୍ଣବ ଧର୍ମ ଓ ତାହାର ପ୍ରସାର ପ୍ରାଚୀନ ଇତିହାସ'' (**Early History of the Vaisnava Faith and movement in Bengal**) ପୁସ୍ତକରେ ୧୯୪୨ରେ ଅନ୍ତର୍ଭୁକ୍ତ କରିଥିଲେ (ଯାହା କି ମୁଁ ପଢିବାର ସୁବିଧା ପାଇ ନାହିଁ ); କିନ୍ତୁ ୧୯୬୧ରେ ମୁଦ୍ରିତ ଏହି ଗ୍ରନ୍ଥର ୨ୟ ସଂସ୍କରଣ ମୁଁ ପାଠ କରିଛି । ଏହି ଗ୍ରନ୍ଥରେ ଶ୍ରୀଧର ସ୍ୱାମୀଙ୍କ ଉପରେ ଡାକ୍ତର ଦେ ମହାଶୟ ଯାହା ଲେଖିଛନ୍ତି, ତାହା ତଳେ ଉଦ୍ଧୃତ ହେଲା ।

''ଏହା ଖୁବ୍ ସମ୍ଭବପର ଯେ ମାଧବଚନ୍ଦ୍ର ପୁରୀ ଓ ତାଙ୍କର ଶିଷ୍ୟ ଈଶ୍ୱର ପୁରୀ ଉଭୟେ ଶଙ୍କରାଚାର୍ଯ୍ୟ ସଂପ୍ରଦାୟଭୁକ୍ତ ସନ୍ନ୍ୟାସୀ ଥିଲେ, ଯେଉଁ ସଂପ୍ରଦାୟଭୁକ୍ତ ଥିଲେ ଶ୍ରୀଧର ସ୍ୱାମୀ ମଧ୍ୟ । ଶ୍ରୀଧର ସ୍ୱାମୀ ତାଙ୍କର ପ୍ରସିଦ୍ଧ ଶ୍ରୀମଦ୍‌ଭାଗବତର ଭାଷ୍ୟରେ ଶଙ୍କରର ପ୍ରଚାରିତ ଅଦ୍ୱୈତ ମତ ସହିତ ଭାଗବତ ତନ୍ମୟ ଭାବେ ଏକତ୍ରିତ କରିଥିଲେ x x x ଜ୍ଞାନ ଓ ଭକ୍ତିର ଏକତ୍ରୀକରଣର ମୂଲ୍ୟ ଯାହା ହେଉ ପଛକେ କିମ୍ବଦନ୍ତୀରୁ ପ୍ରତିପାଦିତ ହୁଏ ଯେ ଶ୍ରୀଧର ସ୍ୱାମୀଙ୍କର ଭାଷ୍ୟ ବାରାଣାସୀର * ସଂପ୍ରଦାୟ ଉପରେ ଏକ ପ୍ରବଳ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା ।'' (ପୃ ୧୭-୧୮)

''ଶ୍ରୀଧରଙ୍କ ଭକ୍ତିମୂଳକ ଭାଷ୍ୟକୁ ଭକ୍ତିଭାବାପନ୍ନ ସନ୍ନ୍ୟାସୀମାନେ ଗ୍ରହଣ କରିଥିଲେ ଓ ସେମାନେ ହିଁ ବୈଷ୍ଣବ ଭକ୍ତି ପ୍ରଚାରର ମୂଳଭିତ୍ତି ବଙ୍ଗଳାରେ ସ୍ଥାପନ କରିଥିଲେ ଓ ଏହି ମୂଳ ଭିତ୍ତିର ପ୍ରଥମ ଭିତ୍ତି ପ୍ରସ୍ତର ଥିଲା ଶ୍ରୀମଦ୍ ଭାଗବତ । ନିଜେ ଚୈତନ୍ୟଦେବ ଏହି ସମ୍ପ୍ରଦାୟର ସନ୍ନ୍ୟାସୀ ଥିଲେ । ସେ ନିଜର ଭକ୍ତିସାଧନା ଓ

ଅନୁଭୂତି ଉପରେ ପ୍ରତିଷ୍ଠାପିତ କରି ଏହି ଧର୍ମ ପ୍ରଚାରକୁ ଏକ ନୂତନ ମାର୍ଗରେ ପରିଚାଳିତ କରିଥିଲେ ।'' (ପୃ-୨୩)

ଡାକ୍ତର ଦେ ମହାଶୟ ଶ୍ରୀଧର ସ୍ୱାମୀଙ୍କର ସମୟ ନିରୂପଣ କରିବାକୁ ଯାଇ ପୃ ୧୭ର ପାଦଟୀକାରେ ଲେଖିଅଛନ୍ତି ଯେ ''ଶ୍ରୀଧର ବୋପଦେବଙ୍କର ନାମ କରିଥିବାରୁ ତାଙ୍କର ସମୟ ଖ୍ରୀ ୧୩୦୦ ପୂର୍ବବର୍ତ୍ତୀ ହୋଇ ନପାରେ ।''

ବଙ୍ଗଳାର ବୈଷ୍ଣବ ଧର୍ମର ଇତିହାସ ଆଲୋଚନା କରିବାକୁ ଯାଇ ଡାକ୍ତର ଦେ ମହାଶୟ ଶ୍ରୀଧର ସ୍ୱାମୀଙ୍କୁ ଯେଉଁ ମହନୀୟ ସ୍ଥାନ ଦେଇଅଛନ୍ତି, ତାହା ତାଙ୍କର ପାଣ୍ଡିତ୍ୟର ପରିଚାୟକ ।

ବୈଷ୍ଣବ ଗ୍ରନ୍ଥ ସୁପ୍ରସିଦ୍ଧ 'ଚୈତନ୍ୟ ଚରିତାମୃତ' ଗ୍ରନ୍ଥର ଲେଖକ କୃଷ୍ଣଦାସ କବିରାଜ ଗୋସ୍ୱାମୀ । ସେ ଗ୍ରନ୍ଥଟିକୁ ବଙ୍ଗଳା ପଦ୍ୟରେ ଲେଖିଅଛନ୍ତି । ''ଚୈତନ୍ୟ ଚରିତାମୃତ'' ଗ୍ରନ୍ଥ ଖ୍ରୀ ୧୬୧୫ ରେ ଲିଖିତ ହୋଇଥିଲା । ଶ୍ରୀକୃଷ୍ଣ - ଚୈତନ୍ୟ - ଶ୍ରୀଧର ସ୍ୱାମୀଙ୍କର ପ୍ରଭାବ କିପରି ପଡ଼ିଥିଲା ତାହା ଏହି ଗ୍ରନ୍ଥରେ ନିମ୍ନୋକ୍ତ ଭାବରେ ଲିଖିତ ଅଛି ।

''ଶ୍ରୀଧର ସ୍ୱାମୀ ପ୍ରସାଦେତେ ଭାଗବତ ଜାନି ।
ଜଗତ୍‌ଗୁରୁ ଶ୍ରୀଧର ସ୍ୱାମୀ ଗୁରୁ କରି ମାନି ।।''

'ଚୈତନ୍ୟ ଚରିତାମୃତ' ଗ୍ରନ୍ଥରେ ସ୍ୱୟଂ ଚୈତନ୍ୟ ମହାପ୍ରଭୁଙ୍କ ମୁଖରେ ଶ୍ରୀଧର ସ୍ୱାମୀଙ୍କର ଗୁଣାବଳୀ ଯେପରି ବର୍ଣ୍ଣିତ ହୋଇଥିବା (ଅନ୍ତତଃ ଖ୍ରୀ:୧୬୧୪ ଠାରୁ) ସତ୍ତ୍ୱେ ଓଡ଼ିଶାରେ ଶ୍ରୀଧର ସ୍ୱାମୀ ଏପରି ଭାବରେ ବିସ୍ମୃତ ହୋଇ ଅଛନ୍ତି ତାଙ୍କ ଇତିହାସ ଅଦ୍ୟାପି ଲୁପ୍ତ ପ୍ରାୟ ହୋଇଅଛି । ଡାକ୍ତର ଫରକ୍‌ହାର କେବଳ ତାଙ୍କର ପରିଚୟ ଦେଇ ଅଛନ୍ତି ଯେ ସେ ପୁରୀର ଗୋବର୍ଦ୍ଧନ ମଠର ମହନ୍ତ ଥିଲେ । ଏ ପରିଚୟରୁ ତାଙ୍କୁ ଓଡ଼ିଆ ବୋଲି ଜାଣିବାର ବିନ୍ଦୁମାତ୍ର ସୁଯୋଗ ନାହିଁ, କିନ୍ତୁ ଡାକ୍ତର ଦେ ମହାଶୟ ତାଙ୍କର କିଛି ମାତ୍ର ପରିଚୟ ପାଇ ନଥିଲେ ।

ଡାକ୍ତର ଫରକ୍‌ହାର ଶ୍ରୀଧର ସ୍ୱାମୀଙ୍କର ସମୟ ନିରୂପଣ କରିବାକୁ ଯାଇ ଲେଖିଅଛନ୍ତି ଯେ ସେ ଖ୍ରୀ ୧୪୦୦ରେ ଜୀବିତ ଥିଲେ । ଡାକ୍ତର ଦେ ଲେଖିଅଛନ୍ତି ଯେ ଶ୍ରୀଧର ସ୍ୱାମୀ ଖ୍ରୀ ୧୩୦୦ର ପୂର୍ବବର୍ତ୍ତୀ ନଥିଲେ । ଦୁଇ ପଣ୍ଡିତଙ୍କର ମତରେ ଏକଶତ ବର୍ଷର ବ୍ୟବଧାନ ରହିଅଛି । ମୋର ମତ ଏହି ଯେ ଶ୍ରୀଧର ସ୍ୱାମୀଙ୍କର ସମୟ ଖ୍ରୀଷ୍ଟୀୟ ୧୪ଶ ଶତାବ୍ଦୀର ମଧ୍ୟଭାଗରୁ ଖ୍ରୀଷ୍ଟୀୟ ୧୫ଶ ଶତାବ୍ଦୀର ପ୍ରଥମପାଦ ମଧ୍ୟରେ ନିରୂପିତ କରାଯାଇପାରେ । ଅବଶ୍ୟ ଖ୍ରୀ: ୧୩୦୦ରୁ ଖ୍ରୀ ୧୪୦୦ ବର୍ଷ ମଧ୍ୟରେ ଓଡ଼ିଶାର ଇତିହାସରେ ଗଙ୍ଗନୃପତିମାନଙ୍କର ରାଜତ୍ୱ ନିରଙ୍କୁଶ ଥିଲା; କିନ୍ତୁ ଖ୍ରୀ: ୧୪ଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଓଡ଼ିଶାରେ କେହି ବଡ଼ କବି ବା ଲେଖକର ନାମ ଜଣାଯାଇ ନାହିଁ, କିନ୍ତୁ ଖ୍ରୀ:୧୩୫୦ ଠାରୁ ଖ୍ରୀ: ୧୪୨୫ମଧ୍ୟରେ ଓଡ଼ିଶା ଇତିହାସରେ ଅନ୍ତତଃ ତିନିଜଣ ବଡ଼ କବିଙ୍କର ଗ୍ରନ୍ଥ ପ୍ରକାଶିତ ହୋଇଛି । ତନ୍ମଧ୍ୟରୁ ବିଦ୍ୟାଧରକୃତ

'ଏକାବଳୀ' ଏକ ଅଳଂକାର ଗ୍ରନ୍ଥ, ସାନ୍ଧିବିଗ୍ରହିକ କୃଷ୍ଣାନନ୍ଦ କୃତ ''ସହୃଦୟାନନ୍ଦ'' ଓ ବିଶ୍ୱନାଥ କବିରାଜ କୃତ ''ସାହିତ୍ୟଦର୍ପଣ'' । ଏହା ବ୍ୟତୀତ ବିଶ୍ୱନାଥଙ୍କ ବଂଶରେ ମଧ୍ୟ ବଡ଼ ବଡ଼ କବିଥିବାର କଥା ଜଣାଯାଏ । ଏହି ସମୟରେ ଶ୍ରୀଧର ସ୍ୱାମୀଙ୍କର ଆବିର୍ଭାବ ଖୁବ୍ ସମ୍ଭବପର । ଖ୍ରୀ: ୧୩୬୨ରେ ଫିରୋଜସାହାଙ୍କର ଓଡ଼ିଶା ଆକ୍ରମଣ ପରେ ଓଡ଼ିଶାରେ ଯେଉଁ ଶିଥିଳତା ମୁଣ୍ଡ ଟେକି ଉଠୁଥିଲା, ତା ଏକାବେଳେକେ ଧ୍ୱସ୍ତ ହୋଇ ନବୀନ ଉତ୍ସାହରେ ଦେଶ ଉଦ୍‌ବୁଦ୍ଧିତ ହୋଇଥିଲା, ଯାହାର ଫଳରେ ସାହିତ୍ୟ ଓ ଜ୍ଞାନମାର୍ଗର ନୂତନ ନୂତନ ପନ୍ଥା ବିକଶିତ ହୋଇଥିଲା । କେବଳ ଏତିକି ନୁହେଁ, ଶ୍ରୀ ଚୈତନ୍ୟ ଖ୍ରୀ: ୧୫୧୦ରେ ଓଡ଼ିଶାକୁ ନିଜର କର୍ମକ୍ଷେତ୍ର ରୂପେ ବାଛି ନେଇ ନୀଳାଚଳକୁ ଆସିଥିଲେ । ସେତେବେଳେ ଓଡ଼ିଶାର ରାଜାଥିଲେ ପ୍ରତାପରୁଦ୍ରଦେବ । ତାଙ୍କର ଜଣେ ସେନାପତି ଥିଲେ ଜୀବଦେବ ଆଚାର୍ଯ୍ୟ । ଜୀବଦେବଙ୍କର ଲେଖା ଦୁଇଟି ଗ୍ରନ୍ଥ ଆବିଷ୍କୃତ ହୋଇଛି - ଗୋଟିଏ ''ଭକ୍ତିଭାଗବତ ମହାକାବ୍ୟ '' ଓ ଅନ୍ୟଟି ''ଭକ୍ତିବୈଭବ ନାଟକ'' । ଶ୍ରୀଧର ସ୍ୱାମୀଙ୍କ ଭକ୍ତିମୂଳକ ଟୀକା ପ୍ରଚାରିତ ହେବାପରେ ଓଡ଼ିଶାରେ ହିଁ ଭାଗବତ ପୁରାଣର ବିଷୟ ଉପରେ ସାହିତ୍ୟ ଗଢ଼ି ଉଠୁଥିଲା । ଏ ଦୁଇଟି ଗ୍ରନ୍ଥ ଚୈତନ୍ୟଙ୍କ ଆଗମନ ଆଗରୁ ଲିଖିତ ଓ ପ୍ରଚାରିତ ହୋଇଥିଲା । ଏଠାରେ ରାୟ ରାମାନନ୍ଦଙ୍କର କଥା ଉଲ୍ଲେଖ ଯୋଗ୍ୟ । ଭାଗବତ ଧର୍ମତତ୍ତ୍ୱ ପ୍ରଚାର ପାଇଁ ସାହିତ୍ୟ ସୃଷ୍ଟି କରିଥିଲା ପ୍ରଥମେ ଓଡ଼ିଶା । ଏହାହିଁ ଓଡ଼ିଶାର ଇତିହାସରେ ଏହି ଯୁଗର ବିଶେଷତ୍ୱ ।

ସାଧାରଣତଃ ସନ୍ନ୍ୟାସୀମାନେ ସେମାନଙ୍କର ଗ୍ରନ୍ଥରେ ନିଜର ବଂଶ ବା ବସତିର ପରିଚୟ ଦିଅନ୍ତି ନାହିଁ । ଶ୍ରୀଧର ସ୍ୱାମୀଙ୍କର ପକ୍ଷରେ ମଧ୍ୟ ଏହା ସତ୍ୟ ହେଲେ ମଧ୍ୟ ତାଙ୍କର ବାସସ୍ଥାନ ଓ ବଂଶ ପରିଚୟ କିମ୍ବଦନ୍ତୀ ଆକାରରେ ଅଦ୍ୟାପି ଓଡ଼ିଶାରେ ରହିଅଛି । ଶ୍ରୀଧର ସ୍ୱାମୀଙ୍କର ବଂଶଧରମାନେ ମଧ୍ୟ ଏପରି ଅବସ୍ଥାରେ ଅଛନ୍ତି ଯେ ସେମାନେ ନିଜର ସେମାନେ ନିଜର ବଂଶ ଗୌରବ କଥା ପ୍ରଚାର କରିବା ପାଇଁ ପ୍ରାୟ ଉଦାସୀନ । ଏକ ଘଟଣାରେ ଶ୍ରୀଧର ସ୍ୱାମୀଙ୍କର ବାସସ୍ଥାନ ଓ ବଂଶର ପରିଚୟ ଆକସ୍ମିକ ଭାବରେ ଜଣାଯାଇଥିଲା ପ୍ରାୟ ୬୦ ବର୍ଷ ପୂର୍ବେ - ସେତେବେଳେ ରେମୁଣାରୁ ବି.ଏ.ପାଶ କରି ଚନ୍ଦ୍ରମୋହନ ମହାରଣା ଶିକ୍ଷାବିଭାଗରେ ଚାକିରୀ କରୁଥିଲେ । ଦିନେ ଜଣେ ଯୁବକ ତାଙ୍କ ଠାରେ ଏକ ଚାକିରୀ ପ୍ରାର୍ଥୀ ହୋଇ ଉପସ୍ଥିତ ହେଲା । ମହାରଣା ତାଙ୍କୁ ହତାଦର ଭାଷାରେ କଥାବାର୍ତ୍ତା କରିବାରୁ ଯୁବକ କ୍ରୋଧାନ୍ୱିତ ହୋଇ କହି ପକାଇଲା ''ଆଜ୍ଞା ମୁଁ ଗରିବ - ଅଶିକ୍ଷିତ ହୋଇ ପାରେ, ମାତ୍ର ମୋର ବଂଶ ଗୌରବ ଅଛି । ମୁଁ ଶ୍ରୀଧର ସ୍ୱାମୀଙ୍କ ବଂଶଧର'' ? ଶ୍ରୀଧର ସ୍ୱାମୀଙ୍କ ନାମ ଶୁଣି ମହାରଣା ମହାଶୟ ଆଶ୍ଚର୍ଯ୍ୟାନ୍ୱିତ ହୋଇ ତାଙ୍କ ସମ୍ପର୍କରେ ଅନ୍ୟାନ୍ୟ ପ୍ରଶ୍ନ ପଚାରିବାରୁ ଯାହା ଶୁଣିଲେ ସେଥିରୁ ସେ ଜାଣିଲେ ଯେ ଶ୍ରୀଧର ସ୍ୱାମୀଙ୍କ ବଂଶଧର ଅଦ୍ୟପି ମରାଇଗାଁ ଗ୍ରାମରେ ବସବାସ କରି ରହିଛନ୍ତି । ମରାଇଗାଁ ରେମୁଣା କ୍ଷୀରଚୋରା ଗୋପୀନାଥ ମନ୍ଦିରର ଉତ୍ତର

ଦିଗରେ ପ୍ରାୟ ୩ମାଇଲ ଦୂରବର୍ତ୍ତୀ ଏକ ଗ୍ରାମ । ରେମୁଣା ବାଲେଶ୍ୱର ସହରର ପଶ୍ଚିମରେ ୫/୬ ମାଇଲ ଦୂରରେ ଅବସ୍ଥିତ । ସ୍ୱର୍ଗୀୟ ଚନ୍ଦ୍ରମୋହନ ମହାରଣା ତତ୍‌କାଳୀନ ମାସିକ ପତ୍ରିକା 'ମୁକୁର'ରେ ଶ୍ରୀଧର ସ୍ୱାମୀଙ୍କର ବାସସ୍ଥାନ ମରାଇଗ୍ରାମରେ ଥିବା ଜଥା ଏକ ପ୍ରବନ୍ଧ ଲେଖିଥିଲେ । ତାହା ମୁଁ ପଢ଼ିଥିଲି । ମୋ ପାଖରେ 'ମୁକୁର' ଥିଲା; ମାତ୍ର ବର୍ତ୍ତମାନ ପାଉନାହିଁ । ସୋଣ ନଦୀର ଉତ୍ତରାଞ୍ଚଳ ଓ ବୁଢ଼ାବଳଙ୍ଗ ନଦୀର ଦକ୍ଷିଣାଞ୍ଚଳ ଗ୍ରାମସମୂହ ବୁଢ଼ାବଳଙ୍ଗ, ଗଙ୍ଗାହାର ଓ ସୋଣନଦୀ ସମୂହ ଦ୍ୱାରା ପରିବେଷ୍ଟିତ । ଏ ଅଞ୍ଚଳରେ ଅଦ୍ୟାପି ମଧ ମଟର ଯିବା ଆସିବା ପାଇଁ ଖରାଦିନିଆ ରାସ୍ତା ଅଛି କି ନା ମୋତେ ଜଣା ନାହିଁ । ମରାଇଗାଁର ଅଦୂରବର୍ତ୍ତୀ ଗ୍ରାମଗୁଡ଼ିକରେ ବହୁ ଅଥର୍ବ ବେଦୀୟ ବ୍ରାହ୍ମଣମାନଙ୍କର ବସତି ଅଛି । ଏ ସବୁ ବ୍ରାହ୍ମଣ କେବଳ ଅଥର୍ବବେଦୀୟ **ପୈପଲାଦ ଶାଖା** ଭୁକ୍ତ । **ପୈପଲାଦ ଶାଖାରୁ** ଗୋପାଳ ତାପିନୀ, ଶ୍ରୀକୃଷ୍ଣ ତାପିନୀ ସବୁ ଲିଖିତ ଅଛି । ଓଡିଶାର ସବୁ ବେଦର ବ୍ରାହ୍ମଣମାନେ ବିବାହ ଓ ବ୍ରତ ସଭାରେ ଯେଉଁ ବେଦ ମନ୍ତ୍ର ପାଠ କରନ୍ତି ସେସବୁ ତାପିନୀ ଅନ୍ତର୍ଭୁକ୍ତ । ଏହି ତାପିନୀ ଗ୍ରନ୍ଥଗୁଡ଼ିକ ବୈଷ୍ଣବ ଧର୍ମର ମୂଳଭିତ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ । ଶଙ୍କରାଚାର୍ଯ୍ୟ ତାଙ୍କର ଭାଷ୍ୟ ସମୂହରେ ଯେଉଁ ଅଥର୍ବ ବେଦର କଥା ଉଲ୍ଲେଖ କରି ଅଛନ୍ତି ତାହା କେବଳ **ପୈପଲାଦ ଶାଖା** ଭୁକ୍ତ ।**ପୈପଲାଦ ଶାଖାର** ଅଥର୍ବ ବେଦୀୟ ମନ୍ତ୍ର ପୋଥି ଓଡ଼ିଶାରେ ଥିବାର କଥା କାହାକୁ ଜଣା ନ ଥିଲା । କଲିକତା ସଂସ୍କୃତ କଲେଜର ବେଦ ଅଧାପକ ସ୍ୱର୍ଗୀୟ ଦୁର୍ଗାମୋହନ ଭଟ୍ଟାଚାର୍ଯ୍ୟଙ୍କ ଯତ୍ନରେ ଭାରତର ଏହି ସୁଦୁର୍ଲ୍ଲଭ ଗ୍ରନ୍ଥ ଓଡିଶାରୁ ଆବିଷ୍କୃତ ହୋଇଛି । ମରାଇଗାଁ ନିକଟବର୍ତ୍ତୀ ଗ୍ରାମମାନଙ୍କରୁ ସ୍ୱର୍ଗୀୟ ଭଟ୍ଟାଚାର୍ଯ୍ୟ କେତେଖଣ୍ଡି ପୋଥି ଖ୍ରୀ ୧୯୫୯ରେ ସଂଗ୍ରହ କରିଥିଲେ । ବଙ୍ଗ ସରକାରଙ୍କ ଯତ୍ନରେ ଏହି ଅଥର୍ବ ବେଦୀୟ **ପୈପଲାଦ ଶାଖାର** ମନ୍ତ୍ରସବୁ ମୁଦ୍ରିତ ହେଉଅଛି । ଏହି ପରିବେଶରେ ଜଣାଯାଉଅଛି ଯେ ଶ୍ରୀଧର ସ୍ୱାମୀ ସନ୍ନ୍ୟାସ ହେବା ପୂର୍ବରୁ ଅଥର୍ବ ବେଦୀୟ ମନ୍ତ୍ରାଦିରେ ପ୍ରବୀଣତା ଲାଭ କରିଥିଲେ । ବାରିପଦା ନିବାସୀ ଅଥର୍ବବେଦୀୟ ସ୍ୱର୍ଗୀୟ ମୋହନଚରଣ ପଣ୍ଡାଙ୍କ ସୌଜନ୍ୟରୁ ଜାଣିଲି ଯେ ତାଙ୍କର ମାମୁଁଘର ଗାଁର ନା ମରେଇଗାଁ । ତହୁଁ ତାଙ୍କୁ ଶ୍ରୀଧର ସ୍ୱାମୀଙ୍କ କଥା ପଚାରିବାରୁ ସେ କହିଲେ ଯେ ଶ୍ରୀଧର ସ୍ୱାମୀଙ୍କର ବଂଶଧର ଅଦ୍ୟାପି ସେ ଗ୍ରାମରେ ଅଛନ୍ତି । ତାଙ୍କର ନାମ କହିବାରୁ ତାଙ୍କୁ ପତ୍ର ଲେଖିଲି ଓ ତାଙ୍କଠାରୁ ଉତ୍ତର ମଧ ପାଇଲି ତାଙ୍କ ସହିତ ସାକ୍ଷାତ କରିବାପାଇଁ ଚିଠି ଲେଖିବାରୁ ସେ ଚିଠି ନ ଦେଇ ବାରିପଦା ଆସିଲେ ମାତ୍ର ମୁଁ ସେତେବେଳେ କଟକରେ ଥିବାରୁ ତାଙ୍କ ସହିତ ଦେଖାକରି କଥାବାର୍ତ୍ତା ହୋଇପାରିଲି ନାହିଁ । ସେ ଭଦ୍ର ଲୋକଙ୍କ ନାମ ଶଶିଭୂଷଣ ଶତପଥୀ । ଶ୍ରୀଧର ସ୍ୱାମୀଙ୍କ ସଂପର୍କରେ କେତୋଟି କିମ୍ବଦନ୍ତୀ ଶୁଣିଛି । ମାତ୍ର ସେ ଗୁଡ଼ିକ ଉପରେ ବିଶେଷ ଆସ୍ଥା ସ୍ଥାପନ କରିବା ଭଳି ପ୍ରମାଣ ନ ପାଇବା ଯାଏଁ, ଏଠାରେ ଉଲ୍ଲେଖ କଲି ନାହିଁ ।

ରେମୁଣା ପ୍ରତ୍ନତତ୍ତ୍ୱ ବା ଇତିହାସ ବିଶେଷ ଭାବରେ ଆଲୋଚିତ ହୋଇନାହିଁ । କେବଳ ନରସିଂହ ଦେବ ୨ୟଙ୍କ ଖ୍ରୀ ୧୨୯୬ରେ ପ୍ରଦତ୍ତ ଏକ ତମ୍ବାପଟାରେ ରେମୁଣା କଟକର କଥା ଉଲ୍ଲେଖ ଅଛି । ମନମୋହନ ଚକ୍ରବର୍ତ୍ତୀ ଲେଖିଅଛନ୍ତି ଯେ ରେମୁଣା ଦଣ୍ଡପାଟ ଅଧୀନରେ ୨୮ଟିରୁ ଅଧିକ 'ବିଶି' ଥିବାର କଥା ମାଦଳାପାଞ୍ଜିର 'ଦେଶଖଣ୍ଡା' ପୋଥିରୁ ସେ ପାଇଥିଲେ । ଏଥିରୁ ଏତିକି ଜଣା ଯାଉଅଛି ଯେ ଖ୍ରୀ ୧୩ଶ ଶତାବ୍ଦୀର ପ୍ରାରମ୍ଭରୁ ରେମୁଣା ଏକ ପ୍ରସିଦ୍ଧ ସ୍ଥାନ ଥିଲା । ରେମୁଣାର ଚତୁଃପାର୍ଶ୍ୱବର୍ତ୍ତୀ ପରିସ୍ଥିତିରୁ ଜଣାଯାଏ ଯେ ସେ ସ୍ଥାନ ଦିନେ ଉତ୍ତର ଓଡିଶାରେ ପ୍ରସିଦ୍ଧ ଥିଲା । ତାହାର ନିଦର୍ଶନ ସ୍ୱରୂପ ବର୍ତ୍ତମାନ ରେମୁଣା ଆଖପାଖ ଅଞ୍ଚଳରେ ତିନୋଟି ବୃହତ୍‌କାୟ ପୁଷ୍କରିଣୀ ରହିଅଛି । ତନ୍ମଧ୍ୟରୁ ଗୋଟିଏ ପୁଷ୍କରିଣୀର ନାମ 'ବରଜ' ବା 'ବ୍ରଜ' ପୋଖରୀ । ଏହା କ୍ଷୀରଚୋରା ଗୋପୀନାଥ ମନ୍ଦିରର ଅତି ନିକଟବର୍ତ୍ତୀ । ଗଙ୍ଗରାଜତ୍ୱ ସମୟରେ ରେମୁଣା ଉତ୍ତର ଭାରତକୁ ଯିବା ଆସିବା ପଥରେ ଅବସ୍ଥିତ ଥିଲା । ଚୈତନ୍ୟ ଚରିତାମୃତ ଗ୍ରନ୍ଥରୁ ଜଣାଯାଏ ଯେ ମାଧବେନ୍ଦ୍ର ପୁରୀ ବୃନ୍ଦାବନରୁ ଶ୍ରୀକ୍ଷେତ୍ରକୁ ଆସିବା ପଥରେ ରେମୁଣାରେ ରହିଥିଲେ ଓ ଫେରନ୍ତାପଥରେ ରେମୁଣାରେ ମଧ୍ୟ ରହିଥିଲେ । ରେମୁଣାରୁ ଉତ୍ତର ଦିଗକୁ ଯେଉଁ ପଥ ବିସ୍ତୃତ ଥିଲା ତାହା ମରାଇଗାଁ ଗ୍ରାମରେ ଯାଇଥିଲା ।ରେମୁଣାର ଗୋପୀନାଥଙ୍କର ନାମ କ୍ଷୀରଚୋରା ଗୋପୀନାଥ ହୋଇଛି ମାଧବେନ୍ଦ୍ର ପୁରୀଙ୍କ ଲାଗି । ଏକଥା ଚୈତନ୍ୟ -ଚରିତାମୃତରେ ଅଛି । ଏଣୁ ରେମୁଣାର ଗୋପୀନାଥ ମୂର୍ତ୍ତି ମାଧବେନ୍ଦ୍ର - ପୁରୀଙ୍କ ବହୁ ପୂର୍ବରୁ ଓଡିଶାରେ ପ୍ରସିଦ୍ଧି ଲାଭ କରିଥିଲା । କେବଳ ରେମୁଣାରେ ଗୋପୀନାଥ ମୂର୍ତ୍ତି ନୁହେଁ, ରେମୁଣାଠାରୁ ଜଗନ୍ନାଥ ସଡକ କଡରେ ପୁରୀ ପର୍ଯ୍ୟନ୍ତ ବହୁ ଗୋପୀନାଥ ମୂର୍ତ୍ତିର ନିଦର୍ଶନ ମିଳିଛି । ଓଡିଶାରେ ଏହି ଗୋପୀନାଥ ମୂର୍ତ୍ତି ପୂଜା ଭାଗବତ ଧର୍ମର ଆଉ ଏକ ଜ୍ୱଳନ୍ତ ନିଦର୍ଶନ । ଏହି ଗୋପୀନାଥ ମୂର୍ତ୍ତିର ପୂଜା କି ପ୍ରକାର ହେଉଥିଲା, ମୂର୍ତ୍ତି କି ମନ୍ତ୍ରରେ ପୂଜିତ ହେଉଥିଲା ତାହାର ବିଶ୍ୱାସଯୋଗ୍ୟ ପ୍ରମାଣ ପାଇ ପାରିନାହିଁ । ଶ୍ରୀଧର ସ୍ୱାମୀଙ୍କ ଆର୍ବିଭାବ ପୂର୍ବରୁ ଓଡିଶାରେ ଗୋପୀନାଥ ମୂର୍ତ୍ତିର ଆରାଧନା ପ୍ରଚଳିତ ଥିଲା ।ଶ୍ରୀଧର ସ୍ୱାମୀ ଯେ ମରାଇଗାଁର ନିକଟର୍ତ୍ତୀ ଅଥର୍ବବେଦୀ ବ୍ରାହ୍ମଣମାନଙ୍କଦ୍ୱାରା ଓ ଗୋପୀନାଥ ମୂର୍ତ୍ତିଦ୍ୱାରା ଭାଗବତ ଧର୍ମରେ ଆକୃଷ୍ଟ ହୋଇଥିଲେ, ଏଥିରେ ସନ୍ଦେହ କରିବାର କିଛି ବାଧା ନ ଥିଲେ ମଧ୍ୟ କୌଣସି ସମସାମୟିକ ପ୍ରମାଣ ମିଳିନାହିଁ । ଏତିକିମାତ୍ର କଥା କିମ୍ବଦନ୍ତୀରୁ ଜଣାଯାଉଅଛି ଯେ ଶ୍ରୀଧର ସ୍ୱାମୀଙ୍କର ବସତି ମରାଇଗାଁରେ ଥିଲା ଓ ସେ ଯଜୁର୍ବେଦୀୟ କାଣ୍ୱଶାଖାଭୁକ୍ତ ଶତପଥି ବ୍ରାହ୍ମଣ ବଂଶଜ ଥିଲେ । ଶ୍ରୀଧର ସ୍ୱାମୀଙ୍କ ସଦୃଶ ବଳଦେବ ବିଦ୍ୟା ଭୂଷଣଙ୍କର ଜନ୍ମସ୍ଥାନ ରେମୁଣା ନିକଟବର୍ତ୍ତୀ ଏକ ଗ୍ରାମଥିଲା । ମାତ୍ର ତାହା କେଉଁ ଗ୍ରାମ ସେ କଥା ନିଶ୍ଚିତ ଭାବରେ ଜଣାଯାଇନାହିଁ । ଶ୍ରୀଚୈତନ୍ୟ ମହାପ୍ରଭୁଙ୍କୁ ଶ୍ରୀଧର ସ୍ୱାମୀ ପ୍ରଭାବିତ କରିଥିବାରୁ ଚୈତନ୍ୟମହାପ୍ରଭୁ ଯେଉଁ ନୂତନଭାବପ୍ରବଣ ବୈଷ୍ଣବ ଧର୍ମ ସ୍ଥାପନ କରିଥିଲେ, ତାଙ୍କ ସଦୃଶ ବଳଦେବ ବିଦ୍ୟାଭୂଷଣ ମଧ୍ୟ ଚୈତନ୍ୟ ପ୍ରଚାରିତ ଧର୍ମମାର୍ଗ ପ୍ରଚାରପ୍ରସାରର

କେନ୍ଦ୍ରସ୍ଥଳୀ ନବଦ୍ୱୀପ ବୃନ୍ଦାବନ ଓ ଶ୍ରୀକ୍ଷେତ୍ର ଥିଲା, ତାହାର ଦାର୍ଶନିକ ତତ୍ତ୍ୱର ବ୍ୟାଖ୍ୟା କରିଥିଲେ ।

**୨ । ବଳଦେବ ବିଦ୍ୟାଭୂଷଣ**

ବଙ୍ଗଳାରେ ଲିଖିତ 'ବିଶ୍ୱକୋଷ'ର ୧୨ଶ ଭାଗର ପୃ ୧୬୯ରେ ବଳଦେବ ବିଦ୍ୟାଭୂଷଣଙ୍କ ସମ୍ପର୍କରେ ଅନେକ କଥା ଲିଖିତ ଅଛି, ଯାହାର ବିଶଦ ବିବରଣୀ ପରେ ବର୍ଣ୍ଣିତ ହେଉଛି । 'ବିଶ୍ୱକୋଷ'ରେ ବର୍ଣ୍ଣିତ ବିବରଣୀର ବିଶେଷତ୍ୱ ଗୁଡ଼ିକ ଏଠାରେ ଲେଖାଯାଇଛି । 'ବିଶ୍ୱକୋଷ'ରେ ବର୍ଣ୍ଣିତ ଅଛି ଯେ **''ବଳଦେବବିଦ୍ୟାଭୂଷଣ ଜଣେ ବଙ୍ଗୀୟ ପ୍ରସିଦ୍ଧ ପଣ୍ଡିତ ଥିଲେ''** । (ପୃ.୧୬୯) । ଏହି କଥାରେ ଯେ ଆଦୌ ସତ ନାହିଁ ତାହା ତଳେ ବର୍ଣ୍ଣିତ ହେଉଛି । ବଳଦେବ ବିଦ୍ୟାଭୂଷଣ ପ୍ରକୃତରେ ଜଣେ ଓଡ଼ିଆ ବ୍ରାହ୍ମଣ ଥିଲେ ।

ଡାକ୍ତର ଫରକ୍‌ହାର ବଳଦେବ ବିଦ୍ୟାଭୂଷଣଙ୍କ ଉପରେ ଅତି ଅଳ୍ପ କଥା ଲେଖି ଅଛନ୍ତି ଯାହା ତଳେ ଉଦ୍ଧୃତ ହେଲା ।

'ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀର ପ୍ରାରମ୍ଭରେ ବଳଦେବ **'ବେଦାନ୍ତସୂତ୍ର'**ର **'ଗୋବିନ୍ଦଭାଷ୍ୟ'** ନାମକ ଭାଷ୍ୟ ନିଜ ସମ୍ପ୍ରଦାୟପାଇଁ ଲେଖିଥିଲେ । ଏହି ଭାଷ୍ୟରେ ସେ **'ଅଚିନ୍ତ୍ୟଭେଦାଭେଦ'** ଦାର୍ଶନିକ ତତ୍ତ୍ୱ ଆଲୋଚନା କରିଥିଲେ, ଯଦ୍ଦ୍ୱାରା ଈଶ୍ୱର ଓ ଆତ୍ମାର ସମ୍ପର୍କ ଚିନ୍ତାର ବର୍ହିଭୂତ ବୋଲି ପ୍ରତିପାଦିତ ହୋଇଅଛି ।'' (ପୃ ୩୧୧)

ଡାକ୍ତର ସୁଶୀଲ କୁମାର ଦେ ବଳଦେବ ବିଦ୍ୟାଭୂଷଣଙ୍କ କଥା ଅନେକ ଥର ଉଲ୍ଲେଖ କରି ଅଛନ୍ତି ଓ ପୃ ୧୬ରେ ଲେଖିଅଛନ୍ତିଯେ 'ବଳଦେବ ଓଡ଼ିଶାବାସୀ ଥିଲେ ଓ ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀର ଲୋକ ଥିଲେ ।'

ସ୍ୱର୍ଗୀୟ ସୁନ୍ଦରାନନ୍ଦ ବିଦ୍ୟାବିନୋଦଙ୍କର 'ଶ୍ରୀକ୍ଷେତ୍ର' ପୁସ୍ତକର ୩ୟ ସଂସ୍କରଣ ବଙ୍ଗଳା ସନ ୧୩୫୮ (ଖ୍ରୀ ୧୯୫୨) ମୁଦ୍ରିତ ହୋଇଥିଲା । ଏହି ପୁସ୍ତକରେ ସେ ବଳଦେବ ବିଦ୍ୟାଭୂଷଣଙ୍କ ସମ୍ପର୍କରେ ବିଶଦ ବିବରଣୀ ଦେଇଅଛନ୍ତି । ସେ ଲେଖି ଅଛନ୍ତି ଯେ ବଳଦେବ ବିଦ୍ୟାଭୂଷଣ ଖ୍ରୀ:୧୮ଶ ଶତାବ୍ଦୀରେ ରେମୁଣା ନିକଟବର୍ତ୍ତୀ ଏକ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ଜନ୍ମକାଳ ସମ୍ପର୍କରେ କିଛି ନିଶ୍ଚିତ କଥା ଜଣାଯାଏ ନାହିଁ । ସେ ବ୍ୟାକରଣ, ଅଳଙ୍କାର ଶାସ୍ତ୍ର ଇତ୍ୟାଦି ଚିଲିକାର ଅପରପାର୍ଶ୍ୱବର୍ତ୍ତୀ ଏକ ପ୍ରସିଦ୍ଧ ପଣ୍ଡିତଙ୍କ ଠାରୁ ଶିକ୍ଷା କରିଥିଲେ । ତତ୍ପରେ ସେ ନ୍ୟାୟ ଓ ବେଦପାଠ କରି ବେଦାନ୍ତ ଶିକ୍ଷା କରିବାକୁ ମହୀଶୂର ଯାଇଥିଲେ । ସେ ତତ୍ତ୍ୱବାଦୀ ସମ୍ପ୍ରଦାୟରେ ଦୀକ୍ଷିତ ହୋଇଥିଲେ ଓ ଅନେକ ପଣ୍ଡିତମାନଙ୍କ ସହିତ ଯୁକ୍ତିତର୍କ କରି ସୁଖ୍ୟାତି ଅର୍ଜନ କରିଥିଲେ । ସେ ପୁରୀର ତତ୍ତ୍ୱବାଦୀ ମଠରେ ଅବସ୍ଥାନ କରୁଥିଲେ । କିୟତ୍ କାଳ ପରେ ସେ ରସିକାନନ୍ଦ ଦେବ ଗୋସ୍ୱାମୀଙ୍କର ଶିଷ୍ୟ ରାଧାଦାମୋଦରଙ୍କ ଦ୍ୱାରା ଦୀକ୍ଷିତ ହୋଇଥିଲେ । ସେ **ଷଟ୍-ସନ୍ଦର୍ଭ**ର ଟୀକା କରିଥିଲେ । ସେ ଜୟପୁର ରାଜ୍ୟର

ଗାଲତା ସଭାରେ ବିଦ୍ୟାଭୂଷଣ ଉପାଧି ପାଇଥିଲେ ଓ ସେଠାରେ **ଗୋବିନ୍ଦ ଭାଷ୍ୟ** ରଚନା କରିଥିଲେ । କେହି କେହି କହନ୍ତି ଯେ ସେ ବିଶ୍ୱନାଥ ଚକ୍ରବର୍ତ୍ତୀଙ୍କ ଠାରୁ **'ଭାଗବତ'** ପାଠ କରିଥିଲେ । ପରେ ସେ ଏକାନ୍ତୀ ହୋଇ **'ଏକାନ୍ତି - ଗୋବିନ୍ଦ ଦାସ'** ନାମ ଗ୍ରହଣ କରିଥିଲେ ।''

ମୁଁ ବଳଦେବ ବିଦ୍ୟାଭୂଷଣଙ୍କ ଇତିହାସର ସଂଗ୍ରହ ପାଇଁ ବହୁ ବର୍ଷ ଆଗରୁ ଯତ୍ନ କରୁଥିଲି; କିନ୍ତୁ ତାଙ୍କ ଉପରେ କୌଣସି ବିଶ୍ୱାସ ଯୋଗ୍ୟ କଥା ପାଇପାରି ନ ଥିଲି । ଏପରିକି ଗୋପୀବଲ୍ଲଭପୁର ମଠରୁ ତାଙ୍କ ସମ୍ପର୍କରେ କୌଣସି ତଥ୍ୟ ସଂଗ୍ରହ କରି ପାରି ନ ଥିଲି କେବଳ ଏତିକି ଜାଣିଥିଲି ଯେ ସେ ଶ୍ୟାମାନନ୍ଦ ସମ୍ପ୍ରଦାୟଭୁକ୍ତ ଥିଲେ ଓ ବ୍ରହ୍ମସୂତ୍ରର **'ଅଚିନ୍ତ୍ୟ-ଭେଦାଭେଦ'** ଭାଷ୍ୟ ରଚନା କରିଥିଲେ । ମୋର ବନ୍ଧୁ ଶ୍ରୀ କୁଳମଣି ମହାନ୍ତି ବାରିପଦାରୁ ୧୯୬୨ରେ ବୃନ୍ଦାବନ ଯାଇଥିଲେ । ତାଙ୍କୁ ଅନୁରୋଧ କରିଥିଲି ଯେ ସେ ବଳଦେବ ବିଦ୍ୟାଭୂଷଣଙ୍କ ସମ୍ପର୍କରେ ବୃନ୍ଦାବନରେ ପ୍ରଚଳିତ କିମ୍ବଦନ୍ତୀ ଯାହାପାଇବେ ତାହା ମୋ ଲାଗି ଲେଖି ଆଣିବେ । କୁଳମଣି ବାବୁଙ୍କ ଲେଖାରୁ କେତେକ ନୂତନ ତଥ୍ୟ ସଂଗ୍ରହ କରିଥିଲି ଓ ଜୟପୁରର ଗାଲତା ସଭାର କଥା ଜାଣିଥିଲି । ତତ୍ପରେ ୧୯୬୫ ସେପ୍ଟେମ୍ବରରେ ଗଞ୍ଜାମ ଜିଲ୍ଲାର ବ୍ରହ୍ମପୁରର 'ଭକ୍ତିବିନୋଦ ଆଶ୍ରମ'ରୁ ପ୍ରକାଶିତ ଚାରିଖଣ୍ଡ ବହି ପାଇଲି, ଯାହାର ଲେଖକ ବଳଦେବ ବିଦ୍ୟାଭୂଷଣ । ସେଗୁଡ଼ିକ ବଙ୍ଗଳାରୁ ଅନୁବାଦିତ ହୋଇଥିଲେ ମଧ୍ୟ ସେଥିରେ ବଳଦେବ ବିଦ୍ୟାଭୂଷଣଙ୍କର ଇତିହାସ କିଞ୍ଚିତ ପରିମାଣରେ ଅଛି; ମାତ୍ର ତହିଁରେ ଦିଆଯାଇଥିବା ସମୟରେ ଭୁଲ ଅଛି । ଏହି ପୁସ୍ତକ ଗୁଡ଼ିକରେ ବଳଦେବ ବିଦ୍ୟାଭୂଷଣ ଜାତିରେ ଖଣ୍ଡାୟତ ଥିବାର କଥା ଲେଖା ଅଛି;କିନ୍ତୁ ଅନ୍ୟ ଲେଖାରୁ ଜଣାଯାଏ ଯେ ସେ ବ୍ରାହ୍ମଣ ଥିଲେ । ବ୍ରହ୍ମପୁରର ଭକ୍ତିବିନୋଦ ଆଶ୍ରମରୁ ପ୍ରକାଶିତ ବହିଗୁଡ଼ିକ ବଙ୍ଗଳାରେ ମୁଦ୍ରିତ ହୋଇଥିଲା । ତତ୍ପରେ ୧୯୬୫ ଅକ୍ଟୋବରରେ ମୋର ବନ୍ଧୁ ଭକ୍ତିବିନୋଦନ ଠାକୁରଙ୍କ ପୁତ୍ର ଶ୍ରୀ ଲଳିତ ପ୍ରସାଦ ଦତ୍ତ; ଯେ କି ବର୍ତ୍ତମାନ ବାବାଜୀ ହୋଇ ଶ୍ରୀ ଲଳିତ ପ୍ରସାଦ ନାମ ଗ୍ରହଣ କରି ଅଛନ୍ତି ଓ ଭକ୍ତି ବିନୋଦ ଠାକୁରଙ୍କ ଜନ୍ମସ୍ଥାନ ଭଲା-ବୀର ନଗରରେ ନଦିଆ ଜିଲ୍ଲାରେ ଅବସ୍ଥାନ କରୁଅଛନ୍ତି । ସେ ଦୟା ପୂର୍ବକ ଖ୍ରୀ ୧୮୬୫ରେ ମୁଦ୍ରିତ 'ସଜନ-ତୋଷଣୀ' ପତ୍ରିକାରେ ପ୍ରକାଶିତ ବଳଦେବ ବିଦ୍ୟାଭୂଷଣଙ୍କର ଜୀବନୀ ଉପରେ ଏକ ଉପାଦେୟ ବଙ୍ଗଳା ଲେଖାର ନକଲ ମୋତେ ପଠାଇଲେ । ଏହି ଲେଖାର ଲେଖକ ହେଉଛନ୍ତି ଗୋପୀବଲ୍ଲଭପୁରର ସ୍ୱର୍ଗୀୟ ବିଶ୍ୱମ୍ଭର ନନ୍ଦ ଦେବ ଗୋସ୍ୱାମୀ, ଯେ କି ଜଣେ ଖ୍ୟାତନାମା ପଣ୍ଡିତ ଥିଲେ । ବିଶ୍ୱମ୍ଭର ନନ୍ଦ ଥିଲେ ଗୋପୀବଲ୍ଲଭପୁର ମଠର ମହନ୍ତ ବଂଶୀୟ । ଏଣୁ ଶ୍ୟାମାନନ୍ଦ ସମ୍ପ୍ରଦାୟ ଇତିହାସ ଉପରେ ତାଙ୍କର କଥା ବିଶେଷ ପ୍ରମାଣ ମୂଳକ ବୋଲି ମୁଁ ଗ୍ରହଣ କରିଅଛି ।

'ସଜ୍ଜନ-ତୋଷଣୀ'ରେ ପ୍ରକାଶିତ ବଳଦେବ ବିଦ୍ୟାଭୂଷଣଙ୍କର ଜୀବନୀର ଓଡ଼ିଆ ଅନୁବାଦ କରି ତାହା ପରେ ପ୍ରକାଶିତ କରିବାର ଇଚ୍ଛା ଅଛି । ସେହି ଲେଖାର ସାରାଂଶ ତଳେ ବିବୃତ ହେଲା । ବିଶ୍ୱମ୍ଭର ନନ୍ଦ ଦେବଗୋସ୍ୱାମୀଙ୍କର ଲେଖା ୮୦ ବର୍ଷ ପୂର୍ବବର୍ତ୍ତୀ ହୋଇଥିବାରୁ ସେ ଯେଉଁ କିମ୍ବଦନ୍ତୀ ଉପରେ ନିର୍ଭର କରିଥିଲେ ତହିଁରେ ସତ୍ୟ ନିହିତ ଥିବାର ଅନୁମିତ ହୁଏ । ଯେତେବେଳେ କୌଣସି ସମସାମୟିକ ଲେଖା ମିଳୁନାହିଁ, ସେତେବେଳେ କିମ୍ବଦନ୍ତୀ ଇତିହାସ ସଂକଳନର ଏକମାତ୍ର ଉପାୟ ମାତ୍ର ।

ବିଶ୍ୱମ୍ଭର ନନ୍ଦଙ୍କ ଲେଖାରୁ ଜଣାଯାଏ ଯେ ବଳଦେବ ବିଦ୍ୟାଭୂଷଣ ବ୍ରାହ୍ମଣ ବଂଶଜ ଥିଲେ ଓ ଭକ୍ତିବିନୋଦ ଠାକୁରଙ୍କ ଲେଖାରୁ ଜଣାଯାଏ ଯେ ସେ ଖଣ୍ଡାୟତ ବଂଶଜ ଥିଲେ । ଏ ଦୁଇଟିରୁ କେଉଁଟି ସତ୍ୟ ? ବିଶ୍ୱମ୍ଭର ନନ୍ଦ ଶ୍ୟାମାନନ୍ଦ ସମ୍ପ୍ରଦାୟଭୁକ୍ତ ଥିବାରୁ ଓ ବଳଦେବ ସେହି ସମ୍ପ୍ରଦାୟଭୁକ୍ତ ଥିବାରୁ ବିଶ୍ୱମ୍ଭର ନନ୍ଦଙ୍କର ଲେଖା ଅଧିକ ବିଶ୍ୱାସଯୋଗ୍ୟ । ବଳଦେବ ବିଦ୍ୟାଭୂଷଣ ଦୀର୍ଘକାଳ ବୃନ୍ଦାବନ ଓ ତତ୍‌ପାର୍ଶ୍ୱବର୍ତ୍ତୀ ଅଞ୍ଚଳରେ ରହିଥିଲେ । ଏହି ଅବସ୍ଥାନ କାଳରେ ଜୟପୁର ରାଜ୍ୟର ଅନ୍ତର୍ଭୁକ୍ତ **ଗଲତା ଗାଦି**ର ସଭାରେ ସେ ଯୋଗ ଦେଇଥିବାର କଥା ବିଶ୍ୱମ୍ଭର ନନ୍ଦ ଦେବ ଗୋସ୍ୱାମୀ ଲେଖି ଅଛନ୍ତି । **ଗଲତା ଗାଦିର ଆଲୋଚନାର କଥା ତଳେ ଲିଖିତ ହେଲା ।**

ବୃନ୍ଦାବନ ବା ତତ୍‌ପାର୍ଶ୍ୱବର୍ତ୍ତୀ ବ୍ରଜମଣ୍ଡଳର କୌଣସି ସ୍ଥାନରେ ଅବସ୍ଥାନ କରିବା ସମୟରେ ଦାକ୍ଷିଣାତ୍ୟର ଶ୍ରୀ ସମ୍ପ୍ରଦାୟର ବୈଷ୍ଣବମାନେ ଜୟପୁର ରାଜ୍ୟ ଅନ୍ତର୍ଗତ 'ଗାଲତା' ଗାଦିକୁ ଆସିଥିଲେ ଓ ସେଠାରେ ଶ୍ରୀ ଚୈତନ୍ୟ ସମ୍ପ୍ରଦାୟ ବୈଷ୍ଣବମାନେ ରାଧା କୃଷ୍ଣମୂର୍ତ୍ତି ପୂଜା କରିବାରେ ଆପତ୍ତି ଉଠାଇଥିଲେ ଓ ଶ୍ରୀ ଚୈତନ୍ୟ ସମ୍ପ୍ରଦାୟର ନିବନ୍ଧ ବା ବ୍ରହ୍ମସୂତ୍ରର ଭଗବତ୍ ଗୀତା ଓ ବଂଶୋପନିଷଦର ସାମ୍ପ୍ରଦାୟିକ ଭାଷ୍ୟ ଦେଖାଇ ଧର୍ମମତ ପ୍ରମାଣ କରିବାକୁ ହେବ । ଏଥିପାଇଁ ଜୟପୁରର ମହାରାଜା ସବାଇ ଜୟସିଂହ ବୃନ୍ଦାବନର ସନ୍ନ୍ୟାସୀମାନଙ୍କ ପାଖକୁ ଲୋକ ପଠାଇଲେ । ତହୁଁ ବଳଦେବ ବିଦ୍ୟାଭୂଷଣ ଜୟପୁର ଯାଇ ଗାଲତା ସଭାରେ ପ୍ରସ୍ଥାନତ୍ରୟୀର ଭାଷ୍ୟ ଦେଖାଇ ଧର୍ମ ସମ୍ପ୍ରଦାୟର ମତ ସ୍ଥାପନ କଲେ ଓ ପ୍ରତିଦ୍ୱନ୍ଦ୍ୱୀ ବୈଷ୍ଣବ ସମ୍ପ୍ରଦାୟ ସବୁ ତାହା ସ୍ୱୀକାର କଲେ । ବିଦ୍ୟାଭୂଷଣଙ୍କର ଭାଷ୍ୟ ଗୁଡ଼ିକର ନାମ **'ଗୋବିନ୍ଦ ଭାଷ୍ୟ'** ଓ ବ୍ରହ୍ମସୂତ୍ରର ଭାଷ୍ୟରେ ସେ **'ଅଚିନ୍ତ୍ୟ ଭେଦାଭେଦ'** ମତ ସ୍ଥାପିତ କରିଅଛନ୍ତି ।

କିମ୍ବଦନ୍ତୀଗୁଡ଼ିକରୁ ଜୟପୁରର ମହାରାଜା ସବାଇ ଜୟସିଂହ ଓ ଗାଲତାଗାଦିର କଥା ଜଣାଯାଏ; ମାତ୍ର କୌଣସିଟିରେ ସମୟ ସୂଚକ ପ୍ରମାଣ ମିଳେ ନାହିଁ । ବୈଷ୍ଣବ ସନ୍ନ୍ୟାସୀମାନେ ସମୟପ୍ରତି ବିଶେଷ ଦୃଷ୍ଟି ଦିଅନ୍ତି ନାହିଁ; କିନ୍ତୁ ଜୟପୁର ରାଜ୍ୟର ଇତିହାସରୁ ବଳଦେବ ବିଦ୍ୟାଭୂଷଣଙ୍କର ସମୟ ନିରୂପଣ ଅତି ସହଜରେ ହୋଇଅଛି ।

ରାଜପୁତନାର ଜୟପୁର ରାଜ୍ୟର ପ୍ରାଚୀନ ନାମ ଅମ୍ବେର ଥିଲା କାରଣ ସେଠାର ରାଜଧାନୀ ଥିଲା ଜୟସିଂହ ୨ୟ ଅମ୍ବେରରେ ଖ୍ରୀ ୧୬୯୯ରେ ସିଂହାସନରେ ବସିଥିଲେ । ସେ ମୋଗଲ ଦରବାରରୁ ସବାଇ (୧୧/୪) ଉପାଧି ପାଇ ସବାଇ ଜୟସିଂହ ୨ୟ ନାମରେ ଇତିହାସରେ ପରିଚିତ । ସେ ଖ୍ରୀ ୧୭୨୮ରେ ରାଜ୍ୟର ରାଜଧାନୀ ଆମ୍ବେରରୁ ଜୟପୁରକୁ ଉଠାଇ ଆଣିଲେ ଓ ତଦନୁସାରେ ରାଜ୍ୟର ନାମ ମଧ ଜୟପୁର ହେଲା । ଜୟପୁର ରାଜଧାନୀର ଅଦୂରବର୍ତ୍ତୀ ଏକ ପାହାଡରନାମ 'ଗାଲତା' ପାହାଡ଼ । ସେ ସେଠାରେ ଗୋବିନ୍ଦଜୀଙ୍କର ମନ୍ଦିର ସ୍ଥାପନ କରିଥିଲେ । ଏଣୁ ବୈଷ୍ଣବମାନେ ତାକୁ 'ଗାଲତା ଗାଦି' କହନ୍ତି । ଦାକ୍ଷିଣାତ୍ୟର ବୈଷ୍ଣବମାନେ କେବେ ଜୟପୁର ଆସିଥିଲେ ତାହା ଜଣାଯାଏ ନାହିଁ । ଯଦି ରାଜଧାନୀର ବିକାଶ ପାଇଁ ୮/୧୦ ବର୍ଷ ଲାଗିଥାଏ, ତେବେ ଗାଲତା ସମ୍ମିଳନୀ ଖ୍ରୀ ୧୭୩୫ ଠାରୁ ଖ୍ରୀ ୧୭୪୦ ମଧ୍ୟରେ ଧରାଯାଇପାରେ । ସବାଇ ଜୟ ସିଂହ ୨ୟ ଖ୍ରୀ ୧୭୪୩ରେ ଇହଲୀଳା ସାଙ୍ଗ କରିଥିଲେ । ଏଣୁ ଗାଲତା ସମ୍ମିଳନୀକୁ ଖ୍ରୀ ୧୭୪୦ ଧରାଗଲେ ଇତିହାସରେ ସେପରି କିଛି ବ୍ୟତିକ୍ରମ ହେବ ନାହିଁ । ଖ୍ରୀ ୧୭୪୦ ବେଳକୁ ବଳଦେବ ବିଦ୍ୟାଭୂଷଣ ଯୁବକ ଥିଲେ । ତେଣୁ ତାଙ୍କର ଜନ୍ମକାଳ ଖ୍ରୀ ୧୭୧୦ ଧରାଯାଇପାରେ । ବର୍ତ୍ତମାନ ଦେଖାଯାଉ ସେ କେତେ କାଳ ବଞ୍ଚିଥିଲେ । ଡାକ୍ତର ସୁଶୀଲ କୁମାର ଦେ ଲେଖିଅଛନ୍ତି ଯେ ବଳଦେବ ବିଦ୍ୟାଭୂଷଣ ଖ୍ରୀ ୧୭୬୫ରେ ରୂପଗୋସ୍ୱାମୀଙ୍କର **'ସ୍ତବାବଳି'**ର **'ଉତ୍କଳିକାବଲ୍ଲରୀ'** ଟୀକା ଲେଖିଥିଲେ । ଏଣୁ ସେ ଖ୍ରୀ ୧୭୬୫ ଯାଏ ଜୀବିତ ଥିଲେ । ବିଶ୍ୱମ୍ଭର ନନ୍ଦ ଲେଖିଅଛନ୍ତି ଯେ ଶହେ ବର୍ଷ ଯାଏ ବଞ୍ଚିଥିବା ଲୋକ ବଳଦେବ ବିଦ୍ୟାଭୂଷଣଙ୍କୁ ଦେଖିଥିଲେ ଅର୍ଥାତ୍ ଖ୍ରୀ ୧୮୮୫ - ୧୦୦ ଖ୍ରୀ ୧୭୮୫ ଓ ତହିଁରେ ୧୦ ବର୍ଷ ଯୋଗକଲେ ଖ୍ରୀ ୧୭୯୫ ପର୍ଯ୍ୟନ୍ତ ବଳଦେବ ବିଦ୍ୟାଭୂଷଣ ଜୀବିତ ଥିବାର ଅର୍ଥାତ୍ ୮୫ ବର୍ଷ ପର୍ଯ୍ୟନ୍ତ ଜୀବିତ ଥିବାର ଅନୁମାନ କରାଯାଇପାରେ । ଯାହା ହେଉ ବଳଦେବ ବିଦ୍ୟାଭୂଷଣ ଦୀର୍ଘଜୀବୀ ଥିଲେ ।

ବଳଦେବ ବିଦ୍ୟାଭୂଷଣ ୨୪ଟି ଗ୍ରନ୍ଥର ଟୀକା କରି ଅଛନ୍ତି । ସେ ସମସ୍ତ ଗ୍ରନ୍ଥ ବୈଷ୍ଣବ ସମ୍ପ୍ରଦାୟର ଉପାଦେୟ ଗ୍ରନ୍ଥ ।

ଶ୍ରୀଧର ସ୍ୱାମୀଙ୍କର ଜନ୍ମସ୍ଥାନ ମରାଇଗାଁ ଆବିଷ୍କୃତ ହେଲାପରି ରେମୁଣା ଓ ତନ୍ନିକଟବର୍ତ୍ତୀ ଶିକ୍ଷିତ ଗ୍ରାମବାସୀମାନେ ଚେଷ୍ଟା କଲେ ବଳଦେବ ବିଦ୍ୟାଭୂଷଣଙ୍କର ଜନ୍ମସ୍ଥାନ ନିଶ୍ଚୟ ଆବିଷ୍କୃତ ହୋଇ ପାରିବ ।

•

(ଝଙ୍କାର-ସପ୍ତଦଶବର୍ଷ-୧୦ମ ସଂଖ୍ୟା - ୨୯୬୬)

# ଶ୍ରୀଧର ସ୍ୱାମୀ

• ଶ୍ରୀ ଚୈତନ୍ୟ ଚରଣ ଦାସଜୀ

ଶ୍ରୀଧରସ୍ୱାମୀଙ୍କର ପ୍ରକୃତ ଐତିହାସିକ ପରିଚୟ ପାଇବା କଠିନ । ତାଙ୍କ ସମ୍ପର୍କରେ କିୟଦଂଶ ଐତିହ୍ୟ ବା କିମ୍ବଦନ୍ତୀ ପ୍ରଚଳିତ ଅଛି । କେହି କେହି ତାହାଙ୍କୁ ଗୁଜୁରାଟ ଦେଶବାସୀ ମହାରାଷ୍ଟ୍ରୀୟ ବ୍ରାହ୍ମଣ, କେହି ବା ବିଖ୍ୟାତ ଭଟ୍ଟିକାବ୍ୟ ଗ୍ରନ୍ଥର ରଚୟିତାଙ୍କ ଜନକ ଏବଂ ପରବର୍ତ୍ତୀକାଳରେ ଅଦ୍ୱୈତମତାବଲମ୍ବୀ ସନ୍ନ୍ୟାସୀ ବୋଲି ବର୍ଣ୍ଣନା କରିଅଛନ୍ତି । ଶ୍ରୀ ନାଭାଜୀକୃତ ହିନ୍ଦୀ ଭକ୍ତମାଳାର ବର୍ତ୍ତିକାପ୍ରକାଶରେ ବର୍ଣ୍ଣିତ ହୋଇଅଛି ଯେ ଶ୍ରୀଧର ସ୍ୱାମୀ ପୂର୍ବାଶ୍ରମରେ ଜନୈକ ଧନବାନ୍ ସଦାଚାରୀ ଗୃହସ୍ଥ ଥିଲେ । ଆଗ୍ରାରୁ ଗୃହାଭିମୁଖରେ ପ୍ରତ୍ୟାବର୍ତ୍ତନକାଳରେ କେତେକ ଶଠ ତାଙ୍କର ପଶ୍ଚାତ୍‌ଧାବନ କରିଥିଲେ । ସେମାନେ "ଶ୍ରୀଧରଙ୍କ ସଙ୍ଗୀ ଆଉ କିଏ ଅଛି ?" ପ୍ରଶ୍ନ କରନ୍ତେ ଶ୍ରୀଧର ସ୍ୱାମୀ ଉତ୍ତର ଦେଲେ ଯେ ପ୍ରାଣାଧାର ଧନୁର୍ଦ୍ଧାରୀ ରଘୁବୀର ତାଙ୍କ ସଙ୍ଗରେ ଅଛନ୍ତି । ଏହିକଥା ଶୁଣି ଶଠମାନେ ଶ୍ରୀଧରଙ୍କର କୌଣସି ପ୍ରକୃତ ରକ୍ଷାକାରୀ ନାହାନ୍ତି ବୁଝିପାରି ତାଙ୍କ ପ୍ରାଣସଂହାର ପୂର୍ବକ ଧନାଦି ଗ୍ରହଣ କରିବାର ଉପାୟ ଚିନ୍ତା କରନ୍ତେ ଧନୁର୍ଦ୍ଧାରୀ ଭଗବାନ୍ ରାଘବେନ୍ଦ୍ର ଶ୍ରୀଧରଙ୍କ ସଙ୍ଗେ ସଙ୍ଗେ ରକ୍ଷକ ରୂପରେ ଯାତ୍ରା କଲେ । ବଞ୍ଚକଗଣ ଏହା ଦେଖିବାକୁ ପାଇଲେ । ଶ୍ରୀଧର ନିରାପଦରେ ଗୃହରେ ଉପନୀତ ହୁଅନ୍ତେ ଧନୁର୍ଦ୍ଧାରୀ ଭଗବାନ୍ ଅନ୍ତର୍ଦ୍ଧାନ ହୋଇଗଲେ । ସେତେବେଳେ ତଦନୁସରଣକାରୀ ପ୍ରତାରକବୃନ୍ଦ ଶ୍ରୀଧରଙ୍କ ନିକଟରେ ଉକ୍ତ ଧନୁର୍ଦ୍ଧାରୀ ବୀରବରଙ୍କର ଦର୍ଶନ ନିମନ୍ତେ ପ୍ରାର୍ଥନା କଲେ । ଶ୍ରୀଧର ସେତେବେଳେ ବୁଝିପାରିଲେ ଯେ, ସେ ଶଠମାନଙ୍କୁ ବଞ୍ଚନା କରିବା ନିମିତ୍ତ ଭଗବାନଙ୍କର ନାମମାତ୍ର ଉଲ୍ଲେଖ କରିଥିଲେ । ସେହି ଭଗବାନ୍ ସତ୍ୟ, ସତ୍ୟହିଁ ତାଙ୍କର ରକ୍ଷକରୂପରେ ଏବଂ ଭୃତ କଷ୍ଟ ସ୍ୱୀକାର ପୂର୍ବକ ତାଙ୍କୁ ଦୁର୍ଗମ ପଥରେ ରକ୍ଷା କରି ଗୃହକୁ ନିରାପଦରେ ଆଣିପାରିଥିଲେ । ଏଥିପାଇଁ ତାଙ୍କ ହୃଦୟରେ ଗ୍ଲାନି (ପ୍ରଭୁଙ୍କୁ କଷ୍ଟ ଦେଇଥିଲେ ବୋଲି) ଏବଂ ବିଶ୍ୱାସ ଓ ଭକ୍ତିର ଉଦୟ ହୋଇଥିଲା । ଶ୍ରୀଧର ସନ୍ନ୍ୟାସ ଗ୍ରହଣ କରି ହରି ଭଜନାର୍ଥ ବହିର୍ଗତ ହେବାପରେ ଶ୍ରୀମଦ୍‌ଭାଗବତ ଟୀକା ରଚନା କଲେ । ଲାଲଦାସକୃତ ଭକ୍ତମାଳା ଗ୍ରନ୍ଥର ବର୍ଣ୍ଣନା ଅନୁସାରେ ଶ୍ରୀ ପରମାନନ୍ଦପୁରୀ ନାମକ ଜନୈକ ସନ୍ନ୍ୟାସୀଙ୍କର କୃପାଲାଭ ପୂର୍ବକ ଶ୍ରୀ ନୃସିଂହ ଉପାସକ ଓ ପରମ ଭାଗବତ ହୋଇଥିଲେ । ତାଙ୍କ ହୃଦୟରେ ବୈରାଗ୍ୟ ଉଦୟ ହେବାରୁ ଗୃହରେ ପୂର୍ଣ୍ଣ ଗର୍ଭବତୀ ସ୍ତ୍ରୀଙ୍କୁ ଏକାକିନୀ ରଖି ବନଗମନାର୍ଥ ସଂକଳ୍ପ କଲେ; କିନ୍ତୁ ତତ୍‌ପୂର୍ବରୁ ତଦୀୟ ପତ୍ନୀ ଏକ ପୁତ୍ର ପ୍ରସବ କରିବା ମାତ୍ରେ ଦେହତ୍ୟାଗ କରନ୍ତେ ଶ୍ରୀଧର ଶିଶୁ ପୁତ୍ରକୁ କିପରି ଏକାକୀ ରଖି ଗୃହ ତ୍ୟାଗ କରିବେ ଏହା ଭାବି ବ୍ୟାକୁଳ ହୋଇପଡ଼ିଲେ । ଠିକ୍ ସେହି ସମୟକୁ ଗୃହର ଉପରି ଭାଗରୁ ଏକ ଟିକି ଅଣ୍ଡା ଭୂପୃଷ୍ଠରେ ପଡ଼ିବା କ୍ଷଣି ଭାଙ୍ଗିଗଲା । ତହିଁରୁ ଏକ ସୁନ୍ଦର ଶାବକ ବହିର୍ଗତ ହୋଇ ସମ୍ମୁଖସ୍ଥ ଏକ ମକ୍ଷିକାକୁ ଭକ୍ଷଣ

କଲା । ଉକ୍ତ ଘଟଣାକୁ ଶ୍ରୀଧର ବୁଝିପାରିଲେ ଯେ, ସର୍ବପାଳକ ଭଗବାନ ହିଁ ଏକ ମାତ୍ର ରକ୍ଷାକର୍ତ୍ତା । ଶ୍ରୀଧର ଗୃହତ୍ୟାଗ କଲେ । ଗ୍ରାମସ୍ଥ ବ୍ୟକ୍ତିମାନେ ଶିଶୁଟିକୁ ଲାଳନପାଳନ କରିବାକୁ ଲାଗିଲେ । ଏହି ଶିଶୁ ହିଁ କାଳକ୍ରମେ ବିଖ୍ୟାତ ଭକ୍ତିକାବ୍ୟ ଗ୍ରନ୍ଥର ରଚୟିତା ହେଲେ । ଶ୍ରୀଧାମ ବୃନ୍ଦାବନସ୍ଥ ଶ୍ରୀରାଧାରମଣ ଦାସଗୋସ୍ୱାମୀ ମହାଶୟ ଶ୍ରୀଧରସ୍ୱାମୀଙ୍କ ସମ୍ବନ୍ଧରେ ଏକ ଐତିହ୍ୟମତ ଉଲ୍ଲେଖ କରିଅଛନ୍ତି । ଶ୍ରୀଧର ପୂର୍ବାଶ୍ରମରେ ଦିଗ୍‌ବିଜୟୀ ପଣ୍ଡିତ ଥିଲେ । ସେ ଏକଦା ଦିଗ୍‌ବିଜୟ କରି ଗୃହକୁ ପ୍ରତ୍ୟାବର୍ତ୍ତନ କାଳରେ କେତେକ ଦସ୍ୟୁ ପଥରେ ତାଙ୍କୁ ଆକ୍ରମଣ କଲେ । ଶ୍ରୀଧର ଭୀତତ୍ରସ୍ତ ହୋଇ ଚକ୍ଷୁମୁଦ୍ରିତପୂର୍ବକ ନିଜର ଗୃହଦେବତା ଶ୍ରୀରାମଚନ୍ଦ୍ରଙ୍କୁ ସ୍ମରଣ କରନ୍ତେ, ତତ୍‌କ୍ଷଣାତ୍ ଧନୁର୍ଦ୍ଧାରୀ ଶ୍ରୀରଘୁନାଥ ଦସ୍ୟୁମାନଙ୍କୁ ନାନା ପ୍ରକାର ଭୟ ପ୍ରଦର୍ଶନ କଲେ । ସେତେବେଳେ ଦସ୍ୟୁଗଣ ଶ୍ରୀଧରଙ୍କ ପାଦପଦ୍ମରେ ପତିତ ହୋଇ କହିବାକୁ ଲାଗିଲେ - ହେ ବିପ୍ର ! ତୁମ୍ଭର ସଙ୍ଗୀ ଦୂର୍ବାଦଳଶ୍ୟାମ କୌଣସି ଏକ ଅପୂର୍ବ ବାଳକ ଆମ୍ଭମାନଙ୍କୁ ବାଣ ବିଦ୍ଧ କରୁଅଛି; ରକ୍ଷା କର । ଏକଥା ଶୁଣି ଶ୍ରୀଧର ମନେ ମନେ ବଡ଼ ଦୁଃଖିତ ହେଲେ ଏବଂ ଭାବିଲେ ଯେ, ଏହି ତୁଚ୍ଛ ଧନ ରକ୍ଷାର୍ଥ ମୋର ପ୍ରାଣାରାଧ ପ୍ରଭୁ ଏତେ କଷ୍ଟ ସ୍ୱୀକାର କରିଅଛନ୍ତି । ଭଗବାନଙ୍କ ସୁଖ ସମ୍ପାଦନ ନିମନ୍ତେ ଭକ୍ତ ସର୍ବଦା ଚେଷ୍ଟାଶୀଳ । ଏହା ସାଧନା ଜଗତରେ ଏକ ଅନିର୍ବଚନୀୟ ବୈଶିଷ୍ଟ୍ୟ । ଯାହାହେଉ ତନ୍ମୁହୂର୍ତ୍ତରେ ଶ୍ରୀଧର ସଂସାର ତ୍ୟାଗ କରି କାଶୀଧାମକୁ ଗମନପୂର୍ବକ ଶ୍ରୀ ପରମାନନ୍ଦ ସ୍ୱାମୀଙ୍କ ନିକଟରୁ ଶ୍ରୀ ନୃସିଂହ ମନ୍ତ୍ରରେ ଦୀକ୍ଷିତ ହୋଇ ସନ୍ନ୍ୟାସ ଗ୍ରହଣ କଲେ । କେହି କେହି କୁହନ୍ତି 'ନାମକୌମୁଦୀ' ଗ୍ରନ୍ଥର ରଚୟିତା ଲକ୍ଷ୍ମୀଧର ଶ୍ରୀଧର ସ୍ୱାମୀଙ୍କର ସତୀର୍ଥ ଭ୍ରାତା ଥିଲେ । ଶ୍ରୀ ସ୍ୱାମୀଙ୍କ ରଚିତ ଗ୍ରନ୍ଥରୁ ଯେ ସମସ୍ତ ସଂକ୍ଷିପ୍ତ ତଥ୍ୟ ସଂଗ୍ରହ କରାହୋଇଛି ତହିଁରୁ ଜଣାଯାଏ ଯେ ସେ କେବଳା-ଦ୍ୱୈତବାଦୀ ସଂପ୍ରଦାୟର କାଶୀବାସୀ ଏକଦଣ୍ଡୀ ସନ୍ନ୍ୟାସୀ ଥିଲେ; କିନ୍ତୁ ମାୟାବାଦୀ ନଥିଲେ । ସେ ଅଦ୍ୱୈତବାଦୀ ସଂପ୍ରଦାୟର ଶୋଧନ ନିମିତ୍ତ ବିଶେଷ ଯତ୍ନ କରିଥିଲେ । ଶ୍ରୀଧର ସ୍ୱାମୀ ପରମାନନ୍ଦ ନାମକ ଗୁରୁଙ୍କର ପଦାଶ୍ରୟ କରିଥିଲେ । ତାଙ୍କର ସନ୍ନ୍ୟାସନାମ ଯତି ''ଶ୍ରୀଧର ସ୍ୱାମୀ'' ଏବଂ ସେ ନୃସିଂହ ଉପାସକ ଥିଲେ । ସେ ଶ୍ରୀହରିଙ୍କୁ ଏକାତ୍ମା ଜାଣି ଏବଂ ଶ୍ରୀ ମାଧବଙ୍କୁ ହିଁ ସ୍ୱୟଂରୂପ ଭଗବାନ୍ ବୋଲି ଜାଣିଥିଲେ । ଶ୍ରୀଧରସ୍ୱାମୀ କାଶୀରେ ଅବସ୍ଥାନ ପୂର୍ବକ ବିନ୍ଦୁମାଧବଙ୍କ ସନ୍ତୋଷାର୍ଥ ଚିତ୍‌ମୁଖାଚାର୍ଯ୍ୟଙ୍କ ଆଲୋଚନା କରି ବିଷ୍ଣୁ ପୁରାଣର ଆତ୍ମପ୍ରକାଶ ଟୀକା ରଚନା କରିଥିଲେ । ଶ୍ରୀମଭଗବତର ''ଭାବାର୍ଥ ଦୀପିକା'' ଟୀକା ମଧ୍ୟ ସ୍ୱ ସଂପ୍ରଦାୟର ବିଶୁଦ୍ଧି ନିମନ୍ତେ ରଚନା କରିଥିଲେ ।

ପ୍ରାଚୀନ ଆଚାର୍ଯ୍ୟ ଓ ଲେଖକମାନଙ୍କ ମଧ୍ୟରେ ଶ୍ରୀ ଭକ୍ତିରତ୍ନାବଳୀ ଗ୍ରନ୍ଥକାର ଶ୍ରୀ ବିଷ୍ଣୁପୁରୀ, ଶ୍ରୀ ସନାତନ ଗୋସ୍ୱାମୀ, ଶ୍ରୀ ରୂପଗୋସ୍ୱାମୀ, ଶ୍ରୀ ଜୀବନଗୋସ୍ୱାମୀ, ଶ୍ରୀ କୃଷ୍ଣଦାସ କବିରାଜ ଗୋସ୍ୱାମୀ, ଶ୍ରୀ ବିଶ୍ୱନାଥ ଚକ୍ରବର୍ତ୍ତୀ ଠାକୁର ପ୍ରମୁଖ ଗୌଡ଼ୀୟ ବୈଷ୍ଣବାଚାର୍ଯ୍ୟଗଣ ବିଶେଷ ଗୌରବର ସହିତ ଶ୍ରୀଧରସ୍ୱାମୀଙ୍କ ନାମ ଓ ଟୀକାର ଉଲ୍ଲେଖ କରିଅଛନ୍ତି । ଶ୍ରୀ ଚୈତନ୍ୟ ଚରିତାମୃତ ଗ୍ରନ୍ଥରେ ଶ୍ରୀ ଗୌରାଙ୍ଗ ମହାପ୍ରଭୁ

ଶ୍ରୀଧର ସ୍ୱାମୀଙ୍କୁ ସ୍ୱାମୀ ବା ଜଗଦ୍‌ଗୁରୁ ''ଶ୍ରୀଧର ସ୍ୱାମୀ ପ୍ରସାଦେ ଭାଗବତ ଜାନି'' ପ୍ରଭୃତି ବାକ୍ୟ ଦ୍ୱାରା ଶ୍ରୀ ସ୍ୱାମୀଙ୍କ ପ୍ରତି ମର୍ଯ୍ୟାଦା ପ୍ରଦର୍ଶନ କରିଅଛନ୍ତି । ସନାତନ ଗୋସ୍ୱାମୀ ଶ୍ରୀଧରସ୍ୱାମୀଙ୍କୁ ଭକ୍ତିର ଏକମାତ୍ର ରକ୍ଷକ ବୋଲି କହିଅଛନ୍ତି । ଶ୍ରୀ ଜୀବ ଗୋସ୍ୱାମୀ ସଂକ୍ଷେପ ବୈଷ୍ଣବ ତୋଷଣୀ ଓ ଷଟ୍‌ସନ୍ଦର୍ଭ ଗ୍ରନ୍ଥରେ ପୂର୍ବୋକ୍ତ ସିଦ୍ଧାନ୍ତର ଅନୁବର୍ତ୍ତନ କରିଅଛନ୍ତି ।

ଶ୍ରୀଧରସ୍ୱାମୀଙ୍କର ଅଭ୍ୟୁଦୟକାଳ ନିର୍ଣ୍ଣୟ କରିବା ବଡ଼ କଠିନସମସ୍ୟା । ସେ ତାଙ୍କ ଟୀକାରେ ଶ୍ରୀ ଶଙ୍କରାଚାର୍ଯ୍ୟ; ଚିତ୍ ସୁଖଯୋଗୀ ଓ ବୋପଦେବଙ୍କ ନାମ ଉଲ୍ଲେଖ କରିଅଛନ୍ତି ।

## ଶ୍ରୀଧର ସ୍ୱାମୀଙ୍କ ରଚିତ ଟୀକା

ଶ୍ରୀଧର ସ୍ୱାମୀ ଶ୍ରୀମଦ୍‌ଭଗବଦ୍ ଗୀତାର ସୁବୋଧିନୀ ଟୀକା, ବିଷ୍ଣୁପୁରାଣର ଆତ୍ମପ୍ରକାଶ ଟୀକା ଓ ଶ୍ରୀମଦ୍‌ଭାଗବତର ଭାବାର୍ଥ ଦୀପିକାଟୀକା ରଚନା କରିଅଛନ୍ତି । ''ବ୍ରଜବିହାର'' ପ୍ରଭୃତି ଭକ୍ତି ଗ୍ରନ୍ଥର ରଚୟିତା ବୋଲି ମଧ କଥିତ ଅଛି । ଏତଦ୍‌ବ୍ୟତୀତ ଶ୍ରୀଧରସ୍ୱାମୀପାଦଙ୍କ ରଚିତ ଶ୍ରୀକୃଷ୍ଣ ନାମ ଓ ପ୍ରେମ ମହାତ୍ମ୍ୟସୂଚକ କେତୋଟି ଶ୍ଳୋକ ଶ୍ରୀ ରୂପଗୋସ୍ୱାମୀ ପାଦ ''ପଦ୍ୟାବଳୀ'' ଗ୍ରନ୍ଥରେ ଉଲ୍ଲେଖ କରିଅଛନ୍ତି ।

ଶ୍ରୀଧର ସ୍ୱାମୀଙ୍କ ମତବାଦ

(ଶୁଦ୍ଧାଦ୍ୱୈତବାଦ ଓ ବାସ୍ତବ ବସ୍ତ୍ୱୈକ୍ୟବାଦ)

କେବଳାଦ୍ୱୈତବାଦର ବା ନିର୍ବିଶେଷବାଦର (ମାୟାବାଦର) ଅଶୁଦ୍ଧତ୍ୱ (ମାୟାଶ୍ରୟତ୍ୱ) ଶୋଧନପୂର୍ବକ ପରମାର୍ଥଭୂତ (ବାସ୍ତବ) ବସ୍ତୁର ସହିତ ତଦ୍‌ଅଂଶ ଭୂତଜୀବ, ତତ୍‌କାର୍ଯ୍ୟଭୂତ ଜଗତ୍ ଓ ତଦୀୟ ଶକ୍ତି ସ୍ୱରୂପ ମାୟାର ଅଦ୍ୱୟତ୍ୱ । ଭାବାର୍ଥ ଦୀପିକା ୧ ।୧ ।୨ ।

ପରତତ୍ତ୍ୱ

ଶ୍ରୀକୃଷ୍ଣ (ଭାବାର୍ଥ ଦୀପିକା) 'ଶ୍ରୀକୃଷ୍ଣାଖ୍ୟଂ ପରଂଧାମ' ଏହି ମଙ୍ଗଳା ଚରଣ ଶ୍ରୀମାଧବ (ସୁବୋଧିନୀ) ।

ଉପାସନାତତ୍ତ୍ୱ

ଶ୍ରବଣ-କୀର୍ତ୍ତନ-ସଂସ୍ମରଣାଦି ଭକ୍ତି । (ମୁକ୍ତିଧିକ୍‌କରିଣୀ, ନିତ୍ୟା, ମୁକ୍ତକୁଳୋପାସ୍ୟା, କୈତବରହିତା (ଭା: ଦୀ: ୧୦।୮୭।୧୬ ) ।

ପ୍ରୟୋଜନତତ୍ତ୍ୱ

ଜୀବନର ଶୁଦ୍ଧସ୍ୱରୂପ ପ୍ରାପ୍ତି (ସୁବୋଧିନୀ ୧୫।୭)

ପରମାତ୍ମା ଏକଦର୍ଶନ (ବ୍ରହ୍ମଙ୍କର ଓ ଜୀବତତ୍ତ୍ୱର ଐକଦର୍ଶନ) (ଭା: ଦୀ: ୬।୧୬।୬୩) ।

ଅନୁଗତ ରୂପେ ଦଣ୍ଡବତ୍ ପ୍ରଣାମ ସହକାରେ ଭଗବତ୍ ଚରଣ ଯୁଗଳରେ ଶୟନ । (ଭା: ଦୀ: ୧୦।୮୭।୫୦) ।

ଇଷ୍ଟତତ୍ତ୍ୱ

ଶ୍ରୀନୃହରି (ଭାବାର୍ଥ ଦୀପିକା ମଙ୍ଗଳାଚରଣେ ଶ୍ଳୋକ ୧) ।

ଶାସ୍ତ୍ର ପ୍ରମାଣ

ଶବ୍ଦ ପ୍ରମାଣ ହିଁ ଶ୍ରେଷ୍ଠ । ପ୍ରାମାଣିକ ଶାସ୍ତ୍ର-ଶ୍ରୁତି, ବ୍ରହ୍ମସୂତ୍ର,ଶ୍ରୀ ଗୀତା, ବିଷ୍ଣୁ ପୁରାଣ, ନୃସିଂହ ପୁରାଣ, ଶ୍ରୀମଦ୍ଭାଗବତ ଇତ୍ୟାଦି ।

ଭାଷ୍ୟ ନାମ

ନିଜକୃତ କୌଣସି ବ୍ରହ୍ମସୂତ୍ର ଭାଷ୍ୟନାହିଁ ।

ବ୍ରହ୍ମତତ୍ତ୍ୱ

'ବ୍ରହ୍ମୈବ ତାବନ୍ନାରାୟଣ ଇତି, ଭଗବାନିତି, ପରମାତ୍ମେତି ଚୋଚ୍ୟତେ'' ଭାବାର୍ଥ ଦୀପିକା । ୧୧ ।୩।୩୪ ।

ସଗୁଣ ଅର୍ଥାତ୍ ଗୁଣ ଦ୍ୱାରା ଅନଭିଭୂତ ।

ସର୍ବଜ୍ଞ, ସର୍ବଶକ୍ତି, ସର୍ବେଶ୍ୱର, ସର୍ବନିୟନ୍ତା, ସର୍ବୋପାସ୍ୟ, ସର୍ବକର୍ମଫଳପ୍ରଦାତା, ନିଖିଳକଲ୍ୟାଣନିଳୟ, ସଚ୍ଚିଦାନନ୍ଦ ଭଗବାନ୍ (ଭା: ଦୀ:୧୦।୮୭।୨) ।

ଶକ୍ତିତତ୍ତ୍ୱ

ଅଗ୍ନିର ଦାହିକାଶକ୍ତିବତ୍ ବ୍ରହ୍ମାଙ୍କର ସ୍ୱଭାବସିଦ୍ଧ ଶକ୍ତିସମୂହ ବର୍ତ୍ତମାନ । ବ୍ରହ୍ମଙ୍କର ସ୍ୱାଭାବିକୀ ପରାଶକ୍ତି ଜ୍ଞାନ, ବଳ ଓ କ୍ରିୟା ଅଥବା ବିଦ୍ୟାଶକ୍ତି ଆହ୍ଲାଦିନୀ, ସନ୍ଧିନୀ, ସମ୍ବିତ୍ ଏହି ତ୍ରିବିଧଶକ୍ତି ଅବ୍ୟଭିଚାରିଣୀ ସ୍ୱରୂପଭୂତା ଅଟେ (ବି.ପୁ.୧।୨।୩) ।

ବିଷ୍ଣୁପୁରାଣ ବଚନାନୁସାରେ ଭଗବାନଙ୍କର ପରାଶକ୍ତି (ଅନ୍ତରଙ୍ଗାଶକ୍ତି) ତଟସ୍ଥା (ଜୀବଶକ୍ତି) ବହିରଙ୍ଗା (ମାୟାଶକ୍ତି) (ବିଷ୍ଣୁ ପୁରାଣ ୬।୭।୬୨।) ।

ମାୟାତତ୍ତ୍ୱ

ପରମାର୍ଥଭୂତ ବସ୍ତୁର ଶକ୍ତି 'ମାୟା' । (ଭାବାର୍ଥ ଦୀପିକା୧ ।୧।୨) ।

ଜୀବତତ୍ତ୍ୱ

ପରମାର୍ଥଭୂତ ବସ୍ତୁର ଅଂଶ 'ଜୀବ' (ଭା: ଦୀ: ୧।୧।୨) ।

ଜଗତ୍ ତତ୍ତ୍ୱ

ପରମାର୍ଥଭୂତ ବସ୍ତୁର କାର୍ଯ୍ୟ ଏହି 'ଜଗତ୍' (ଭା: ଦୀ: ୧।୧।୨) ।

ଜଗତ୍ କାରଣ ତତ୍ତ୍ୱ

ବ୍ରହ୍ମ ଜଗତର ନିମିତ୍ତ କାରଣ ଏବଂ ଉପାଦାନ କାରଣ (ଭା: ଦୀ: ୧।୪।୨୩) ।

ତତ୍ତ୍ୱ ମସି ବ୍ୟାଖ୍ୟା

ତତ୍‌ପଦାର୍ଥ (ବୃହତ୍ ଚୈତନ୍ୟ) ଏବଂ 'ତ୍ୱମ୍' ପଦାର୍ଥ (ଅଣୁ ଚୈତନ୍ୟ) ଏହି ଉଭୟ ପଦର ବୃହତ୍ତ୍ୱ ଓ ଅଣୁତ୍ତ୍ୱ ରୂପ ବିରୁଦ୍ଧ ଅର୍ଥ ତ୍ୟାଗ କରି ଜହଦଜହତ୍ ଲକ୍ଷଣ ଦ୍ୱାରା କେବଳ ଚୈତନ୍ୟ ରୂପ ଅର୍ଥ - ଦ୍ୱୟର ସାମାନାଧିକରଣ୍ୟ ହେତୁ ନିର୍ଗୁଣ ବ୍ରହ୍ମହିଁ ତତ୍ତ୍ୱମସିର ପରିସମାପ୍ତି (ଭା: ଦୀ: ୧୦।୮୭।୨) ।

•••

# ଶ୍ରୀ ଧର ସ୍ୱାମୀ

• ଶ୍ରୀ ଶ୍ରୀଶେଶ ପ୍ରତାପ ସିଂହଦେବ
• ଶ୍ରୀ ଗୌରେନ୍ଦ୍ର ପତାପ ସିଂହଦେବ

"ମୂକଂ କରୋତି ବାଚାଳଂ ପଙ୍ଗୁ ଲଙ୍ଘୟତେ ଗିରିଂ
ଯତ୍ କୃପା ତମହଂ ବନ୍ଦେ ପରମାନନ୍ଦ ମାଧବଂ ।"

ଜଗତ୍ ଗୁରୁ ଶ୍ରୀଧର ସ୍ୱାମୀ, ଚତୁର୍ଦ୍ଦଶ ଶତାବ୍ଦୀର ଶ୍ରୀମଦ୍ ଭାଗବତ ଗୀତା, ଶ୍ରୀମଦ୍ ଭାଗବତ, ଶ୍ରୀ ବିଷ୍ଣୁପୁରାଣ ଆଦି ଗ୍ରନ୍ଥମାନଙ୍କର ଏକ ବିଶିଷ୍ଟ ଭାଷ୍ୟକାର ଭାବେ ଆଜି ଅବିଦିତ ନୁହଁନ୍ତି । କିନ୍ତୁ ସେ ଯେ ଉତ୍କଳୀୟ ବ୍ରାହ୍ମଣ ବଂଶଜ ଏବଂ ତାଙ୍କ ଜନ୍ମସ୍ଥାନ ବାଲେଶ୍ୱର ଜିଲ୍ଲା ରେମୁଣା ନିକଟସ୍ଥ ମରେଇ ଗ୍ରାମରେ ଏବଂ ତାଙ୍କର ପ୍ରଧାନ କର୍ମକ୍ଷେତ୍ର ଢେଙ୍କାନାଳସ୍ଥ ଶମ୍ଭୁକ୍ଷେତ୍ର କପିଳାସ, ଏ ବିଷୟ ଅତି ଅଳ୍ପଲୋକଙ୍କୁ ଜଣା । ଶ୍ରୀଧର ସ୍ୱାମୀଙ୍କ ସମ୍ବନ୍ଧରେ ବହୁ ପ୍ରାମାଣିକ ତଥ୍ୟ ମିଳୁଥିଲା ବେଳେ, କେତେ ଗୁଡ଼ିଏ ଭ୍ରାମାତ୍ମକ ପରସ୍ପର ବିରୋଧୀ କିମ୍ବଦନ୍ତୀ ଉପରେ ତାଙ୍କର ଜୀବନର ଇତିହାସ ଗଢ଼ାହୋଇ ଚାଲିଛି । ଏହାର ଗବେଷଣାମୂଳକ ତଥ୍ୟମାନ ପ୍ରକାଶ ନ ପାଇ ବରଂ ଅତି ମାତ୍ରାରେ ଅଧିକ ଭ୍ରାମାତ୍ମକ ପ୍ରବନ୍ଧ ମାନ ପତ୍ର ପତ୍ରିକାରେ ପ୍ରକାଶ ପାଇବାରେ ଲାଗିଛି । ଆମେ ଏ ଦିଗରେ କିଛି ଗବେଷଣା କରି, ଆମ୍ଭମାନଙ୍କଦ୍ୱାରା ପ୍ରଣୀତ "ଶମ୍ଭୁକ୍ଷେତ୍ର କପିଳାସ ଓ ଶ୍ରୀଧର ସ୍ୱାମୀ" ପୁସ୍ତକ ୧୯୮୦ ମସିହାରେ ପ୍ରକାଶ କରିଥିଲୁଁ । ସେଥିରେ ମଧ୍ୟ ଉଲ୍ଲେଖ କରିଥିଲୁଁ ଯେ ଶ୍ରୀଧର ସ୍ୱାମୀଙ୍କ ସମ୍ବନ୍ଧରେ ଓଡ଼ିଆରେ ଗୋଟିଏ ପୂର୍ଣ୍ଣାଙ୍ଗ ପୁସ୍ତକ ପ୍ରକାଶ ପାଇବା ବାଞ୍ଛନୀୟ । କିନ୍ତୁ ଦୁଃଖର ବିଷୟ ଆଜି ପର୍ଯ୍ୟନ୍ତ ଏ ଦିଗରେ କେହି ଅଗ୍ରସର ହୋଇନାହାନ୍ତି । ଏ ତଥ୍ୟଗୁଡ଼ିକର ବହୁଳ ପ୍ରଚାର ଓ ପ୍ରସାର ଉଦ୍ଦେଶ୍ୟରେ ଆଜି ଏ ପ୍ରବନ୍ଧଟି ଲେଖାଯାଉଅଛି ।

ଶ୍ରୀଧର ସ୍ୱାମୀଙ୍କ ସମ୍ବନ୍ଧରେ ଯେଉଁ ନାନାବିଧ କିମ୍ବଦନ୍ତୀମାନ ପ୍ରଚଳିତ ଅଛି ସେଥିମଧ୍ୟରୁ କେତେକଙ୍କ ମତରେସେ ଜଣେ ଗୁଜୁରାଟ ଦେଶୀୟ ବ୍ରାହ୍ମଣ । ଆଉ କେତେକଙ୍କ ମତରେ ସେ ଜଣେ ମହାରାଷ୍ଟ୍ରୀୟ ବ୍ରାହ୍ମଣ । କିନ୍ତୁ ଏଥିମଧ୍ୟରୁ ସମସ୍ତେ ତାଙ୍କର ଜନ୍ମସ୍ଥାନ ବା ବଂଶଗତ ଇତିହାସ ବା ପରମ୍ପରା ଉପରେ ନୀରବ କେହି କେହି ତାଙ୍କୁ ଭଚିକାବ୍ୟ ରଚୟିତାଙ୍କ ପିତା ବୋଲି ମଧ୍ୟ କହିଥାନ୍ତି । ଅନ୍ୟ ମତରେ ସେ ଶଙ୍କର-ଗୋଷ୍ଠୀର ଅଦ୍ୱୈତ ମତାବଲମ୍ବୀ ଦଣ୍ଡୀ ସନ୍ନ୍ୟାସୀ ଅଦ୍ୱୈତ ମତାବଲମ୍ବୀ ହୋଇଥିବାରୁ ସେ ପୁରୀର ଶଙ୍କରାଚାର୍ଯ୍ୟ ପ୍ରତିଷ୍ଠିତ ଗୋବର୍ଦ୍ଧନ ପୀଠର ଅନ୍ୟତମ ସନ୍ନ୍ୟାସୀ ରୂପେ ଗୃହୀତ ହୋଇଥିଲେ । ଏଣୁ ତାଙ୍କର ପୁତ୍ରଥିବା କପୋଳକଳ୍ପିତ ପ୍ରାୟ ୭୫ ବର୍ଷ ପୂର୍ବେ "ମୁକୁର" ସାହିତ୍ୟିକ ମାସିକ ପତ୍ରିକାରେ ପ୍ରକାଶିତ ଶ୍ରୀ ଚନ୍ଦ୍ରମୋହନ ମହାରଣାଙ୍କର ପ୍ରବନ୍ଧ, ଶ୍ରୀ ରାମଚନ୍ଦ୍ର ନନ୍ଦ ଭକ୍ତି ବିନୋଦଙ୍କର "ଢେଙ୍କାନାଳ ଇତିହାସ", ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟଙ୍କର " Studies in Orissan History, Archeology and Achieves ଓ ଡକ୍ଟର ହରେକୃଷ୍ଣ ମହତାବଙ୍କର "ଓଡ଼ିଶା ଇତିହାସ" ପ୍ରଭୃତିରେ ପ୍ରମାଣିତ

ହୋଇଅଛି ଯେ ଶ୍ରୀଧର ସ୍ୱାମୀଙ୍କର ଜନ୍ମସ୍ଥାନ ହେଉଛି ମରେଇ ଗାଁ, ମଞ୍ଜରୀ ଗାଁ ବା ମଯୂର ଗ୍ରାମ । ବାଲେଶ୍ୱର ଜିଲ୍ଲା ଅନ୍ତର୍ଗତ ଶ୍ରୀ କ୍ଷୀରଚୋରା ଗୋପୀନାଥଙ୍କର ମନ୍ଦିରର ଉତ୍ତର ଦିଗରେ ସୋନ ନଦୀଠାରୁ ଦୁଇମାଇଲ ଦୂରରେ ଏହି ଗ୍ରାମ ଅବସ୍ଥିତ । ପରମାନନ୍ଦ ଆଚାର୍ଯ୍ୟ ଲେଖିଛନ୍ତି ଯେ - "At Maraigan the descendants of Sridhara Swami have been residing till now, like Sashibhusan Satpathy and it is proved that they are descendants of Sridhara Swami." ଶ୍ରୀଧର ସ୍ୱାମୀ ଯେ ଓଡ଼ିଶାର ଲୋକ ଏଥିରେ କୌଣସି· ସନ୍ଦେହ ନାହିଁ । ମାଘ ସପ୍ତମୀରେ ରେମୁଣା ଥାନାର ମରେଇ ଗାଁରେ ଏବେ ମଧ ଏହି ବିଶ୍ୱବିଖ୍ୟାତ ସଂସ୍କୃତ ଟୀକାକାରଙ୍କର ସ୍ମୃତିପୀଠରେ ସ୍ମୃତି ପାଳନ କରାଯାଇଥାଏ ।

ଶ୍ରୀଧର ସ୍ୱାମୀଙ୍କର ରଚିତ ବହୁ ପ୍ରସିଦ୍ଧ ଗ୍ରନ୍ଥମାନ ଦେଖିବାକୁ ମିଳେ । ତାଙ୍କ ରଚିତ ଶ୍ରୀମଦ୍‌ଭଗବତ୍ ଗୀତାର 'ସୁବୋଧିନୀ' ଟୀକା ପୃଥିବୀ ବିଖ୍ୟାତ । ଶ୍ରୀମଦ୍‌ଭଗବତ ଗୀତା ପୃଥିବୀର ବହୁ ଭାଷାରେ ଅନୂଦିତ ହୋଇଅଛି । ଗୀତାର ଶଙ୍କରଭାଷ୍ୟ, ରାମାନୁଜ ଭାଷ୍ୟ, ଇତ୍ୟାଦି ବହୁ ପ୍ରାଚୀନ ଟୀକାମାନ ଥିଲେ ହେଁ ଶ୍ରୀଧରଙ୍କ ଟୀକା ବିଶେଷ ଆଦୃତ ଓ ଜନପ୍ରିୟ । ତାଙ୍କର ଶ୍ରୀମଦ୍ ଭାଗବତର ଟୀକା ଭାବାର୍ଥ ଦୀପିକା ପାଠ କରି ଶ୍ରୀ ଚୈତନ୍ୟଦେବ ତାଙ୍କୁ ଗୁରୁ ରୂପେ ସ୍ୱୀକାର କରିଥିଲେ ।

"ଶ୍ରୀଧର ସ୍ୱାମୀ ଆନୁଗତ୍ୟେ ଯେ କରେ ଲିଖନ
ସର୍ବଲୋକ ମାନ୍ୟ କରି କରିବେ ଗ୍ରହନ୍ ।"
(ଚୈତନ୍ୟ ଚରିତାମୃତ, ଅନ୍ତ୍ୟଲୀଳା, ୭ମ ଅଧ୍ୟାୟ)

ଶ୍ରୀଧର ସ୍ୱାମୀ ରଚିତ ବିଷ୍ଣୁ ପୁରାଣର ଟୀକା "ଆତ୍ମପ୍ରକାଶ" ମଧ ସୁପ୍ରସିଦ୍ଧ । ବେଲୁଡ୍ ମଠର ରାମକୃଷ୍ଣ ଧର୍ମଚକ୍ରର ସୁବିଖ୍ୟାତ ଲେଖକ ସ୍ୱାମୀ ଜଗଦୀଶ୍ୱରାନନ୍ଦ - ଲେଖିଛନ୍ତି :

ଗୀତାର ବହୁ ଭାଷ୍ୟ ଓ ଟୀକା ଅଧ୍ୟୟନାନ୍ତେ ନିଃଶଂସୟ ବୁଝିୟାଛି ଶ୍ରୀଧର ସ୍ୱାମୀ କୃତ ସୁବୋଧିନୀ ଟୀକାଇ ସର୍ବାପେକ୍ଷା ସଂକ୍ଷିପ୍ତ, ସରଳ ଓ ସାରଗର୍ଭ ଏବଂ ଅଧିକାଂଶ ପାଠକ ପାଠିକାର ପକ୍ଷେ ଅତିଶୟ ଉପଯୋଗୀ । ଆଚାର୍ଯ୍ୟ ଶ୍ରୀଧର ସ୍ୱାମୀ ସ୍ୱୟଂ ସତ୍ୟଇ ବଲିୟାଛେନ, ପାଠ ମାତ୍ରେ ପ୍ରଯତ୍ନେଇ ଏଇ ଟୀକାର ଅର୍ଥ ବୁଝାଯାଏ । ସୁବୋଧିନୀ ଟୀକା ଏକଟି ଅନନ୍ୟ ବୈଶିଷ୍ଟ୍ୟ ଜ୍ଞାନ ଓ ଭକ୍ତିର ଅଭିନବ ସମନ୍ୱୟ ସାଧନ । ଏଇ ହେତୁ ମହାପ୍ରଭୁ ଚୈତନ୍ୟ ଦେବ ଏହାର ଭୂୟସୀ ପ୍ରଶଂସା କରିଲେନ ଏବଂ ଭକ୍ତ ଓ ଜ୍ଞାନୀ ଉଭୟେ ଉକ୍ତ ଟୀକା ପାଠେ ଅନୁରକ୍ତ ।

X X X X X

ଆଚାର୍ଯ୍ୟ ଶ୍ରୀଧର ଶ୍ରୀମଦ୍‌ଭଗବତ୍ ଗୀତା, ଶ୍ରୀମଦ୍‌ଭାଗବତ ଓ ବିଷ୍ଣୁ ପୁରାଣରେ ଚିରଞ୍ଜିବୀ ଟୀକାକାର । ତଦ୍‌କୃତ ଟୀକାତ୍ରୟ ନିଖିଳ ଭାରତେ ସମାଦୃତ ଓ ସୁପଠିତ ।

"ଏହା ଭକ୍ତିମୂଳକ ଓ ସହଜବୋଧ୍ୟ ବଲିୟା ଭାରତେ ସମାଧିକ ସମାଦର ପାଇତେଛେ"।

ପୁରୀ ଗୋବର୍ଦ୍ଧନ ମଠର (ଶଙ୍କର ପୀଠ) ଅମ୍ନାୟରୁ ଜଣାଯାଏ ଯେ ଶ୍ରୀଧର ସ୍ୱାମୀ ସେହି ମଠର ଗୋସ୍ୱାମୀ ରାମକୃଷ୍ଣାନନ୍ଦଙ୍କର ଶିଷ୍ୟ ଥିଲେ । ତତ୍‌କାଳୀନ ଓଡ଼ିଶାର ଗଜପତି ମହାରାଜ ପ୍ରତାପ ଭାନୁଦେବ ଢେଙ୍କାନାଳସ୍ଥିତ କପିଳାସ ଶିଖରେଶ୍ୱରମନ୍ଦିରର ତତ୍ତ୍ୱାବଧାରକ ରୂପେ ସେଠାକୁ ରାମକୃଷ୍ଣା ନନ୍ଦ ଗୋସ୍ୱାମୀଙ୍କୁ ପ୍ରେରଣ କରିଥିଲେ । ସେ କପିଳାସରେ ଦଣ୍ଡୀସ୍ୱାମୀ ବା ବ୍ରହ୍ମଚାରୀ ମଠ ସ୍ଥାପନକରି, ସେଠାରେ ଅବସ୍ଥାନପୂର୍ବକ ଶିଖରେଶ୍ୱରଙ୍କ ସେବା ପୂଜା ନିୟନ୍ତ୍ରଣ କରୁଥିଲେ । ତାଙ୍କ ଅନ୍ତେ ତାଙ୍କ ଶିଷ୍ୟ ଶ୍ରୀଧର ସ୍ୱାମୀ ଏହି ମଠରେ ରହି ଶମ୍ଭୁକ୍ଷେତ୍ର କପିଳାସରେ ତତ୍ତ୍ୱାବଧାରକ ହେଲେ । ସେ ସେଠାରେ ଶ୍ରୀ ଚନ୍ଦ୍ରଶେଖର ଓ ଶ୍ରୀ ନୃସିଂହଙ୍କ ଉପାସନା ଓ କୋଠର ତପଶ୍ଚର୍ଯ୍ୟା କରି ସିଦ୍ଧିଲାଭ କରିଥିଲେ ।

ଉତ୍କଳର ଉଚ୍ଚତମ ପର୍ବତମାନଙ୍କ ମଧ୍ୟରେ କପିଳାସ ଅନ୍ୟତମ । ଏହାର ଉଚ୍ଚତା ସମୁଦ୍ର ପତ୍ତନଠାରୁ ୨୩୦୦ ଫୁଟ୍ । ଢେଙ୍କାନାଳ ସହରଠାରୁ ପୂର୍ବ ଦିଗରେ ଗୋଟିଏ ପକ୍‌କା ସଡ଼କ ଅଛି ଯାହା ବ୍ରାହ୍ମଣୀ ନଦୀକୂଳ ମନ୍ଦାର ଗ୍ରାମ ପର୍ଯ୍ୟନ୍ତ ଯାଇଛି । ଏହି ସଡ଼କ ପଥରେ ଢେଙ୍କାନାଳ ଗଡ଼ ଠାରୁ ପ୍ରାୟ ୨୦ କିଲୋମିଟର ଅତିକ୍ରମ କଲେ କପିଳାସ ପର୍ବତର ପାଦଦେଶରେ ପହଞ୍ଚିବାକୁ ହୁଏ । ପର୍ବତ ଉପରକୁ ଆରୋହଣ ପାଇଁ ଦୁଇଗୋଟି ପଥ ଅଛି । ଅତି ପୁରାତନ ବନ୍ଧୁର ପଥଟି ଏବେ ପକ୍‌କା ପାବଚ୍ଛ ଦ୍ୱାରା ନୂତନ ଭାବରେ ସଜିତ ହୋଇଥିବାରୁ ଗମନାଗମନ ପାଇଁ ସୁଗମ ହୋଇଅଛି । ଅନ୍ୟ ପଥଟି ମଟର ଗାଡ଼ି ରାସ୍ତା । ଏହା ପର୍ବତ ଆରୋହ କରୁଥିବାରୁ ପ୍ରାକୃତିକ ବିଶିଷ୍ଟ ବକ୍ର ।

ଏହି ପର୍ବତ ପୀଠର ଫଟା ଲିଙ୍ଗ ବହୁକାଳରୁ କେତେକ ଘର ଆଦିମ ସେବକଙ୍କ ଦ୍ୱାରା ପୂଜା ପାଇ ଆସୁଥିଲେ । ଘୋର ଅଗମ୍ୟ ବନରେ ପର୍ବତ କନ୍ଦରରେ ରହି ଥିବାରୁ ଲୋକଲୋଚନ ଆଗୋଚରରେ ଥିଲେ । ସେହି ସମୟରେ ପୁରୀର ଯୁବରାଜ ଅନଙ୍ଗଭୀମଦେବ ଦୁର୍ଭାଗ୍ୟବଶତଃ ଗୋଟିଏ ଷଣ୍ଢ-ହତ୍ୟା ପାତକରେ ଦୋଷୀ ହେଲେ । ତାଙ୍କୁ ଜଗନ୍ନାଥ ଦେବଙ୍କର ସ୍ୱପ୍ନାଦେଶ ହେଲା ଯେ ସେ ଶିବଙ୍କର ଦ୍ରୋହୀ ହୋଇଥିବାରୁ ଓଡ଼ିଶାର ଶ୍ରେଷ୍ଠ ଶିବକ୍ଷେତ୍ର କପିଳାସ ଯାଇ କୃଚ୍ଛ୍ର ସାଧନା କରି ଶିବଙ୍କୁ ସନ୍ତୁଷ୍ଟ କଲେ, ତାଙ୍କର ଏ ପାପରୁ ମୁକ୍ତିଲାଭ ହୋଇପାରିବ । ଏହି ଉଦ୍ଦେଶ୍ୟରେ ଯୁବରାଜ ଅନଙ୍ଗଭୀମ ସଦଳବଳେ ଯାଇ, ବହୁ ଆୟାସକ୍ରମେ ଫୁଟା ଲିଙ୍ଗ ଶିଖରେଶ୍ୱରଙ୍କର ଅନୁସନ୍ଧାନ କରି, ସେଠାରେ କିଛିଦିନ ରହି, ଯାଗ, ଯଜ୍ଞ, ତପଶ୍ଚର୍ଯ୍ୟା ପୂର୍ବକ ଶିବଙ୍କୁ ସନ୍ତୁଷ୍ଟ କରି ପାପରୁ ମୁକ୍ତି ଲାଭ କରିଥିଲେ । ସେ ଓଡ଼ିଶାର ରାଜା ହେବାପରେ, ବହୁ ବାର ତାଙ୍କ ରାଜ୍ୟର ସୀମା "ଭୀମ ନଗରୀ ଦଣ୍ଡପାଟ" (ବ୍ରାହ୍ମଣୀ ନଦୀ କୂଳରେ ଥିବା ଆଜି କାଲିକାର ନାଧରା ଗ୍ରାମ, ଯେଉଁ ଠାରେ ରାମଚଣ୍ଡୀ ଠାକୁରାଣୀଙ୍କର ମନ୍ଦିର ଅବସ୍ଥିତ) ଓ ବ୍ରାହ୍ମଣୀ ନଦୀ କୂଳରେ ଥିବା ଆଉ ଗୋଟିଏ ଗ୍ରାମ ଭୀମପୁର (ଢେଙ୍କାନାଳ ଗଡ଼ରୁ ୧୨ କିଲୋମିଟର ଦୂରରେ ଥିବା ଆଜିକାଲିର ଭୁଇଁପୁର ଗ୍ରାମ) କୁ ଆସିବା

ସମୟରେ କପିଳାସ ଶିଖରେଶ୍ୱରଙ୍କୁ ଦର୍ଶନ କରି ଆସୁଥିଲେ । ଏହି ବଂଶର ଜଣେ ପରବର୍ତ୍ତୀ ନରପତି ଲାଙ୍ଗୁଲା ନରସିଂହ ଦେବ ହେଉଛନ୍ତି ପ୍ରସିଦ୍ଧ କୋଣାର୍କ ମନ୍ଦିରର ନିର୍ମାତା । ସେହି ବଂଶର ଆଉ ଜଣେ ନରସିଂହ ଦେବ କପିଳାସ ମନ୍ଦିର ନିର୍ମାଣ କରାଇଥିଲେ । ଏହା କପିଳାସ ଶିଳାଲିପିରୁ ଜଣାଯାଏ । ଏହି ଶିଳାଲିପିର ସମୟ ଶ୍ରୀ ସତ୍ୟନାରାୟଣ ରାଜଗୁରୁଙ୍କ ମତରେ ଖ୍ରୀ ୧୨୫୨-୧୨୫୩ । ଓଡ଼ିଶା ଗେଜେଟିଅର (ଢେଙ୍କାନାଳ) -ପୃଷ୍ଠା ୪୩୨-୪୩୬ ଓ ଅନ୍ୟ କେତେକ ଐତିହାସିକଙ୍କ ମତରେ ଶିଳାଲିପିର ସମୟ ତୃତୀୟ ନରସିଂହଦେବଙ୍କ ରାଜତ୍ୱକାଳରେ । ହଣ୍ଟର ସାହେବଙ୍କ ମତରେ ଏହି ନରସିଂହଦେବଙ୍କ ରାଜତ୍ୱକାଳ ଖ୍ରୀ ୧୩୦୭-୧୩୨୭ । ଶ୍ରୀ କେଦାରନାଥ ମହାପାତ୍ରଙ୍କର ମତରେ ଏହି ମନ୍ଦିରର ନିର୍ମାତା ହେଉଛନ୍ତି କୋଣାର୍କ ମନ୍ଦିର ନିର୍ମାତା ନରସିଂହଦେବ (୧) ଏବଂ ତାଙ୍କ ରାଜତ୍ୱ କାଳ ୧୨୩୬ ରୁ ୧୨୬୪ ଖ୍ରୀଷ୍ଟାବ୍ଦ । (The Jagannath Temple in eastern India - 1977)

ପ୍ରସିଦ୍ଧ ଇଉରୋପୀୟ ଗବେଷକ - Dr. Farguhar ତାଙ୍କର "An outline of Religious Literature of India" ନାମକ ପୁସ୍ତକରେ (୧୯୨୦) ଶ୍ରୀଧର ସ୍ୱାମୀଙ୍କ ସମ୍ବନ୍ଧରେ ଓ ତାଙ୍କ ଜୀବନକାଳ ବିଷୟରେ ଲେଖିଛନ୍ତି -

Probably about A.D 1400 Sridhara Swami, Mahant of the Sankarite Mouastry Govardhana, in Puri Wrote a Commentary on the Bhagabata Purana, The Bhagabata Bhavartha Dipika, which is by far the most famous expoition of the work. He was clearly an excellant scholar and must have access to a very trust worthy tradition. He begines his commentary with the distinct statement that the great Purana was not written by vopadeva. The fact that this theory was already current proves that Sridhara wrote at a time considerably later than A.D. 1300, when Vopadeva flourished. As the commentary was well known everywhereby the end of the fifteenth Century, Sridhara's floruit may resonably be placed about 1400 A.D. His interpretation of the Purana is Advaitist, Since he was a follower of Sankara and since the Bhagavata itself tens to be mouist, his Dipika is usually regarded as most authoritative (P247)

କପିଳାସ ଗୋଟିଏ ଅତି ରମ୍ୟ ଓ ପବିତ୍ର ସ୍ଥଳ । ଧ୍ୟାନ, ଯୋଗ, ତପସ୍ୟା କରିବାର ଆଦର୍ଶ ସ୍ଥାନ । ଏହି ଠାରେ ହିଁ ଶ୍ରୀଧର ସ୍ୱାମୀ ତାଙ୍କର ବିଖ୍ୟାତ ଟୀକାମାନ ପ୍ରଣୟନ କରିଥିଲେ ।

"ଗାଠେସ୍ୟା ଶିଷ୍ୟୋ ଗୁରୁ ତଦାଶ ବର୍ଦ୍ଧନେ

କଳ୍ପନା । ତାହାର ଐତିହାସିକ ସତ୍ୟ ଏହିପରି ଦୈତ୍ୟ ବା ଦ୍ରାବିଡ଼୍‌ପତି ହିରଣ୍ୟ କଶ୍ୟପଙ୍କର ସାନ ଭାଇଙ୍କୁ ଦେବଗଣମାନେ ମାରିଦେଇଥିଲେ । ସେତେବେଳେ ଦୈତ୍ୟ ବା ଦ୍ରାବିଡ଼୍ ବା ଦକ୍ଷିଣାତ୍ୟରେ ଥିବା ଉନ୍ନତ ଅଧିବାସୀ ଓ ଦେବଗଣ ବା ଉତ୍ତର ଭାରତ ଆର୍ଯ୍ୟମାନଙ୍କ ମଧ୍ୟରେ ରାଜ୍ୟ ପାଇଁ ପ୍ରଭୁତ୍ୱ ପାଇଁ ତୀବ୍ର ପ୍ରତିଯୋଗିତା ଥିଲା ସବୁବେଳେ । ଯୁଦ୍ଧବିଗ୍ରହାଦି ହେଉଥିଲା । ଦ୍ରାବିଡ଼ପତି ହିରଣ୍ୟଙ୍କର ଆତ୍ମରକ୍ଷା ପାଇଁ ପୋଷା ସିଂହଥିଲା । ସେ ହିରଣ୍ୟ କଶ୍ୟପ ତାଙ୍କ ରାଜ୍ୟରେ ସୁଶାସକ ଥିଲେ । ସାନଭାଇଙ୍କ ମୃତ୍ୟୁପରେ ଏକଛତ୍ର ଏକାଧିପତ୍ୟ ଯୋଗୁ ଅସୀମ କ୍ଷମତା ଓ ଭୋଗର ଅଧିକାରୀ ଥିଲେ । ଉଚ୍ଚନୀଚ ଭେଦବର୍ଜିତ ସାମ୍ୟ ଭାବର ପ୍ରବର୍ତ୍ତକ ହୋଇଥିବାରୁ ଭୀଷଣ ଅହଂକାରୀ ଏବଂ ସର୍ବଦା ଭୋଗ ପ୍ରତୀକ ଉତ୍କୃଷ୍ଟ ମଦିରାସକ୍ତ ଥିଲେ । ତାଙ୍କର ୪ ପୁତ୍ର ଥିଲେ । ପ୍ରଥମ ପୁତ୍ର ମାନେ ବିଳାସୀ ରାଜକୁମାର ଆଡ଼ମ୍ବର ପ୍ରିୟ ଥିଲେ । ରାଜା ତପସ୍ୟାରତ ଥିଲାବେଳେ ଜନ୍ମ ଯେଉଁ କନିଷ୍ଠ ପୁତ୍ର ପ୍ରହ୍ଲାଦ ଏହି ଭୋଗରେ ବୀତସ୍ପୃହ ଥିଲେ । ରାଜା ମଦ୍ୟପ ଓ ଅହଂକାରୀ ଥିଲେ ସୁଦ୍ଧା ନିଜର ପୁତ୍ରମାନଙ୍କୁ ଉପଯୁକ୍ତ ଶିକ୍ଷା ବିଶେଷତଃ ରାଜନୀତିରେ ଉପଯୁକ୍ତ ଶିକ୍ଷିତ କରିବା ପାଇଁ ସେ ଯୁଗର ବ୍ୟବସ୍ଥା ଅନୁସାରେ ଗୁରୁଙ୍କ ଗୃହରେ ପୁତ୍ରମାନଙ୍କୁ ରଖାଇଥିଲେ । ଆଶା ତାଙ୍କର ଥିଲା ୪ ପୁତ୍ରଙ୍କ ମଧ୍ୟରୁ ଯେ ଯୋଗ୍ୟ ହେବ ସେ ତାଙ୍କର ଭବିଷ୍ୟତ ଏହି ଦ୍ରାବିଡ଼୍ ସାମ୍ରାଜ୍ୟର ଉତ୍ତରାଧିକାରୀ ହେବ । ପୁତ୍ରମାନଙ୍କର ବିଦ୍ୟାଶିକ୍ଷାର ସମସ୍ତ ଯୋଜନା ସେ କରିଥିଲେ । କିନ୍ତୁ କନିଷ୍ଠ ପୁତ୍ର ପ୍ରହ୍ଲାଦ ସରଳ ସତ୍ୟବାହୀ ନିରହଙ୍କାରୀ ସୌମ୍ୟ ଦର୍ଶନ ଏବଂ ଆଲୌକିକ ମେଧାବୀ ପ୍ରତିଭା ମଣ୍ଡିତ ଥିଲେ । ରାଜକୀୟ ଭୋଗ ଆଡ଼ମ୍ବର ଆଭିଜାତ୍ୟରେ ତାଙ୍କର ଶ୍ରଦ୍ଧା ନଥିଲା । ସେ ସରଳ ଜୀବନ ଯାପନ କରି ନିବିଷ୍ଟ ଚିତ୍ତରେ ଗୁରୁ ପ୍ରଦତ୍ତ ବିଦ୍ୟା ଶିକ୍ଷା କରୁଥିଲେ । ଶ୍ରୀମଦ୍ ଭାଗବତ ସପ୍ତମ ସ୍କନ୍ଧ ପ୍ରହ୍ଲାଦ ଉପାଖ୍ୟାନ ଦେଖନ୍ତୁ । ଗୁରୁଦତ୍ତ ରାଜନୀତି ସାମଦାନ ଭେଦ ଦଣ୍ଡ ପ୍ରଭୃତି ବିଚାରକୁ ତାଙ୍କର ପସନ୍ଦ ନଥିଲା ।

ତାଙ୍କର ଅନ୍ତରରେ ସର୍ବଦା ସର୍ବଘଟ ବା ଜୀବଜଗତ୍ ଅଣୁପରମାଣୁରେ ଈଶ୍ୱର ସତ୍ତା ବିଦ୍ୟମାନ ଏହି ଗୂଢ଼ ରହସ୍ୟ ପରମ ସତ୍ୟ ଦୃଢ଼ୀଭୂତ ହୋଇଥିଲା । ଶ୍ରୀଜଗନ୍ନାଥ ଦାସଙ୍କ ଭାଷାରେ ସକଳ ଘଟେ ନାରାୟଣ – ବସନ୍ତି ଅନାଦି କାରଣ ପଂକ୍ତିର ଅନୁଭବ ହୋଇଥିଲା ।

ପିତା ରାଜକାର୍ଯ୍ୟ ଓ ଭୋଗରେ ବ୍ୟସ୍ତ ଥିଲେ ସୁଦ୍ଧା ପୁତ୍ରମାନଙ୍କର ବିଦ୍ୟା ଶିକ୍ଷାର ତତ୍ତ୍ୱ ନେଉଥିଲେ ବିଶେଷତଃ ପ୍ରହ୍ଲାଦ ତାଙ୍କର କନିଷ୍ଠ ପୁତ୍ର ଓ ଅଧିକ ସୁନ୍ଦର ଏବଂ ସ୍ମରଣ ଶକ୍ତିବାନ ଥିବାରୁ ରାଜା ତାଙ୍କୁ ଅଧିକ ସ୍ନେହ କରୁଥିଲେ ।

ଦିନେ ପ୍ରହ୍ଲାଦଙ୍କୁ କୋଳରେ ରାଜା ବସାଇ ଶୈଶବ ଉଚିତ ପ୍ରଲୋଭନ ପ୍ରଦାନାନ୍ତର ସସ୍ନେହରେ କୁଶଳ ପଚାରି ଗୁରୁ ପ୍ରଦତ୍ତ ବିଦ୍ୟା ସମୀକ୍ଷା କରିଥିଲେ ।

ପ୍ରହ୍ଲାଦ ଗୁରୁ ଅଦେୟ ଈଶ୍ୱର ରୂପୀ ସତ୍ୟରେ ବିଶ୍ୱାସ ଭୌତିକ ନିରର୍ଥକ ଇନ୍ଦ୍ରିୟ ଭୋଗ ପ୍ରଭୃତିର ଅସାରତା ପ୍ରମାଣସିଦ୍ଧ ଉତ୍ତର ଦେବାକୁ ସ୍ନେହ ପୁତ୍ର ପ୍ରହ୍ଲାଦର ଏ ବିପରୀତ ବୁଦ୍ଧିକୁ ରାଜା ପସନ୍ଦ କରିନଥିଲେ । ଗୁରୁଙ୍କୁ ଭକ୍ତି ପୁତ୍ରକୁ ତାଡ଼ନା ଓ ଭୟ ପ୍ରଦର୍ଶନ ଯୋଗେ ବାଳ ସୁଲଭ ଚପଳ ମତିର ପରିବର୍ତ୍ତନ କରାଇ ବୁଦ୍ଧି ଓ ମନ ରାଜଧର୍ମୀ ହେବାକୁ ଆଦେଶ ଦେଇଥିଲେ । କିନ୍ତୁ ଗୁରୁଙ୍କର ଶତଚେଷ୍ଟା ସତ୍ତ୍ୱେ ଦୃଢ଼ମନା ପ୍ରହ୍ଲାଦଙ୍କର ପୂର୍ବଭାବ କିଛି ପରିବର୍ତ୍ତନ ହୋଇ ନଥିଲା ପରନ୍ତୁ ତାହା ଅଧିକ ଦୃଷ୍ଟିଗୋଚର ହୋଇଥିଲା । ପୁରାଣକାର ରସକୁ ଅଧିକ ଆକର୍ଷଣୀୟ ଓ ଲୋକପ୍ରିୟ ପାଇଁ ପ୍ରହ୍ଲାଦଙ୍କ ଉପରେ ଗୁରୁଙ୍କୁ ତାଡ଼ନା ଓ ରାଜାଜ୍ଞାରେ ପରିଜନମାନଙ୍କ ଅତ୍ୟାଚାର ବର୍ଣ୍ଣନ କରିଛନ୍ତି । ଶ୍ରୀମଦ୍ ଭାଗବତ ୭ମ ସ୍କନ୍ଧପ୍ରହ୍ଲାଦ ଉପାଖ୍ୟାନ ଦେଖନ୍ତୁ । ସଙ୍ଗୀ ବାଳକମାନଙ୍କୁ ପ୍ରହ୍ଲାଦଙ୍କର ନୀତି ଉପଦେଶ ଅଧ୍ୟାୟ ପ୍ରହ୍ଲାଦଙ୍କୁ ଆଲୌକିକ ପ୍ରତିଭା ମଣ୍ଡିତର ପରିଚୟ ଦିଏ । ସେ ଜାତସ୍ମର ଥିଲେ । ଏପରିକି ଭକ୍ତି ପ୍ରଧାନ ଭାଗବତ ଗ୍ରନ୍ଥରେ ପ୍ରହ୍ଲାଦ ସର୍ବଶ୍ରେଷ୍ଠ ରତ୍ନ ତାଙ୍କର ଦ୍ୱିତୀୟ ତୁଳନା ନାହିଁ । ପ୍ରହ୍ଲାଦ ଜନ୍ମ ହୋଇଥିବା ଏ ଦେଶ ଏ ଜାତି ଧନ୍ୟ ।

କିଛି ଦିନ ପରେ ପୁଣି ରାଜା ପୂର୍ବପରି ସୁଅବସରେ ପ୍ରିୟ ପୁତ୍ର ପ୍ରହ୍ଲାଦଙ୍କୁ କୋଳରେ ଧରି ବିଦ୍ୟାଶିକ୍ଷା (ବିଶେଷତଃ ରାଜନୀତି)ରେ କେତେ ଅଭିଜ୍ଞ ହୋଇଲାଣି ଜିଜ୍ଞାସା କରିବାରୁ ପୂର୍ବ ପରି ପ୍ରହ୍ଲାଦ ତାଙ୍କର ଈଶ୍ୱର ରୂପୀ ସତ୍ୟର ଶ୍ରେଷ୍ଠତା ପ୍ରକାଶ କଲେ । ରାଜା ସହଜେ ମଦ୍ୟପ ୨ ରେ ଅସୁରୀ କ୍ଷମତା ସଂପନ୍ନ ତତ୍‌କ୍ଷଣାତ୍ ନିଜ କୋଷାଚ୍ଛାଦିତ କରବାଳ ନିଃସ୍କାସନ କରି ପ୍ରହ୍ଲାଦଙ୍କୁ ହତ୍ୟା କରିବାର ଅଭିନୟ ଦେଖାଇଲେ । ଧାରଣା ମୃତ୍ୟୁ ଭୟରେ ପୁତ୍ର ଚିତ୍ ବିପଥ ପରିତ୍ୟାଗ କରି ମୋ ଚିତ୍ତ ପ୍ରଦର୍ଶିତ ପନ୍ଥା ଅନୁସରଣ କରିବ । ପ୍ରହ୍ଲାଦଙ୍କୁ କୋଳରୁ ବାହାର କରି ଦେଇଥିଲେ । ଏହି ଭୟାବହ ଘଟଣା ଅପଲକ ନୟନରେ ତାଙ୍କ ପୋଷା ସିଂହ ଯେ କି ରାଜାଙ୍କ ସମୀପରେ ସବୁବେଳେ ଥାଇ ଦେଖୁଥିଲା । ଦେଖି ଦେଖି ସିଂହ ପଶୁ ହେଲେହେଁ ତାର ଧାରଣା ଆସିଲା ରାଜା ଅତ୍ୟଧିକ ମଦ୍ୟପାନ କରି ଉନ୍ମତ୍ତ ହୋଇ ନିଜର ପ୍ରିୟ ପୁତ୍ରକୁ ମାରିଦେବେ । ତତ୍‌କ୍ଷଣାତ୍ କ୍ରୋଧୋନ୍ମତ୍ତ ସିଂହ ରାଜାଙ୍କ ଉପରେ ଲମ୍ଫ ଦେଇ ତାଙ୍କୁ ବିଦାରଣ କରି ବଧ କରିଥିଲେ ଏବଂ ରାଜା ପୁରୀର ବହୁଲୋକମାନଙ୍କୁ ବିନାଶ କରି କୋଳାହଳ ମଧ୍ୟରେ ପଳାୟନ କରିଥିଲେ ।

ଏହି ଅଲୌକିକ ଆକସ୍ମିକ ଘଟଣାକୁ କାବ୍ୟକାର ନୃସିଂହ ଅବତାର ରୂପରେ ଚିତ୍ର କରିଛନ୍ତି ।

ପୁଣି ତୁଳନା ଦେଲେ ଏ ଯୁଗରେ ୨ୟ ମହାଯୁଦ୍ଧ ବେଳେ ଆବିସିନିଆ ସମ୍ରାଟ ଇଟାଲୀ ଶକ୍ତିଙ୍କ ଠାରୁ ହାରି ଇଂଲଣ୍ଡରେ ଶରଣ ପଶିଲା ବେଳେ ସାଥିରେ କେତେ ଗୋଟି ପୋଷା ସିଂହ ନେଇଯାଇଥିଲେ । ନିଜର ଆତ୍ମରକ୍ଷା ପାଇଁ

ପ୍ରଜାମାନଙ୍କୁ ଭୟଭୀତ କରିବା ପାଇଁ ପୂର୍ବକାଳରେ ଶାସକ ନିଜ ପାଖରେ ପୋଷା ସିଂହ ରଖୁଥିଲେ ।

ପ୍ରହ୍ଲାଦ ଉପାଖ୍ୟାନ ଦେଖନ୍ତୁ । ଉନ୍ମତ୍ତ ସିଂହଙ୍କୁ କେହି ରୋକି ପାରିନଥିଲେ । ନୃସିଂହ ପ୍ରହ୍ଲାଦଙ୍କୁ ଅଭୟ ଦେଲେ । ନୃସିଂହ ପ୍ରହ୍ଲାଦଙ୍କ ନିକଟରେ ଆଶ୍ରୟ ଦାତା ପିତାତୁଲ୍ୟ କୋମଳ ଓ ଶାନ୍ତ ରୂପ ଥିଲେ । ଲକ୍ଷ୍ମୀ (ରାଜ ସଂପଦ ପିତୃ ସିଂହସନ ଆଦି) ମାତୃ ରୂପରେ ବର ଦାୟିନୀ ହେଲେ । ପରେ ବ୍ରହ୍ମାଦି ତ୍ରିଲୋକବାସୀଙ୍କ ସ୍ତୁତି ଦେଖାଯାଏ । ଅର୍ଥାତ୍ ଏହି ପରିବର୍ତ୍ତନକୁ ତ୍ରିଭୁବନ ବା ସେ କାଳରେ ସମାଜ ଅନୁମୋଦନ କରିଥିଲେ । ବ୍ରହ୍ମା ପ୍ରଭୃତି ଦେବଗଣ ଓ ସିଦ୍ଧ ନାଗ ଚରଣାଦି ବହୁଜନ ନେତାଙ୍କର ସ୍ତୁତି ଦେଖାଯାଏ ମାତ୍ର ଦୈତ୍ୟ ସୈନ୍ୟଙ୍କର ଚିହ୍ନ ନାହିଁ, ସବୁ ବିନାଶ ହୋଇଥିଲେ ।

ସିଂହ ପଶୁ ହେଲେ ହେଁ ତାର ହୃଦୟ ଅଛି ବିଖ୍ୟାତ ଆନ୍ଦ୍ରେକ୍ଲିସ୍ ଓ ସିଂହ ଉପଖ୍ୟାନ ର ଉପମା ଦେଲେ ।

କହିଲେ ଶ୍ରୀଧର ସ୍ୱାମୀଙ୍କର ଭାବନା ସେ ସ୍ମରଣକାରୀ ଭକ୍ତ ଯଥା ପ୍ରହ୍ଲାଦ ସ୍ମରଣେ ଶ୍ରୀମଦ୍ ଭାଗବତ ପ୍ରଥମ ଶ୍ଳୋକର ଟୀକାରେ ଶ୍ରୀଧର ଏପରି ଭାବରେ ଶ୍ରୀନୃସିଂହଙ୍କୁ ଚିନ୍ତା କରିଛନ୍ତି ।

ବାଗୀଶଶ୍ଳୋକ ଯସ୍ୟ ବଦନେ

ଲକ୍ଷ୍ମୀର୍ଯସ୍ୟ ଚବକ୍ଷସି

ଯସ୍ୟାସ୍ତେ ହୃଦୟେ ସମ୍ବିତ୍

ଓଁ ନୃସିଂହ ଅହଂ ଭଜେ (୧)

ଅର୍ଥାତ୍ ଯାହାର ମୁଖରେ ସରସ୍ୱତୀ ଯାହାର ବକ୍ଷ ସ୍ଥଳରେ ଲକ୍ଷ୍ମୀ ଯାହାର ହୃଦୟରେ ସତ୍ୟ ସେହି ପରମାତ୍ମା ଶ୍ରୀ ନୃସିଂହଙ୍କୁ ମୁଁ ଭଜନ କରୁଛି ।

XXX XXX XXX

ମଠରେ ପ୍ରଥମେ ମଠାଧୀଶଙ୍କର ଶିଷ୍ୟ ଭେଟ ହେଲେ । ମଠ ସବୁ ବୁଲାଇ ଦେଖାଇଲେ । ସଂଧ୍ୟାବେଳକୁ ମଠାଧୀଶ ଉଠିଲେ ଭେଟହେଲା । ବାକ୍ୟାଳାପ ହେଲା । ବିଶ୍ୱବିଦ୍ୟାଳୟର ଛାତ୍ର କେତେଜଣ ଭଡ଼ା ଦେଇ ରହୁଅଛନ୍ତି । ଶିଷ୍ୟ ଶ୍ରୀ ନୃସିଂହ ବିଗ୍ରହଙ୍କୁ ସନ୍ଧ୍ୟାରେ ଦେଖାଇଲେ ପିତଳ ମୂର୍ତ୍ତି ଚକ୍‌ଚକ୍ ଉଜ୍ଜ୍ୱଳ । ମଠାଧୀଶ ମଠର ଇତିବୃତ୍ତ କହିଲେ । ଏହି ମଠ ଆଦି ଶଙ୍କରଙ୍କ ଶିଷ୍ୟ ପଦ୍ମପାଦାଚାର୍ଯ୍ୟ ପ୍ରତିଷ୍ଠା କରିଥିଲେ । ତାଙ୍କର ଶିଷ୍ୟ କ୍ରମନ୍ୱୟରେ କେତେ ପୁରୁଷପରେ ଶ୍ରୀଧର ସ୍ୱାମୀ ଏହି ମଠରେ ମଠାଧୀଶ ହୋଇଥିଲେ । ଏଠାରେ ସେ ଶ୍ରୀମଦ୍ ଭାଗବତ ଗୀତା ପ୍ରଭୃତିର ଟୀକା କରିଥିଲେ । ସେ ନୃସିଂହ ବିଗ୍ରହଙ୍କୁ ଏଠାରେ ସ୍ଥାପନ କରିଥିଲେ ।

ମଠର ବହୁତ ସଂପତ୍ତି ଓ ପ୍ରତିପତ୍ତି ଥିଲା । ସବାରୀ ଚଉଡ଼ୋଳ ଦେଖାଇଲେ । ଏଥିରେ ବସି ଆଡ଼ମ୍ବରରେ ମହନ୍ତ ବା ମଠାଧୀଶ ଯାତ୍ରା କରୁଥିଲେ । ଦେଶ ସ୍ୱାଧୀନ ପରେ ଧୀରେ ଧୀରେ ସବୁ ଚାଲିଯାଉଛି । ଯାହା ଅଛି ଦେବୋତ୍ତର ବିଭାଗ ଏକାଳ ଶାସକ ସବୁ ସାରିଲେ । ଆମ୍ଭ ବର୍ତ୍ତମାନ ଦାସଦାସୀ ପୂଜକ ପାଚକ ଟହଲିଆ ମିଶି ୧୦ ପ୍ରାଣୀ ଶ୍ରୀ ଜଗନ୍ନାଥଙ୍କର ଧ୍ୟାନକରି ଯେନତେନ ପ୍ରକାରେ ବଞ୍ଚୁଛୁ । ନ୍ୟାୟଳୟରେ ଆଶ୍ରୟ ନେଇଛୁ ।

ପ୍ରଶ୍ନ କଲି ମହାଶୟ ଶ୍ରୀଧର ସ୍ୱାମୀଙ୍କ ପରି ସାଧକ ଓ ଭକ୍ତ କଅଣ ଏ ରାଜକୀୟ ସାମନ୍ତ ଆଡ଼ମ୍ବରରେ ରହି ତାଙ୍କର ସାଧନା ବା ଟୀକା ପ୍ରଣୟନ କରୁଥିଲେ ? ମଠର ମୂଳ ଆଦର୍ଶ ଯାହା ଥିଲା ତାହା କଅଣ ବର୍ତ୍ତମାନ ଅଛି କି ? ଦେବ ଦୟାଦାନ ମଧ୍ୟରୁ ଦେବ ଅଛନ୍ତି ମାତ୍ର । ସାମାନ୍ୟ ସଂସ୍କୃତ ବିଦ୍ୟାର୍ଥୀ (ପ୍ରାୟ ଗରିବ) ମାନଙ୍କ ଠାରୁ ଆପଣ ଛାତ୍ରବାସ ଆଳରେ ଭଡ଼ା ନେଉଅଛନ୍ତି । ଗମ୍ଭୀର ସ୍ୱରରେ ଉତ୍ତର ମିଳିଲା ମଠ ଚଳିବ କିପରି ?

କେତେ କବି ଲେଖକ ସମ୍ବାଦିକ ଆସୁଅଛନ୍ତି, ଏ ପର୍ଯ୍ୟନ୍ତ ଆମର କିଛି ହେଲେ ନାହିଁ । କହୁଛନ୍ତି ଆମ ପାଇଁ କିଛି ଲେଖିବେ କରିବେ, ଆମ ପୂର୍ବ ଗୌରବ ପ୍ରତିପତ୍ତି ଫେରିବ, କାହିଁ କିଛି ହେଉନି ।

ଅନୁମାନରୁ ଜାଣିଲି ମଠାଧୀଶ ସଂପୂର୍ଣ୍ଣ ରାଜନୀତିରେ ବ୍ୟସ୍ତ ଉତ୍କଳୀୟ ଭାବରେ ଫଳ କେବେ ମିଳିବ ତାଙ୍କୁ ଜଣା ।

ମନ ସନ୍ତୋଷ ହେଲାନି । ଏ ପର୍ଯ୍ୟନ୍ତ ୧ - ଜଗଦ୍‌ଗୁରୁ ଶ୍ରୀ ଶଙ୍କର , ୨ - ଶ୍ରୀ ରାମାନୁଜ, ୩- ଶ୍ରୀ ମାଧ୍ୱ , ୪- ଶ୍ରୀବଲ୍ଲଭ, ୫ - ଲୀଳାବତାର ଶ୍ରୀ ଚୈତନ୍ୟ ପ୍ରସିଦ୍ଧ ପଞ୍ଚାମୋଚାର୍ଯ୍ୟ ପରେ ଛଅ ସଂଖ୍ୟାରେ ଆଉ ଆଚାର୍ଯ୍ୟ ଜନ୍ମ ହୋଇନାହାନ୍ତି ।

ଶ୍ରୀ ଜଗନ୍ନାଥ କୃପାରୁ ନିଜ ଆବର୍ଜନା ଅଶ୍ରଦ୍ଧେୟ ପୁସ୍ତକାବଳୀ ମଧ୍ୟରୁ ରାୟ ବାହାଦୂର ୰ ଚିନ୍ତାମଣି ଆଚାର୍ଯ୍ୟଙ୍କର ଶ୍ରୀମଦ୍ ଭାଗବତ ୨ୟ ସ୍କନ୍ଧ ମୂଳ ଶ୍ଳୋକ ସହ ଶ୍ରୀଧର ସ୍ୱାମୀଙ୍କ ସୁବୋଧିନୀ ଟୀକା ତତ୍‌କୃତ (ଚିନ୍ତାମଣି କୃତ) ଉତ୍କଳାନୁବାଦ ଜଗନ୍ନାଥ ଦାସଙ୍କ ପଦ୍ୟ ରାଜ କିଶୋର ଦାସଙ୍କ ପଦ୍ୟ ସମ୍ବଳିତ ୧୯୪୩ ମସିହା ମୁଦ୍ରିତ ପୁସ୍ତକ ପାଇଲି । ବୋଧହୁଏ ପ୍ରଥମ ମୁଦ୍ରଣ ପରେ ୨ୟ ମୁଦ୍ରଣ ଆଉ ହୋଇନି । କିଏ କରିବ ? ଏ ଯୁଗରେ କିସ ପ୍ରୟୋଜନ ? ଯୋଗୀରାଜ ଅରବିନ୍ଦଙ୍କ ଭାଷାରେ ଶ୍ରୀକୃଷ୍ଣ ଲୌକିକ ସ୍ୱତନ୍ତ୍ରତା ଏ ଦେଶବାସୀଙ୍କୁ ଦେଇଛନ୍ତି ।

ଯେକୌଣସି ନ୍ୟାୟ ହେଉ ବା ଅନ୍ୟାୟ ଅସତ୍ ହେଉ ଅର୍ଥ ବଳରେ ନିଜର ଭୌତିକ ସୁଖ କ୍ଷଣିକ ପ୍ରତିଷ୍ଠା ପାଇଁ ସମସ୍ତେ ବ୍ୟଗ୍ର । ଜଗନ୍ନାଥ ଦାସଙ୍କ ନବାକ୍ଷରୀ ପଦ୍ୟ ପଢ଼ିପାରିବା ସ୍ୱହୃଦୟରେ ଥିବା ଲୋକେ ଏ ଯୁଗରେ ବିରଳ । ସେଗୁଡ଼ାକ

ପୁରାତନି । ସେହି ଆଚାର୍ଯ୍ୟ ଚିନ୍ତାମଣିଙ୍କ ପ୍ରଣୀତ ୨ୟ ସ୍କନ୍ଧରେ ଯାହା ଲିପିବଦ୍ଧ ଅଛି ତାହା ଅବିକଳ ନିମ୍ନରେ ପ୍ରଦତ୍ତ ହେଲା । ସେହି ସ୍ୱର୍ଗୀୟ ପ୍ରଥମ ଉତ୍କଳ ବିଶ୍ୱବିଦ୍ୟାଳୟ କୁଳପତି ଆଇନ୍‌ଜୀବୀଙ୍କ କୃତିରେ ଏ ଅଧମ ଲେଖକ ଚିରଋଣୀ।

ଶ୍ରୀ ବିଶିଷ୍ଟ ଦ୍ୱୈତ ବାଦୀ ଶ୍ରୀ ରାମାନୁଜାଚାର୍ଯ୍ୟ ଖ୍ରୀଷ୍ଟୀୟ ୧୦୧୬ଅବ୍ଦରେ ଜନ୍ମ ଗ୍ରହଣ କରିଥିଲେ । ସେ ୧୨୦ ବର୍ଷ ଜୀବିତ ଥିଲେ କୁହାଯାଏ । ସେ ଶ୍ରୀ ସଂମ୍ପ୍ରଦାୟର ପ୍ରବର୍ତ୍ତକ । ତାହାଙ୍କ ( ରାମାନୁଜ) ପ୍ରଣୀତ ବେଦାନ୍ତ ସାରତତ୍ତ୍ୱ ଗ୍ରନ୍ଥରେ ବହୁ ସ୍ଥାନରେ ସେ ଶ୍ରୀମଦ୍ ଭାଗବତରୁ ଉଦ୍ଧାର କରିଅଛନ୍ତି । ବେଦାର୍ଥ ସଂଗ୍ରହ ଗ୍ରନ୍ଥରେ ମଧ ସେ ସାତ୍ତ୍ୱିକ ତତ୍ତ୍ୱ ପ୍ରସଙ୍ଗରେ ଶ୍ରୀମଦ୍ ଭାଗବତର ଏକାଦଶ ସ୍କନ୍ଧରୁ ସ୍ଥଳବିଶେଷରେ ଉଲ୍ଲେଖ କରିଅଛନ୍ତି ।

ବୋପଦେବଙ୍କ ସମସାମୟିକ ହେମାଦ୍ରୀ ଶ୍ରୀଧର ସ୍ୱାମୀଙ୍କର ଭାଗବତ ଟୀକା ସ୍ଥଳ ବିଶେଷରେ ଉଲ୍ଲେଖ କରିଅଛନ୍ତି । ଶ୍ରୀଧର ସ୍ୱାମୀ ଉତ୍କଳର ପୂର୍ବ ଭାରତୀୟ ରାଜ୍ୟାନ୍ତର୍ଗତ ଢେଙ୍କାନାଳର ଇତିହାସରୁ ପ୍ରମାଣ ମିଳେ । ଉତ୍କଳ ହିମାଚଳ କପିଳାସ କନ୍ଦର ଯୋଗୀ ମୁନିମାନଙ୍କର ନିବାସର ଯଥାର୍ଥ ସ୍ଥାନ କହିଲେ ଅତ୍ୟୁକ୍ତି ହେବ ନାହିଁ । କଳିଯୁଗର ଶୁକଦେବ ଶ୍ରୀ ଶ୍ରୀଧର ସ୍ୱାମୀ ଏହି ପ୍ରାକୃତିକ ସୁଲଭ ରମଣୀୟ ପବିତ୍ର ଶିଖରରେ ଅବସ୍ଥାନକରି ଶ୍ରୀମଦ୍ ଭାଗବତର ଟୀକା ପ୍ରଣୟଣ କରିଥିବା ସମ୍ଭବ ।

ଶ୍ରୀଯୁକ୍ତ ଶ୍ରୀଧର ସ୍ୱାମୀ ନୀଳାଚଳ କ୍ଷେତ୍ରସ୍ଥ ଭୋଗ ବର୍ଦ୍ଧକ ପୀଠ (ଶଙ୍କରାଚାର୍ଯ୍ୟ ମଠ) ର ମହେଶ୍ୱରାନନ୍ଦ ସରସ୍ୱତୀଙ୍କର ପ୍ରଶିଷ୍ୟ ଏବଂ ରାମକୃଷ୍ଣ ଯତିଙ୍କର ଶିଷ୍ୟ । ଯତୀ ରାମକୃଷ୍ଣାନନ୍ଦ ସ୍ୱର ବିଜ୍ଞାନରେ ଅତ୍ୟନ୍ତ ପାଣ୍ଡିତ୍ୟ ଅର୍ଜନ କରିଥିଲେ । ତାହାଙ୍କର ବୈଦିକ ସାହିତ୍ୟରେ ଅଲୌକିକ ଜ୍ଞାନ ଏବଂ ସର୍ବ ଶାସ୍ତ୍ର ପାରଦର୍ଶିତା ସହିତ ଋଷି ଚରିତ୍ର ସଂଦର୍ଶନରେ ମୁଗ୍ଧ ହୋଇ ସେକାଳର ଗଜପତି ମହାରାଜ ପ୍ରତାପଭାନୁ ତାଙ୍କ ଉପରେ କପିଳାସ ମନ୍ଦିରର ସମସ୍ତ ସେବା ପୂଜାର ଭାର ଅର୍ପଣ କରିଥିଲେ । ତ୍ରୟୋଦଶ ଶତାବ୍ଦୀର ଶେଷପାଦରୁ ପ୍ରତାପ ନରସିଂହ ଦେବଙ୍କର ଦ୍ୱାରା କପିଳାସସ୍ଥ ଶିଖେରେଶ୍ୱର ମନ୍ଦିର ନିର୍ମାଣ ଓ ପୀଠ ପ୍ରତିଷ୍ଠା ହେଲା ଦିନୁ ଗଜପତି ମହାରାଜା ମାନଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ କପିଳାସର ସେବା ପୂଜା ଚଳି ଆସୁଥିଲା X **(Vide Kapillas Inscription Ja - S -B-)** ଯତି ରାମକୃଷ୍ଣ ସ୍ୱ ଶିଷ୍ୟ ଶ୍ରୀଧର ସ୍ୱାମୀଙ୍କୁ ସର୍ବଶାସ୍ତ୍ର ପାରଦର୍ଶୀ ଏବଂ ଅଦ୍ୱିତୀୟ ଗ୍ରନ୍ଥାକାର ଦେଖି କପିଳାସ ପୀଠର ସ୍ୱାଧିକାର ତାଙ୍କ ଉପରେ ଅର୍ପଣ କଲେ । ଶ୍ରୀଧରଙ୍କୁ କବିଜନ ବାଞ୍ଛିତ ଋଷି ଆଶ୍ରମ ମିଳିଲା । ବର୍ତ୍ତମାନ ମଣିକର୍ଣ୍ଣିକା ଓ ବିଶ୍ୱନାଥ ମନ୍ଦିରର ନିକଟବର୍ତ୍ତୀ ଯେଉଁ ପ୍ରାଚୀନ ମଠ କପିଳାସରେ ଦେଖାଯାଏ ତାହା ବ୍ରହ୍ମଚାରୀ ମଠ ନାମରେ ବିଖ୍ୟାତ । ଏହି ମଠର ବ୍ରାହ୍ମଣ ବ୍ରହ୍ମଚାରୀମାନେ ପୁରୀର ଶଂକରାନନ୍ଦ ମଠରେ ତତ୍ତ୍ୱାବଧାନରେ ଅଧିକାର ପ୍ରାପ୍ତ ହୁଅନ୍ତି ଏବଂ ଅଦ୍ୟାବଧି ବ୍ରାହ୍ମଚାରୀ ମଠର ଶାଖା ରୂପେ ପ୍ରସିଦ୍ଧ ।

ଯତି ଶ୍ରୀଧର ସ୍ୱଗୁରୁ କୁଳର ଇଷ୍ଟଦେବ ଶ୍ରୀଲକ୍ଷ୍ମୀ ନୃସିଂହ ବିଗ୍ରହଙ୍କୁ କାଞ୍ଚିରୁ ଆଣି ଲଳିତ ଶିଳ୍ପ କଳାମଣ୍ଡିତ ଶ୍ରୀ ପାର୍ବତୀ ମୂର୍ତ୍ତିର ପାର୍ଶ୍ୱରେ ଏକ ମନ୍ଦିର ମଧ୍ୟରେ ସ୍ଥାପନ କରି ତାଙ୍କ ସେବାରେ ଓ ପାର୍ବତୀ ଚନ୍ଦ୍ରଶେଖରଙ୍କ ଆରାଧନାରେ ଆତ୍ମନିୟୋଗ କଲେ । ଶିବକ୍ଷେତ୍ର ମଧ୍ୟରେ ନୃସିଂହ ମୂର୍ତ୍ତି ଅବସ୍ଥାନର ଏହା ହେତୁ ସେହି ଲକ୍ଷ୍ମୀ ନୃସିଂହଙ୍କର ଅନୁଗ୍ରହ ଫଳରେ ଓ ପାର୍ବତୀ ଚନ୍ଦ୍ରଶେଖରଙ୍କର ବର ଲାଭ କରି ଶ୍ରୀଧର ବିଷ୍ଣୁପୁରାଣ ଶ୍ରୀମଦ୍ ଭାଗବତ ଏବଂ ଶ୍ରୀମଦ୍ ଭାଗବତ୍ ଗୀତାଦିର ଟୀକା ରଚନା କରିଥିବାର ତାଙ୍କ ନିଜ ରଚିତ ଗ୍ରନ୍ଥରୁ ଆଭାସ ମିଳେ । (ଶ୍ରୀନୃସିଂହ ମହଂ ଭଜେ) ଇତ୍ୟାଦି ଭାଗବତର ଟୀକା ଦେଖନ୍ତୁ ।

ଏହି କଥା ଗୋବର୍ଦ୍ଧନ ପୀଠର ଗୁରୁ କ୍ରମାମ୍ନାୟ ଗ୍ରନ୍ଥରେ ଯେପରି ବର୍ଣ୍ଣିତ ଅଛି ତାହା ଅବିକଳ ଏଠାରେ ପ୍ରଦତ୍ତ ହେଲା । ଏହି ଗୁରୁ କ୍ରମାମ୍ନାୟ ଉତ୍କଳର ବରଣୀୟ ମନିଷୀ ଭୂତପୂର୍ବ ରେଭେନ୍‌ସା କଲେଜର ପ୍ରଫେସର ଏବଂ ପୁରୀ ସଂସ୍କୃତ କଲେଜର ନ୍ୟାୟ ଶାସ୍ତ୍ର ଅଧ୍ୟାପକ ମହାମହୋ ପାଧ୍ୟାୟ ପଣ୍ଡିତ ଶ୍ରୀ ଜଗନ୍ନାଥ ମିଶ୍ର ତର୍କ ସାଂଖ୍ୟ ନ୍ୟାୟତୀର୍ଥ ମହୋଦୟଙ୍କ ଦ୍ୱାରା ସଂକଳିତ ହୋଇଅଛି ।

ଉତ୍କଳ ଦେଶରେ ଏ ପର୍ଯ୍ୟନ୍ତ ବ୍ୟାସୋ ବେତ୍ତି ନବେତ୍ତିବା । ଶ୍ରୀଧରଂ ସକଳଂ ବେତ୍ତି ଏ ରୂପ ଯେ କିମ୍ବଦନ୍ତୀ ଚିରକାଳ ବିଦ୍ୱତ୍ ମଣ୍ଡଳୀରେ ପ୍ରସିଦ୍ଧି ଲାଭ କରିଅଛି ତାହା କପିଳାସବାସୀ ଶ୍ରୀ ଶିଖରେଶ୍ୱର ସ୍ୱପ୍ନାଦେଶରେ ଉଚ୍ଚାରଣ କରିଥିଲେ ବୋଲି ଶୁଣାଯାଏ । କ୍ରମାନ୍ୱୟର ଏହି ଅଂଶରେସଂକଳୟିତା ତାହାର ସୂଚନା କରିଅଛନ୍ତି । ଯତି ଶ୍ରୀଧର ଯେ ଲକ୍ଷ୍ମୀ ନୃସିଂହ ବିଗ୍ରହଙ୍କର ପ୍ରତିଷ୍ଠା କରାଇ ସେବା କରୁଥିଲେ ସେହି ମୂର୍ତ୍ତି ଏବେ ସୁଦ୍ଧା କପିଳାସ କ୍ଷେତ୍ରସ୍ଥ ପାର୍ବତୀ ମନ୍ଦିରରେ ଭକ୍ତମଣ୍ଡଳୀ ଦ୍ୱାରା ଆରାଧିତ ହୋଇ ଆସୁଅଛନ୍ତି । ପୁରୀର ଜଗନ୍ନାଥ ମନ୍ଦିରର ବେଢ଼ା ମଧ୍ୟରେ ଲକ୍ଷ୍ମୀଙ୍କ ମୋହନରେ ଯେ ଲକ୍ଷ୍ମୀ ନୃସିଂହ ବିଗ୍ରହ ବିରାଜିତ ଅଛନ୍ତି ସେହି ବିଗ୍ରହ ସହି କପିଳାସସ୍ଥ ବିଗ୍ରହଙ୍କର ସୌସାଦୃଶ୍ୟ ପରିଲକ୍ଷିତ ହୁଏ । ଏ ସମସ୍ତ କିମ୍ବଦନ୍ତୀ ଏବଂ ପ୍ରମାଣରୁ ଅନୁମିତ ହୁଏ ଯେ ଯେଉଁ ଦୁର୍ଲ୍ଲଭ ଗ୍ରନ୍ଥରାଜି ବର୍ତ୍ତମାନ ସଂସ୍କୃତ ସାହିତ୍ୟର ସୁଗୂଢ଼ ଶାସ୍ତ୍ରମାନଙ୍କର ମର୍ମୋଦ୍ଘାଟନ କରି ପଣ୍ଡିତମଣ୍ଡଳୀଙ୍କର ନିତ୍ୟ କଣ୍ଠହାର ହୋଇଅଛି ତାହା କପିଳାସ ତୀର୍ଥରେ ଜନ୍ମ ପରିଗ୍ରହ କରିଥିଲେ ।

X X X X X X

ପୂର୍ବ ଗଡ଼ଜାତ ସମୂହାନ୍ତର୍ଗତ ଢେଙ୍କାନାଳ ଗଜ୍ୟାଧୀଶ୍ୱର ଶ୍ରୀ ଶ୍ରୀ ରାଜାଶଙ୍କର ପ୍ରତାପ ସିଂହଦେବ ମହେନ୍ଦ୍ର ବାହାଦୂରଙ୍କ ଆନୁକୂଲ୍ୟରେ ସେହି ରାଜ୍ୟର ଇତିବୃତ୍ତ ସଂଗ୍ରାହକ ପଣ୍ଡିତ ଶ୍ରୀ ନଗେନ୍ଦ୍ର ନାଥ ମହାପାତ୍ର ବିଦ୍ୟାଳଙ୍କାରଙ୍କ ଠାରୁ ପ୍ରାପ୍ତ ।

ଶ୍ରୀଧର ସ୍ୱାମୀ ନବଧା ଭକ୍ତି ମଧ୍ୟରୁ ସ୍ମରଣକୁ ବାଛି ନେଇଥିଲେ । ତାଙ୍କର କର୍ମକ୍ଷେତ୍ର ପୁରୀ, କପିଳାସ, କାଞ୍ଚି ତିନି ସ୍ଥାନରେ ଆଭାସ ମିଳେ ।

ତତ୍‌କୃତ ଏହି ୨୮ ଶ୍ଳୋକ ଶ୍ରୀ ନୃସିଂହସ୍ତୁତି ମଧ୍ୟରେ ଶ୍ରୀଜଗନ୍ନାଥ ଶ୍ରୀ ଶଙ୍କରଙ୍କର ନାମ ବହୁବାର ଦେଖାଯାଏ ଏହାହିଁ ପ୍ରମାଣ ଅଟେ । ସେ ସନ୍ନ୍ୟାସୀ ଥିଲେ ଓ ପରିବ୍ରାଜକ ନିଶ୍ଚୟ ହୋଇଥିବେ ।

ଭାରତର ଶେଷ ସ୍ୱାଧୀନ ସମ୍ରାଟ ହର୍ଷବର୍ଦ୍ଧନଙ୍କ ସ୍ୱର୍ଗାରୋହଣ ପରେ ନାଳନ୍ଦା ବିଦ୍ୟାପୀଠକୁ ରାଜକୀୟ ଦାନ ଧୀରେ ଧୀରେ କମି ଯାଇଥିଲା । ଇତିହାସ ପ୍ରସିଦ୍ଧ ଇସଲାମ ରାଜୁତିର ବାଦସାହ କୁତବ୍‌ଙ୍କର ସେନାପତି ବକ୍‌ତିଆର ଖାନ ବିହାର ଜୟ କରିଥିଲେ । ନାଳନ୍ଦାର ଗୌରବ ସେଦିନୁ ଚାଲିଯାଇଥିଲା । ପଳାତକ ଅଧ୍ୟାପକମାନେ ବିଭିନ୍ନ ରାଜ୍ୟରେ ଆଶ୍ରୟ ନେଇଥିଲେ । ବିଶେଷତଃ ଆର୍ଯ୍ୟାବର୍ତ୍ତ ଦାକ୍ଷିଣାତ୍ୟ ସନ୍ଧିରାଜ୍ୟ ଉତ୍କଳ ପ୍ରାନ୍ତ ଶକ୍ତିଶାଳୀ ଓ ସ୍ୱାଧୀନ ହିନ୍ଦୁରାଜ୍ୟ ଥିଲା । କେଶରୀ ବଂଶର ବିଲୋପ ପରେ ଗଙ୍ଗବଂଶ ପ୍ରତିଷ୍ଠାତା ପୁଣ୍ୟଶ୍ଳୋକ ଚୂଡ଼ଗଙ୍ଗ ଦେବଙ୍କ ରାଜୁତିରେ ଶ୍ରୀ ରାମାନୁଜାଚାର୍ଯ୍ୟ ପୁରୀକୁ ଆସିଥିଲେ ଏବଂ ରହିଥିଲେ ବହୁତ ଦିନ ବା ବର୍ଷ । ସେ ବେଳରେ ଉତ୍ତର ଭାରତରୁ ବହୁ ଦାର୍ଶନିକ ପଣ୍ଡିତ ଚୂଡ଼ଗଙ୍ଗଙ୍କରାଜ ଦରବାରରେ ଆଶ୍ରୟ ଲାଭ କରିଥିଲେ ଓ ପ୍ରତିପୋଷଣ ହୋଇଥିଲେ । ଆର୍ଯ୍ୟାବର୍ତ୍ତର ସ୍ୱାଧୀନତା ଗଲା, ଶିକ୍ଷା ଆୟତନ ସଂସ୍କୃତି ରହିବ କିପରି, ସବୁବେଳେ ଦ୍ୱନ୍ଦ୍ୱ । ଆକ୍ରମଣକାରୀ ଶାସକ ହେଲେ ଅବସ୍ଥା ଯାହାହୁଏ ତାହା ହେଲା । ସେହି ବେଳରୁ ଅର୍ଥାତ୍ ଦ୍ୱାଦଶ ଖ୍ରୀଷ୍ଟାବ୍ଦ ଶେଷ ଭାଗ ବା ତ୍ରୟୋଦଶ ଶତାବ୍ଦୀର ପ୍ରଥମ ଭାଗରେ ପୁରୀ ଧାମରେ ବହୁ ବିବୁଧ ପଣ୍ଡିତ ଦାର୍ଶନିକମାନଙ୍କ ସମାବେଶରେ ଆଚାର୍ଯ୍ୟ ରାମାନୁଜଙ୍କର ଉପସ୍ଥିତି ଏକ ମଣି କାଞ୍ଚନର ସୁଯୋଗ କହିଲେ ଅତ୍ୟୁକ୍ତି ହେବନାହିଁ । ଉତ୍କଳ ପ୍ରାନ୍ତରେ ଗଙ୍ଗବଂଶ ପ୍ରତିଷ୍ଠାତା ଚୂଡ଼ଗଙ୍ଗ ସୁଶାସକ ଥିଲେ । ଦାନୀ ଓ ଜ୍ଞାନୀ ଥିଲେ । ଗୁଣୀଜନମାନଙ୍କୁ ଉପଯୁକ୍ତ ସମ୍ମାନ ଦେଉଥିଲେ । ବର୍ଷରୁ ଦୀର୍ଘଦିନ ରାଜୁତି କରିଥିଲେ । ତାଙ୍କର ଦାନ ଧର୍ମପ୍ରଚୁର ଥିଲା ବିଶେଷତଃ ଆଗନ୍ତୁକ ଅନ୍ୟ ପ୍ରାନ୍ତ ବିବୁଧମାନଙ୍କୁ ତାଙ୍କର ଯଥେଷ୍ଟ ଶ୍ରଦ୍ଧା ଥିଲା । ସେମାନଙ୍କର ଥଇଥାନ ପାଇଁ ଚୂଡ଼ଗଙ୍ଗ ପ୍ରଚୁର ଭତ୍ତା ଖଞ୍ଜିଥିଲେ । କେଶରୀ ବଂଶର ଶେଷ ଭାଗରେ ପ୍ରଜା ଅତିଷ୍ଠ ଥିଲେ । ଧର୍ମରେ ବହୁତ ବ୍ୟଭିଚାର ଘଟିଥିଲା । ବୌଦ୍ଧଧର୍ମ ତାହା ପୂର୍ବରୁ ଲୋପ ପାଇଥିଲା ବା ସଂସ୍କାର ରୂପରେ ଶ୍ରୀ ଜଗନ୍ନାଥଙ୍କୁ କେନ୍ଦ୍ର କରି ଶ୍ରୀ ଜଗନ୍ନାଥ ଧର୍ମରୂପାନ୍ତର ହୋଇଥିଲା ବା ଜଗନ୍ନାଥ ଧର୍ମରେ ବିଲୟ ଭଜିଥିଲା । ଏହି ସନ୍ଧି ଓ ଅନିଶ୍ଚିତ କାଳରେ ଶ୍ରୀ ରାମାନୁଜଙ୍କ ଆଗମନ ଓ ପୁରୀରେ ରହଣି ଓ ତାଙ୍କର ସିଦ୍ଧାନ୍ତମତ ପ୍ରଚୁର ଫଳ ଯୋଗେ ବହୁ ବୈଷ୍ଣବ ପ୍ରଧାନ ପୁରାଣ ଯଥା ଶ୍ରୀମଦ୍ ଭାଗବତ ବିଷ୍ଣୁପୁରାଣ ପ୍ରଭୃତିର ପୁନଃ ସଂକଳନ ବା ପୂର୍ଣ୍ଣାଙ୍ଗ ଏହି ପୁରୀ ଧାମରେ ଘଟିଥିଲା । ଯେଉଁ ଭକ୍ତି ପାରାବାର

ଶ୍ରୀମଦ୍‌ଭାଗବତ ବୈଷ୍ଣବଜନ କଣ୍ଠହାର, ଯାହାର ଉଦାତ୍ତ ଉପଦେଶବାଣୀ ଯାବତ୍ ଚନ୍ଦ୍ରଦିବାକର, ଯାବତ୍ ବିନ୍ଧ୍ୟ ହିମାଳୟ, ଯାବତ୍ ଭାରତ ଭାରତୀ ଯେତେଦିନ ପର୍ଯ୍ୟନ୍ତ ସଂସ୍କୃତଭାଷା ଓ ଭାରତୀୟ ପ୍ରାଦେଶିକ ଭାଷା ଜୀବିତ ଥିବ, ସେ କାଳ ପର୍ଯନ୍ତ ଯେ ପର୍ଯ୍ୟନ୍ତ ଜ୍ଞାନୀ ଜନମାନଙ୍କର ଆସ୍ତିକ ଭାବ ଥିବ, ସେତେକାଳ ତାର ମହତ୍ତ୍ୱ ଉଜ୍ଜ୍ୱଳ ରହିଥିବ ଏହି ସତ୍ୟ ହିଁ ଚିରନ୍ତନ ।

ପରମ ସତ୍ୟରୂପୀ ଶ୍ରୀ ନୃସିଂହ ଭଗବାନଙ୍କୁ ଶ୍ରୀଧର ସ୍ୱାମୀ ନିରନ୍ତର ହୃଦୟରେ ଭଜୁଥିଲେ ଏବଂ ତାଙ୍କର କୃପା ପ୍ରାପ୍ତ ହୋଇଥିଲେ । ଶ୍ରୀ ନୃସିଂହ ଦେବ ଶ୍ରୀଧରଙ୍କୁ କେଉଁ ରୂପରେ ଦର୍ଶନ ଦେଇଥିଲେ ତାହା ଭାଗବତର ଟୀକା ଆରମ୍ଭରେ ପ୍ରଥମ ଶ୍ଳୋକରେ ଲିପିବଦ୍ଧ ।

ଶ୍ରୀମଦ୍ ଭାଗବତ ୧୦ସ୍କନ୍ଧ ଉତ୍ତରାର୍ଦ୍ଧ ବା ଦ୍ୱାରିକା ଲୀଳାରେ ପ୍ରସିଦ୍ଧ ଶ୍ରୁତିଗୀତା ବା ବେଦସ୍ତୁତି ଅଧ୍ୟାୟ ସଂସ୍କୃତିରେ ୮୭ ଅଧ୍ୟାୟ ଶ୍ରୀ ଭଗବାନ କୃଷ୍ଣଙ୍କର ଦ୍ୱାରିକା ଭୋଗର ଶେଷ ପର୍ଯ୍ୟାୟରେ ସନ୍ନିବେଶିତ ହୋଇଅଛି । ନରନାରାୟଣ ଋଷି ଆଶ୍ରମରେ ଉପସ୍ଥିତ ସନକାଦି ଆଦ୍ୟ ଋଷି ଚତୁଷ୍ଟୟଙ୍କ ମୁଖନିଃସୃତ ବେଦ ନିର୍ଯ୍ୟାସ ଉପନିଷଦର ଆଦର୍ଶବାଦ ଓ ଭାବନା ନାରଦ କହିଲେ ବାଦରାୟଣ ବ୍ୟାସଙ୍କୁ ବ୍ୟାସ କହିଲେ ଶୁକଦେବଙ୍କୁ ଶୁକଦେବ ପରିକ୍ଷିତଙ୍କୁ ଗଙ୍ଗାତୀରରେ ଯେତେବେଳେ କି ରାଜା ପରିକ୍ଷିତ ପ୍ରାୟୋପବେଶନ କରିଥିଲେ (ମୁମୂର୍ଷୁ ଅବସ୍ଥା ପ୍ରାପ୍ତ) । ସେହି ୧୫୦ ଗୋଟି ଶ୍ଳୋକର ସାରତତ୍ତ୍ୱ ଶ୍ରୀଧର ସ୍ୱାମୀ ତାଙ୍କର ସୁବୋଧିନୀ ଟୀକାରେ ନିଜର ଭାବନା ଓ ଆଦର୍ଶ ଭାଗବତ ଧର୍ମର ଗୂଢ଼ତତ୍ତ୍ୱ, ଭକ୍ତି ଧର୍ମର ସାରବତ୍ତା, ବେଦ ଉପନିଷଦର ସାରତତ୍ତ୍ୱ, ନିଜର ଅନୁଭୂତି ୨୮ ଗୋଟି ଶ୍ଳୋକରେ ଶ୍ରୀନୃସିଂହ ସ୍ତୁତିରେ ପ୍ରକାଶ କରିଛନ୍ତି ।

ଶ୍ରୀ ନୃସିଂହ-ସିଂହ-ଶକ୍ତିର ପ୍ରତୀକ । ପୁରୁଷ ସିଂହ ଶକ୍ତିମାନ ପୁରୁଷଙ୍କର ବିଶେଷଣ ବହୁସ୍ଥାନରେ ଦେଖାଯାଏ ।

ପ୍ରଥମେ ତାଙ୍କର ସଂବୋଧନ - ହେ ଅଜିତ୍ ଅର୍ଥାତ୍ ଅପରାଜେୟ ମାନବଶ୍ରେଷ୍ଠ, ଯାହା ମୁଖରେ ସରସ୍ୱତୀ ବକ୍ଷରେ ଲକ୍ଷ୍ମୀ ଓ ହୃଦୟରେ ସମ୍ବିତ୍ ବା ସତ୍ୟ ଏପରି ପରମାତ୍ମା ପରମ ସତ୍ୟରୂପୀ ଭଗବାନଙ୍କୁ ସେ ସର୍ବଦା ଭଜନ କରୁଥିଲେ । ତାଙ୍କୁ ସେ ପ୍ରତ୍ୟକ୍ଷ କରିଥିଲେ, ବର ଲାଭ କରିଥିଲେ, ସିଦ୍ଧ ହୋଇଥିଲେ । ତାହାଙ୍କୁ ମୋର ପ୍ରଣତି ।

• • •

# ଉତ୍କଳୀୟ ଦାର୍ଶନିକ ଶ୍ରୀଧର ସ୍ୱାମୀ

• ଡକ୍ଟର ବିଜୟାନନ୍ଦ କର

ଶ୍ରୀମଦ୍ ଭାଗବତ ତଥା ଶ୍ରୀମଦ୍ ଭାଗବତ୍‌ଗୀତାର ଏକ ପ୍ରମୁଖ ଟୀକାକାର ଭାବେ ଶ୍ରୀଧର ସ୍ୱାମୀ ଭାରତୀୟ ଧର୍ମ-ଦର୍ଶନ ପରମ୍ପରାରେ ବିଶେଷ ଲୋକପ୍ରିୟ ହୋଇପାରିଛନ୍ତି । ତାଙ୍କଦ୍ୱାରା ରଚିତ ଟୀକାଦ୍ୱୟ (ଭାଗବତ ଉପରେ ଲିଖିତ ଭାବାର୍ଥଦୀପିକା ଏବଂ ଗୀତା ଉପରେ ଲିଖିତ ସୁବୋଧିନୀ) ଭାରତର ବିଭିନ୍ନ ଅଞ୍ଚଳରୁ ସଂଗୃହୀତ ହୋଇ ପ୍ରକାଶ ପାଇଅଛି । ଏତଦ୍‌ବ୍ୟତୀତ ସେ ବିଷ୍ଣୁପୁରାଣ ଉପରେ ଆତ୍ମପ୍ରକାଶ ନାମରେ ଏକ ଟୀକା ରଚନା କରିଯାଇଛନ୍ତି । ତାଙ୍କର ଜନ୍ମ ସମୟ ତଥା ସ୍ଥାନ ନିରୂପଣ ନେଇ ଭାରତବିତ୍ (Indologist) ମାନଙ୍କ ମଧ୍ୟରେ ନିଷ୍ପତ୍ତିମୂଳକ ମତପ୍ରକାଶ ପାଇ ନଥିଲେ ସୁଦ୍ଧା ନିକଟ ଅତୀତରେ ଯାହାକିଛି ସ୍ୱଳ୍ପ ଗବେଷଣାତ୍ମକ ଲେଖାମାନ ଲୋକଲୋଚନକୁ ଆସିପାରିଛି, ସେଗୁଡ଼ିକର ପର୍ଯ୍ୟାଲୋଚନା କଲେ ଅନୁମିତ ହୁଏ ଯେ, ଶ୍ରୀଧର ୧୩୦୦-୧୪୫୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ଓଡ଼ିଶାରେ ଜନ୍ମଲାଭ କରି ସ୍ୱୀୟ ଦର୍ଶନ ସମ୍ବଳିତ ଧର୍ମୀୟ ଚେତନାରେ ପାରଦର୍ଶିତା ହାସଲ କରି ପୁରୀ ଗୋବର୍ଦ୍ଧନ ମଠରେ ଦଶମ ଶଙ୍କରାଚାର୍ଯ୍ୟ (ଅର୍ଥାତ୍ ମଠାଧ୍ୟକ୍ଷ) ଭାବରେ ଅଧିଷ୍ଠିତ ହୋଇଥିଲେ ଏବଂ ଅଦ୍ୱୈତ ପରମ୍ପରାରେ ଜ୍ଞାନ ତଥା ଭକ୍ତିର ଅପୂର୍ବ ସମନ୍ୱୟ ଆଣିପାରିଥିଲେ ।

ମାସିକ ସାହିତ୍ୟ-ପତ୍ରିକା 'ମୁକୁର'ରେ ପ୍ରଥମେ ଶ୍ରୀ ଚନ୍ଦ୍ରମୋହନ ମହାରଣା ପ୍ରକାଶ କରିଥିଲେ ଯେ, ଶ୍ରୀଧର ବାଲେଶ୍ୱର ଜିଲ୍ଲା ରେମୁଣା ଥାନା ସୋନ ଓ ବଳଙ୍ଗନଦୀ ଅନ୍ତର୍ଗତ ମରେଇ ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ପରେ ଡକ୍ଟର ହରେକୃଷ୍ଣ ମହତାବ ତାଙ୍କ ଓଡ଼ିଶା ଇତିହାସ ପୁସ୍ତକରେ ଅନୁରୂପ ମନ୍ତବ୍ୟ ପ୍ରକାଶ କରିଛନ୍ତି । ଶ୍ରୀ ଶରତ ଚନ୍ଦ୍ର ମହାରଣା ତାଙ୍କର 'ସମାଜ'ରେ ପ୍ରକାଶିତ ''ଶ୍ରୀମଦ୍ ଭଗବତ୍‌ଗୀତାର ଟୀକାକାର ଶ୍ରୀଧର ସ୍ୱାମୀ'' (୨୮-୧୧-୧୯୭୬) ଶୀର୍ଷକ ପ୍ରବନ୍ଧରେ ଉଲ୍ଲେଖ କରିଛନ୍ତି ଯେ, ଶ୍ରୀଧର ଢେଙ୍କାନାଳ ସପ୍ତଶଯ୍ୟାଠାରେ ଆଶ୍ରମରେ ରହି ନୃସିଂହମନ୍ତ୍ରରେ ଦୀକ୍ଷିତ ହୋଇ ଗୀତା ପ୍ରଭୃତି ପ୍ରସିଦ୍ଧ ଗ୍ରନ୍ଥାଦି ଉପରେ ଭାଷ୍ୟ ରଚନା କରିଛନ୍ତି ଏବଂ ପରେ ଶ୍ରୀମତୀ ପ୍ରତିଭା କୁମାରୀ ଦେବୀ, ଶ୍ରୀ ଗୌରେନ୍ଦ୍ର ପ୍ରତାପ ସିଂହଦେ ଓ ଶ୍ରୀ ଶେଷ ପ୍ରତାପ ସିଂହଦେଓ 'ସମାଜ'ରେ ପ୍ରକାଶିତ 'ଶ୍ରୀଧର ସ୍ୱାମୀ ଓ କପିଳାସ' (୨୭-୨-୧୯୭୮) ଶୀର୍ଷକ ପ୍ରବନ୍ଧରେ ଦର୍ଶାଇଛନ୍ତି ଯେ, ଶ୍ରୀଧର କପିଳାସର ବ୍ରହ୍ମଚାରୀ ମଠରେ ପରିଚାଳକ ଭାବେ

ଯୋଗଦେଇ ଶ୍ରୀମଦ୍ ଭାଗବତ ଉପରେ ଭାବାର୍ଥଦୀପିକା ରଚନା କରିଥିଲେ । ଏହାପରେ ୧୯୮୦ ମସିହାରେ ଶେଷୋକ୍ତ ପ୍ରବନ୍ଧରେ ଲେଖକ ଦ୍ୱୟ ଶ୍ରୀ ରାଜକିଶୋର ପଟ୍ଟନାୟକଙ୍କ ସହ ମିଶି ଶମ୍ଭୁକ୍ଷେତ୍ର କପିଳାସ ଓ ଶ୍ରୀଧର ସ୍ୱାମୀ'' ଶୀର୍ଷକ ପୁସ୍ତକ ରଚନା କରି ଶ୍ରୀଧରଙ୍କ ଜନ୍ମସ୍ଥଳୀ ତଥା କର୍ମସ୍ଥଳୀ ସମ୍ବନ୍ଧରେ ଆହୁରି ଆଲୋକପାତ କରିଛନ୍ତି । ପୁସ୍ତକରେ ଦର୍ଶାଯାଇଛି ଯେ, ଓଡ଼ିଶାର ଗଜପତି ପ୍ରତାପଭାନୁ ଦେବ କପିଳାସ ଧର୍ମପୀଠର ତତ୍ତ୍ୱାବଧାରକ ରୂପେ ରାମକୃଷ୍ଣ ସ୍ୱାମୀଙ୍କୁ (ଯେ କି ପୁରୀ ଗୋବର୍ଦ୍ଧନ ମଠର ବିଶିଷ୍ଟ ସାଧକ ବୋଲି ଗୋବର୍ଦ୍ଧନ ମଠ ଆମ୍ନାୟରେ ଉଲ୍ଲିଖିତ ଅଛି) ଅଣାଇଥିଲେ ଏବଂ କପିଳାସରେ ସେ ଅବସ୍ଥାନ କରିଥିଲେ । ମଠଟି ରାମକୃଷ୍ଣଙ୍କ ସମୟରେ ହିଁ ନିର୍ମିତ ହୋଇଥିଲା । ପୁସ୍ତକରେ ପ୍ରକାଶ ପାଇଛି, ପୁରୀ ଗୋବର୍ଦ୍ଧନ ପୀଠର ଅମ୍ନାୟ ରାମକୃଷ୍ଣାନନ୍ଦ ସ୍ୱାମୀଙ୍କ ଶିଷ୍ୟ ଶ୍ରୀଧର ସ୍ୱାମୀ କପିଳାସରେ ତପସ୍ୟା କରିଥିଲେ ଓ ଶ୍ରୀ ନୃସିଂହଙ୍କୁ ଉପାସନା କରି ଶ୍ରୀମଦ୍ ଭାଗବତ ଉପରେ ଟୀକା ଲେଖିଥିଲେ । ଏହି ପରିପ୍ରେକ୍ଷୀରେ ମଠର ଗୁରୁ କ୍ରମ୍ନାୟରେ ନିମ୍ନୋକ୍ତ ଉକ୍ତି ପ୍ରଣିଧାନଯୋଗ୍ୟ ।

''ଶ୍ରୀ ରାମକୃଷ୍ଣାନନ୍ଦୋଽଭୂତ୍ ଶିଷ୍ୟସ୍ତସ୍ୟ ମହାଯତିଃ

ସ୍ୱରବିଜ୍ଞାନ ନୈପୁନ୍ୟାତ୍ ପୁଣ୍ୟଂ ତେନ ମହଦ୍ ନେତୃତାମ୍

ତଦ୍‌ଦେତ୍ୟ ଦଦୌ ତସ୍ମୈ ସ୍ୱାମୀବର୍ଯ୍ୟା ନେତୃତାମ୍

ପ୍ରତାପଭାନୁ ନୃପତିଃ କପିଳାସ ଶିବାଳୟେ

ତତ୍‌ଶିଷ୍ୟୋଽଭୂତ୍ ଶ୍ରୀଧର ସ୍ୱାମୀ ପାଦଃ''

ଶ୍ରୀମଦ୍ ଭାଗବତ ଉପରେ ଟୀକା ରଚନା କରିବା ଅବସରରେ ଶ୍ରୀଧର ନୃସିଂହଙ୍କର ସ୍ତୁତି ମଧ୍ୟ ନିମ୍ନଭାବେ କରିଛନ୍ତି ।

''ବାଗୀଶା ଯସ୍ୟ ବଚନେ ଲକ୍ଷ୍ମୀର୍ଯ୍ୟସ୍ୟଚ ବକ୍ଷସି

ଯସ୍ୟାସ୍ତେ ହୃଦୟେ ସଂବିତ୍ ତଂ ନୃସିଂହମହଂ ଭଜେ'' (୧)

କିନ୍ତୁ ଏଠାରେ ଏହା ଅବଶ୍ୟ ଉଲ୍ଲେଖ ଯୋଗ୍ୟ ଯେ, ବଙ୍ଗଳା ବିଶ୍ୱକୋଷରେ ଶ୍ରୀଧର ସ୍ୱାମୀଙ୍କର ଗୁରୁଙ୍କ ନାମ 'ରାମକୃଷ୍ଣ' ନ ହୋଇ 'ପରମାନନ୍ଦ' ବୋଲି ସୂଚିତ ହୋଇଛି । ଭାବାର୍ଥ ଦୀପିକାର ଶେଷ ଶ୍ଳୋକରେ ମଧ୍ୟ ଶ୍ରୀଧର ସ୍ୱାମୀ ପରମାନନ୍ଦଙ୍କ ନାମ ଉଲ୍ଲେଖ କରିଛନ୍ତି ।

''ଗୀୟତାଂ ପରମାନନ୍ଦ ନୃହରି ସଦ୍‌ଗୁରୁ ସ୍ୱୟଂ

ଶ୍ରୀପରମାନନ୍ଦ ସମ୍ପ୍ରୀତେି ଗୃହ୍ୟଂ ଭାଗବତଂ ମୟା

ବିବୃତଂ ତନ୍ମତେନେଦଂ ନତୁ ମନ୍ମତି ବୈଭବମ୍।''

କିନ୍ତୁ ଏହାର ତାତ୍ପର୍ଯ୍ୟ ନିର୍ଣ୍ଣୟ କରିବାକୁ ଯାଇ ''ଶମ୍ଭୁକ୍ଷେତ୍ର କପିଳାସ ଓ ଶ୍ରୀଧର ସ୍ୱାମୀ'' ପୁସ୍ତକର ରଚୟିତାଗଣ ଲେଖିଛନ୍ତି ଯେ, ଶ୍ରୀସଦ୍‌ଗୁରୁ ହିଁ ପରମାନନ୍ଦ ସ୍ୱରୂପ । ତେଣୁ ଶ୍ରୀଧର ପରମାନନ୍ଦଙ୍କୁ ପରମ ଇଷ୍ଟଦେବ ଭାବେ ଗ୍ରହଣ କରିବା ଅଧିକ ବୋଧଗମ୍ୟ । ଏଠାରେ ପରମାନନ୍ଦଙ୍କୁ ନିଜର ବିଦ୍ୟାଗୁରୁ ବୋଲି ସ୍ୱୀକାର କରିବା ଅଥବା ନିଜେ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିବାର ନିର୍ଦ୍ଦିଷ୍ଟ ସୂଚନା ଅବଶ୍ୟ ମିଳୁନାହିଁ । ତେଣୁ ଏହାକୁ ଭିତ୍ତିକରି ଶ୍ରୀଧର ସ୍ୱାମୀଙ୍କ ପ୍ରକୃତ ଗୁରୁ ପରମାନନ୍ଦ ବୋଲି ବିଚାରିବା ଯୁକ୍ତିଯୁକ୍ତ ମନେ ହେଉନାହିଁ । ବରଂ ଶ୍ରୀଧର ରାମକୃଷ୍ଣାନନ୍ଦଙ୍କ ଶିଷ୍ୟ ଭାବେ ଉପରୋକ୍ତ ଗୁରୁ କ୍ରମାମ୍ନାୟରୁ ସ୍ପଷ୍ଟ ସୂଚିତ ହେଉଅଛି ।

ବିଖ୍ୟାତ ଗବେଷକ ଡକ୍ଟର ସୁଶୀଲ କୁମାର ଦେ ତାଙ୍କ ରଚିତ "Early History of the Vaisnava Faith and Movement in Bengal" ପୁସ୍ତକରେ ସୂଚାଇଛନ୍ତି ଯେ, ଶ୍ରୀଧରଙ୍କ ପରି ଶଙ୍କରାଚାର୍ଯ୍ୟଙ୍କ ଅନ୍ୟତମ ପ୍ରଧାନଶିଷ୍ୟ ପଦ୍ମପାଦ ମଧ୍ୟ ନୃସିଂହ ଉପାସକ ଥିଲେ । ଡକ୍ଟର ମହେଶ୍ୱର ନିୟୋଗୀ ତାଙ୍କ ଲିଖିତ "Early History of the Vaisnava Faith and Movement in Assam" ପୁସ୍ତକରେ ଏହି ପ୍ରସଙ୍ଗରେ ଲେଖିଛନ୍ତି ଯେ ପୁରୀ ଗୋବର୍ଦ୍ଧନ ମଠରେ ପ୍ରଥମ ଓ ଦଶମ ଶଙ୍କରାଚାର୍ଯ୍ୟ ଯଥାକ୍ରମେ ପଦ୍ମପାଦ ଓ ଶ୍ରୀଧର ସ୍ୱାମୀ ଅଟନ୍ତି । ଆଉ ମଧ୍ୟ ଇଉରୋପୀୟ ପ୍ରାଚ୍ୟ ଗବେଷକ ଡକ୍ଟର ଫାରକ୍‌ହାର ତାଙ୍କର ରଚିତ "An out line of the Religious Literature of India" ପୁସ୍ତକରେ ଶ୍ରୀଧରଙ୍କୁ ପୁରୀ ଗୋବର୍ଦ୍ଧନ ମଠର ମହନ୍ତ ବୋଲି ଉଲ୍ଲେଖ କରିଛନ୍ତି । ପୁନଶ୍ଚ କାଶୀର ରାମତେଜ ଶାସ୍ତ୍ରୀ ପାଣ୍ଡେୟ ଶ୍ରୀଧରଙ୍କ ଭାବାର୍ଥ ଦୀପିକାକୁ ପ୍ରକାଶ କରିବା ଅବସରେ ପୁରୀ ଜଗନ୍ନାଥ ମନ୍ଦିରରେ ଭାଗବତ ଉପରେ ରଚିତ ଅନ୍ୟ ସମସ୍ତ ଟୀକା କୋଣରେ ନିକ୍ଷିପ୍ତ ହୋଇଥିବା ସ୍ଥଳେ ଶ୍ରୀଧରଙ୍କ ଟୀକା ଭଗବତ (ଜଗନ୍ନାଥ)ଙ୍କ କ୍ରୋଡ଼ରେ ବିରାଜମାନ ଥିଲା (ଶ୍ରୀଧର ସ୍ୱାମୀକୃତେୟଂ ଟୀକା ଭଗବତଃ କ୍ରୋଡ଼େ ଲବ୍ଧାସନା ଆସୀତ୍) ।

ଏହି ସମସ୍ତ ଗବେଷଣାଲବ୍ଧ ମନ୍ତବ୍ୟଗୁଡ଼ିକୁ ଅନୁଶୀଳନ କଲେ ଅନ୍ତତଃ ଏତିକି ସ୍ୱୀକାରଯୋଗ୍ୟ ଯେ ଶ୍ରୀଧର ଏକ ଅଦ୍ୱୈତବାଦୀ ବିଷ୍ଣୁଭକ୍ତ ଥିଲେ । ସେ ଗୋବର୍ଦ୍ଧନ ମଠର ମହନ୍ତଭାବେ ଜଗନ୍ନାଥ ଧାମରେ ବହୁ ସମୟ ଅବଶ୍ୟ ବିତାଇଥିଲେ । କପିଳାସ୍ଥ ବ୍ରହ୍ମଚାରୀ ମଠରେ ରହି ନୃସିଂହଙ୍କୁ ଉପାସନା କରିବା ଅବସରରେ ସେ ଭାବାର୍ଥ ଦୀପିକା ଆଦି ଗ୍ରନ୍ଥମାନ ରଚନା କରିଥିବାର ସମ୍ଭାବନାକୁ ଏଡେଇଦେବା ସହଜ ନୁହେଁ । ଏହି ସମସ୍ତ ତଥା ପୂର୍ବୋକ୍ତ ବିଭିନ୍ନ ଐତିହାସିକ ତଥ୍ୟାଦିକୁ ଭିତ୍ତିକରି ସେ ଯେ ୧୪୦୦ ଖ୍ରୀଷ୍ଟାବ୍ଦରେ ଜଣେ ଭାରତବିଖ୍ୟାତ ଉତ୍କଳୀୟ ଦାର୍ଶନିକ ଥିଲେ, ତାହା ଅସ୍ୱୀକାର କରିହେବ ନାହିଁ ।

ବର୍ତ୍ତମାନ ତାଙ୍କର ଧର୍ମ ସମ୍ବନ୍ଧୀୟ ତାତ୍ତ୍ୱିକ ବିଚାରର ସଂକ୍ଷିପ୍ତ ଆଲୋଚନା କରି ତାହାର ଦାର୍ଶନିକ ବୈଶିଷ୍ଟ୍ୟ ତଥା ମୂଲ୍ୟାୟନ କରୁଅଛି । ଅନେକ ଭାବିପାରନ୍ତି ଯେ ଅଦ୍ୱୈତବାଦ ମୁଖ୍ୟତଃ ଜ୍ଞାନପରକ । ଏଥିରେ ଭକ୍ତିର ସ୍ଥାନ ଗୌଣ; କାରଣ ଈଶ୍ୱର ଅସତ୍ ନାମ ରୂପ ଦ୍ୱାରା ସୀମିତ । ଶ୍ରୀଧର ଅଦ୍ୱୈତବାଦୀ ହୋଇଥିବା ସ୍ଥଳେ ଭକ୍ତିବାଦର ପ୍ରବର୍ତ୍ତକ ହେବାଟା ଯୌକ୍ତିକ ଦୃଷ୍ଟିରୁ କେତେଦୂର ସଙ୍ଗତ, ସେ ବିଷୟରେ ପ୍ରଶ୍ନ ଉଠିପାରେ । କିନ୍ତୁ ଉତ୍ତରରେ କୁହାଯାଇପାରେ ଯେ ଜ୍ଞାନ ଓ ଭକ୍ତି ନିଶ୍ଚିତ ଭାବେ ବିରୋଧୀ ନୁହେଁ । ସ୍ୱୟଂ ଶଙ୍କରାଚାର୍ଯ୍ୟ (ସେ ଶୁଦ୍ଧ ଜ୍ଞାନବାଦର ସମର୍ଥକ) ମଧ୍ୟ ଭକ୍ତିକୁ ସ୍ୱୀକାର କରିଛନ୍ତି ଏପରିକି ମଧ୍ୱାଚାର୍ଯ୍ୟଙ୍କ ରଚିତ ''ଭାଗବତ ତାତ୍ପର୍ଯ୍ୟ ନିର୍ଣ୍ଣୟ'' ଅନୁସାରେ ସ୍ୱୟଂ ଭାଗବତ ଉପରେ ଏକ ଟୀକା ରଚନା କରିଥିଲେ; ଯଦିଓ ସେ ଟୀକା ଏବେ ଦୁଷ୍ପ୍ରାପ୍ୟ ହୋଇପଡ଼ିଛି । ଶଙ୍କରାଚାର୍ଯ୍ୟ ବ୍ୟାବହାରିକ ଦୃଷ୍ଟିରୁ ଈଶ୍ୱରଙ୍କ ଗୁରୁତ୍ୱ ଉପଲବ୍ଧ କରି ଭକ୍ତିମାର୍ଗର ସ୍ୱୀକାର କରିଅଛନ୍ତି । ତାଙ୍କ ରଚିତ ''ବିବେକ ଚୂଡ଼ାମଣି''ରେ ଭକ୍ତିମାର୍ଗକୁ ଅନ୍ୟସମସ୍ତ ମାର୍ଗ ଅନେକ ମୁକ୍ତି ନିମନ୍ତେ ଶ୍ରେୟସ୍କର ବୋଲି ମତ ଦେଇଛନ୍ତି (ଶ୍ଳୋକ - ୩୨) । ବ୍ରହ୍ମନ୍ ପାରମାର୍ଥିକ ଦୃଷ୍ଟିରୁ ନିର୍ବିଶେଷ ହେଲେ ହେଁ ସର୍ବଶେଷ ଭାବେ ସ୍ୱୀକୃତ ହେବା ବାଞ୍ଛନୀୟ (''ସର୍ବଶେଷତ୍ୱମପି ବ୍ରହ୍ମଣୋଽଭ୍ୟୁପଗନ୍ତବ୍ୟମ୍'' - ବ୍ରହ୍ମସୂତ୍ର୩.୨.୧୩) । ବ୍ରହ୍ମନ୍ ସର୍ବବ୍ୟାପକ ହେଲେ ହେଁ ଏହାଙ୍କୁ ବିଷ୍ଣୁଙ୍କୁ ଶାଳଗ୍ରାମ ମାଧ୍ୟମରେ ଉପଲବ୍ଧ କରିବା ସଦୃଶ ଏକ ନିର୍ଦ୍ଦିଷ୍ଟ ସ୍ଥଳରେ ପ୍ରତୀକଭାବେ ଉପଲବ୍ଧି କରିବାରେ କୌଣସି ଅସଙ୍ଗତି ନାହିଁ (''ସର୍ବତାସ୍ୟାପି ବ୍ରହ୍ମଣ ଉପଲଭ୍ୟାର୍ଥମ୍ ସ୍ଥାନ ବିଶେଷା ନ - ବିରୁଧ୍ୟତେ ଶାଳଗ୍ରାମ ଇବ ବିଷ୍ଣୋଃ'' - ବ୍ରହ୍ମସୂତ୍ର ଭାଷ୍ୟ - ୧.୨.୧୪) ।

ଶ୍ରୀଧର ଏହି ଦୃଷ୍ଟିରୁ ଶଙ୍କରାଚାର୍ଯ୍ୟଙ୍କ ଅଦ୍ୱୈତ ମତବାଦର ଏକ ନିର୍ଭରଶୀଳ ପ୍ରବକ୍ତା । ସେ ବ୍ରହ୍ମନ୍‌ଙ୍କୁ ପାରମାର୍ଥିକ ଦୃଷ୍ଟିରୁ ନିର୍ଗୁଣ, ନିର୍ବିଶେଷ

ଭାବେ ସ୍ୱୀକାର କଲେ ହେଁ ବ୍ୟାବହାରିକ ଦୃଷ୍ଟିରୁ ସଗୁଣ ଈଶ୍ୱର ଭାବେ ଗ୍ରହଣ କରିଛନ୍ତି । ତେଣୁ ଈଶ୍ୱରଙ୍କୁ ପରମାନନ୍ଦ ସ୍ୱରୂପ ବା ପୁରୁଷୋତ୍ତମ ଜଗନ୍ନାଥ ଭାବେ ଚିତ୍ରଣ କରିବାରେ ସେ କୌଣସି ଅସଂଗତି ଦେଖିନାହାନ୍ତି ଏବଂ ଈଶ୍ୱରଙ୍କୁ ସ୍ୱୀକାର କରିବା ସହିତ ଭକ୍ତିର ପ୍ରାଧାନ୍ୟକୁ ଗ୍ରହଣ କରିବା ଅବଶ୍ୟାମ୍ଭାବୀ ହୋଇପଡ଼ିଛି । ଭାଗବତ ପୁରାଣ (୧.୨.୧୧)ରେ ବ୍ରହ୍ମନ୍ ବା ପରମାତ୍ମନଙ୍କୁ ଈଶ୍ୱର ବା ଭଗବତ୍ ରୂପ ସ୍ୱୀକାର ପୂର୍ବକ ତାହାଙ୍କୁ ସମଗ୍ର ଜଗତର ଉଭୟ ନିମିତ୍ତ ଓ ଉପାଦାନ କାରଣ ବୋଲି କୁହାଯାଇଅଛି । ଶ୍ରୀଧର ଏହା ଉପରେ ଟୀକା ଲେଖିବା ଅବସରରେ ନିଜର ଅଦ୍ୱୈତ ଦୃଷ୍ଟି ସହ ସମନ୍ୱୟ ରକ୍ଷା କରି କହିଛନ୍ତି ଯେ ଜଗତ୍ ଅସତ୍ ହେଲେ ହେଁ (ପରମସତ୍ତା ବ୍ରହ୍ମନ୍ ଏହାର ଅଧିଷ୍ଠାନ ଥିବାରୁ) ସତ୍ ପରି ପ୍ରତୀୟମାନ ହୋଇଥାଏ (''ଯତ୍ ସତ୍ତ୍ୱତଃ ସଦା ଭାତି ଜଗଦ୍ ଏତଦ୍ ଅସତ୍ ସ୍ୱତଃ, ସଦ-ଆଭାସନ୍ ଅସତ୍ୟସ୍ମିନ୍ ଭଗବନ୍ତଭଜାମତମ୍'' - ଭାବାର୍ଥ ଦୀପିକା -୧୦.୮୭.୨୬) ।

ବ୍ରହ୍ମସୂତ୍ର (୨.୩.୪୯)ରେ ଅଂଶ - ଅଂଶୀ ସମ୍ବନ୍ଧରେ ଉଲ୍ଲେଖ ରହିଛି (''ଅଂଶ ନାନାବ୍ୟପଦେଶାତ୍'') । ଏହି ବିଷୟଟି ବ୍ରହ୍ମନ୍ ଏବଂ ଜଗତ୍ ଅଥବା ଜୀବ ମଧ୍ୟରେ ସମ୍ବନ୍ଧ ବ୍ୟାପାର ନେଇ ପୁଷ୍ଟ । ଶଙ୍କରାଚାର୍ଯ୍ୟ ଅଦ୍ୱୈତ ଦୃଷ୍ଟିରୁ ଏହାର ଅର୍ଥ କରିବାକୁ ଯାଇ କହିଛନ୍ତି : ଅଂଶ (ଅର୍ଥାତ୍ ସତେ ଯେପରି ଅଂଶ ବିଦ୍ୟମାନ) । କିନ୍ତୁ ଭଗବତ୍ ଗୀତା (୧୫.୭) ରେ ଜୀବ ଓ ଜଗତ ଈଶ୍ୱରଙ୍କ ଅଂଶ ଭାବେ ସୂଚିତ ହୋଇଛି (ମମୈବାଂଶୋ ଜୀବଲୋକେ ଜୀବଭୂତଃ ସନାତନଃ) ।

ଏହି ବିଷୟ ଉପରେ ଆଲୋଚନା କରିବା ପରିପ୍ରେକ୍ଷୀରେ ଶ୍ରୀଧର ଅଂଶ ଅଂଶୀ ସମ୍ବନ୍ଧ ସ୍ୱୀକାର କରି ମଧ୍ୟ ଶଙ୍କରଙ୍କ ଦୃଷ୍ଟିଭଙ୍ଗୀ ନ ଏଡ଼େଇ ତାହାର ଶ୍ରେଷ୍ଠତା ସ୍ୱୀକାର କରିଛନ୍ତି । ତାଙ୍କ ମତରେ ଅବିଦ୍ୟା ଯୋଗୁଁ ଜୀବ ଓ ଜଗତ ଈଶ୍ୱରଙ୍କ ଅଂଗ ଭାବେ ପ୍ରତୀୟମାନ ହୁଏ (ମମୈବାଂଶୋ ମଯ୍ୟୋଽୟମ୍ ଅବିଦ୍ୟାୟା ଜୀବଭୂତଃ) ଏଥି ଯୋଗୁଁ ଗୀତା ଉପରେ ନିଜର ସୁବୋଧିନୀ ଟୀକା ରଚନା ପ୍ରାରମ୍ଭରେ ଶ୍ରୀଧର ଭାଷ୍ୟକାର ଶଙ୍କରାଚାର୍ଯ୍ୟ ମତକୁ ସ୍ୱୀକାର ପୂର୍ବକ ନିଜର ବକ୍ତବ୍ୟ ଆରମ୍ଭ କରିଛନ୍ତି ।

''ଭାଷ୍ୟକାର ମତଂ ସମ୍ୟକ୍ ତଦ୍-ବ୍ୟାଖ୍ୟାତୃଗିରସ୍ -ତଥା
ଯଥା-ମତି ସମାଲୋଚ୍ୟ ଗୀତା-ବ୍ୟାଖ୍ୟାଂ ସମାଚରେ''

ତେଣୁ ଶ୍ରୀଧର ଦାର୍ଶନିକ ଦୃଷ୍ଟିରୁ ଅଦ୍ୱୈତ ଜ୍ଞାନବାଦୀ । ଜ୍ଞାନ-ପ୍ରାଧାନ୍ୟ ଦାର୍ଶନିକ ଦୃଷ୍ଟିକୋଣ ବ୍ୟାବହାରିକ ଦୃଷ୍ଟିରୁ ଭକ୍ତିର ଗୁରୁତ୍ୱ ସ୍ୱୀକାର କରିବାରେ

କୌଣସି ବିରୁଦ୍ଧତା ନାହିଁ । ତେଣୁ ଜ୍ଞାନର ଶ୍ରେଷ୍ଠତା ସ୍ୱୀକାର କରିବା ସଙ୍ଗେ ସଙ୍ଗେ ଭକ୍ତିର ଉପାଦେୟତାକୁ ଗ୍ରହଣ କରି ସେ ଜ୍ଞାନ ତଥା ଭକ୍ତିର (ଅଦ୍ୱୈତ ପରମ୍ପରାରେ) ଅପୂର୍ବ ସମନ୍ୱୟ ଆଣିଛନ୍ତି । ତାଙ୍କର ଏହି ଅଦ୍ୱୈତ ଦର୍ଶନଭିତ୍ତିକ ଭକ୍ତିବାଦକୁ ଚୈତନ୍ୟ ସମର୍ଥନ କରିଛନ୍ତି ଏବଂ ତାଙ୍କୁ ଗୁରୁ ବୋଲି ସ୍ୱୀକାର କରିଚନ୍ତି । ଆଉ ମଧ୍ୟ ବଲ୍ଲଭାଚାର୍ଯ୍ୟ ନାମକ କେହି ଏକ ପଣ୍ଡିତାଭିମାନୀ ଚୈତନ୍ୟଙ୍କୁ ଶ୍ରୀଧରସ୍ୱାମୀଙ୍କ ମତକୁ ଖଣ୍ଡନ କରିଛି ବୋଲି କହନ୍ତେ ଚୈତନ୍ୟ ତାହାର ସମାଲୋଚନା କରିବାକୁ ପଛାଇ ନାହାନ୍ତି ।

''ଶ୍ରୀଧର ସ୍ୱାମୀ ନିନ୍ଦି ନିଜ ଟୀକା କର

ଶ୍ରୀଧର ସ୍ୱାମୀ ନାହିଁ ମାନ ଏତେ ଗର୍ବ ଧର

ଶ୍ରୀଧର ସ୍ୱାମୀ ପ୍ରସାଦେ ଭାଗବତ ଜାନି

ଜଗତ୍‌ଗୁରୁ ଶ୍ରୀଧର ସ୍ୱାମୀ ଗୁରୁ କରି ମାନି ।।''

- କୃଷ୍ଣ ଦାସ ରଚିତ ଚୈତନ୍ୟ ଚରିତାମୃତ -

- ଅନ୍ତ୍ୟଲୀଳା - ୭ମ ପରିଚ୍ଛେଦ ଦ୍ରଷ୍ଟବ୍ୟ ।

ଶ୍ରୀଧରଙ୍କ ଦୃଷ୍ଟିଭଙ୍ଗୀର ପ୍ରାଧାନ୍ୟ କେବଳ ଚୈତନ୍ୟଙ୍କ ଠାରେ ସୀମିତ ନ ଥିଲା । ଚୈତନ୍ୟ ନିଜେ ବୈଷ୍ଣବ ମତବାଦର ଅନ୍ୟତମ ପ୍ରଧାନ ସମର୍ଥକ ଥିଲେ ହେଁ, ସେ ମୌଳିକତଃ ଅଦ୍ୱୈତବାଦୀ ଥିଲେ ଏବଂ ସେହି ପରିପ୍ରେକ୍ଷୀରେ ଉଭୟ ରାମାନୁଜାଚାର୍ଯ୍ୟ ଓ ମଧ୍ୱାଚାର୍ଯ୍ୟଙ୍କ ଠାରୁ ଭିନ୍ନ ମତ ପୋଷଣ କରିଥିଲେ । କିନ୍ତୁ ଚୈତନ୍ୟଙ୍କ ପରବର୍ତ୍ତୀ ସାଧକ ବିଷ୍ଣୁପୁରୀ ତାଙ୍କର ''ଭାଗବତ -ଭକ୍ତି-ରତ୍ନାବଳୀ'' ଗ୍ରନ୍ଥରେ ଶ୍ରୀଧରଙ୍କ ଶ୍ରେଷ୍ଠତାକୁ ସ୍ୱୀକାର ପୂର୍ବକ କହିଛନ୍ତି;

''ଅତ୍ର ଶ୍ରୀଧର-ସଉମୋକ୍ତି-ଲିଖନେ ନ୍ୟୂନାଧିକଂ ଯଦ୍ ଭବେତ୍

ତତ୍ କ୍ଷନ୍ତୁଂ ସୁଧିୟୋଽରଃତ ସ୍ୱ-ରଚନା -ଲୁବ୍ଧସ୍ୟ ମେଚାପଲମ୍''

ଏ ସମସ୍ତ ବିଷୟକୁ ବିଚାରକୁ ନେଇ ଡଃ ଦେ ତାଙ୍କର ପୂର୍ବୋକ୍ତ (Early History of the Vaisnava Faith and movement in Bengal) ପୁସ୍ତକରେ ଯଥାର୍ଥରେ ଲେଖିଛନ୍ତି; ''The roots, therefore, of the Bhakti movement, which Madhabendra Puri is said to have started in Bengal and which Chaitanya carried forward and definitely shaped, must be sought in such traditions

as originated from Sridhara's great commentary on the Srimad Bhagavata, which was accepted with much veneration by the Bengal School" (page 20)

ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ ଶ୍ରୀଧରଙ୍କ ମତବାଦ ବୈଷ୍ଣବ ପରମ୍ପରାରେ ଅତୀବ ଗୁରୁତ୍ୱପୂର୍ଣ୍ଣ । ଜ୍ଞାନ ସହ ଭକ୍ତିର ସମନ୍ୱୟ ଆଣିବାରେ ସେ ଯେଉଁ କୃତିତ୍ୱ ଅର୍ଜନ କରିଛନ୍ତି, ତାହା ବୈଷ୍ଣବ ଦର୍ଶନ, ବିଶେଷ କରି ଉତ୍କଳୀୟ ବୈଷ୍ଣବ ଚିନ୍ତାଧାରାରେ ବହୁଳ ଭାବରେ ଆଲୋଚିତ ତଥା ସମାଦୃତ ଜ୍ଞାନ-ମିଶ୍ରା ଭକ୍ତିବାଦର ମୂଳଦୁଆ ପକାଇଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ଶ୍ରୀଧରଙ୍କ ପରବର୍ତ୍ତୀୟ କାଳରେ ବଙ୍ଗୀୟ ବୈଷ୍ଣବ ଦର୍ଶନରେ ପ୍ରଚାରିତ ରସ ପ୍ରାଧାନ୍ୟ ଭକ୍ତିବାଦରେ ଶ୍ରୀଧର ଦୃଷ୍ଟିଭଙ୍ଗୀର ବ୍ୟତିକ୍ରମ ଘଟିଛି । ଯେଉଁ କାରଣରୁ ରୂପ ଗୋସ୍ୱାମୀ, ଜୀବ ଗୋସ୍ୱାମୀ ଏବଂ ଏପରିକି ଓଡିଶାର ବଳଦେବ ବିଦ୍ୟାଭୂଷଣ (ଶ୍ରୀଧରଙ୍କ ଶ୍ରେଷ୍ଠତ୍ୱ ସ୍ୱୀକାର କଲେ ହେଁ) ମଧ୍ୱାଚାର୍ଯ୍ୟଙ୍କ ଦୃଷ୍ଟିଭଙ୍ଗୀ ଆଡକୁ ବିଶେଷ ଢଳି ପଡିଥିବା ବେଳେ ଉତ୍କଳରେ ବିଶେଷ କରି ପଞ୍ଚସଖା ବୈଷ୍ଣବ ସାହିତ୍ୟ ରଥୀ ମାନେ ନିର୍ଗୁଣ ତତ୍ତ୍ୱ ସମ୍ୱଳିତ ସାକାର ଭକ୍ତି ଯୋଗର ପ୍ରାଧାନ୍ୟକୁ ଉପଲବ୍ଧି କରିଛନ୍ତି । ଏଥିରେ ଶ୍ରୀଧରଙ୍କ ଅଦ୍ୱୈତ ଦୃଷ୍ଟିଭଙ୍ଗୀର ଅନେକ ଦୃଷ୍ଟି ଭଙ୍ଗୀର ଯଥେଷ୍ଟ ଛାପା ରହିଛି । ଭକ୍ତ ନିମନ୍ତେ ପରମେଶ୍ୱର ମଧ ମାୟାରୂପ ଧାରଣ କରିଥାନ୍ତି ବୋଲି ଶଙ୍କରାଚାର୍ଯ୍ୟ ମତବ୍ୟକ୍ତ କରିଛନ୍ତି ।

"ପରମେଶ୍ୱରସ୍ୟାପି ଇଚ୍ଛାବଶାତ୍ ମାୟାମୟମ୍

ରୂପମ୍ ସାଧକା-ଅନୁଗ୍ରହାର୍ଥଂ" - ବ୍ରହ୍ମସୂତ୍ର ଭାଷ୍ୟ (୧.୧.୨୦)

ସେହି କାରଣରୁ ମଧ ଭାଗବତରେ ପରମ ତତ୍ତ୍ୱକୁ ଉଭୟ ସଗୁଣ ଓ ନିର୍ଗୁଣ ଭାବେ ଗ୍ରହଣ କରାଯାଇଅଛି । (ଭାଗବତ ୭-୯-୪୮, ୮-୬-୧୧, ୧୦-୨୦-୪)

ଏହିସବୁ ଦୃଷ୍ଟିରୁ ବିଚାର କଲେ ଶ୍ରୀଧରଙ୍କ ଜ୍ଞାନ ଭିତ୍ତିକ ଭକ୍ତିବାଦ ଭାରତୀୟ ଦାର୍ଶନିକ ପରମ୍ପରା, ବିଶେଷ କରି ଅଦ୍ୱୈତ ପରମ୍ପରାରେ ଯେ ଅତୀବ ଗୁରୁତ୍ୱପୂର୍ଣ୍ଣ, ଏଥିରେ ସନ୍ଦେହ ନାହିଁ । ବିଶ୍ୱବିଦ୍ୟାଳୟ ତଥା ଗବେଷଣା ସଂସ୍ଥା ମାଧ୍ୟମରେ ଶ୍ରୀଧରଙ୍କ ଦର୍ଶନ ଉପରେ ଗୁରୁତ୍ୱ ଆରୋପ କରି ଆହୁରି ଆଲୋଚନା ହେବା ସମୀଚୀନ ବୋଲି ମୋର ମନେହୁଏ ।

•••••

# ସମନ୍ୱୟବାଦୀ ଭାଷ୍ୟକାର ଶ୍ରୀଧର ସ୍ୱାମୀ

• ପଣ୍ଡିତ ଅନ୍ତର୍ଯ୍ୟାମୀ ମିଶ୍ର

ଭାରତୀୟ ସଂସ୍କୃତି, ଧର୍ମ ଓ ଦର୍ଶନ ଦୃଷ୍ଟିରୁ ପରମପୂଜ୍ୟ ଶ୍ରୀଧର ସ୍ୱାମୀ ଜଣେ ସମନ୍ୱୟବାଦୀ ଭାଷ୍ୟକାର ରୂପେ ଖ୍ୟାତ । ସେହି ପ୍ରାତଃ ସ୍ମରଣୀୟ ମହାତ୍ମା ଅଲୌକିକ ମେଧା ସଂପନ୍ନ ପଚଣ୍ଡ ପ୍ରତିଭାଧର ତଥା ସମନ୍ୱୟାତ୍ମକ ଦୃଷ୍ଟିକୋଣ ସଂପନ୍ନ ବେଦାନ୍ତ ଦର୍ଶନ ପ୍ରବକ୍ତା ରୂପେ ବିଶ୍ୱପ୍ରସିଦ୍ଧ । ଭାରତୀୟ ଦର୍ଶନର ପ୍ରାଣ ସ୍ୱରପ ଶ୍ରୀମଦ୍ ଭଗବତ୍ ଗୀତା ଓ ଶ୍ରୀମଦ୍ ଭାଗବତ ପ୍ରଭୃତି ଦୁର୍ଲଭ ଶାସ୍ତ୍ର ସମୂହକୁ ସ୍ୱକୀୟ ଉଚ୍ଚତର ଦୃଷ୍ଟିକୋଣରୁ ଭାବବୋଧ ଗମ୍ୟ ଭାଷ୍ୟ ସ୍ୱରୂପରେ ଅପରୂପ ଆଧାତ୍ମିକ ସୌନ୍ଦର୍ଯ୍ୟରେ ବିଭୂଷିତ କରି ମାନବ ସମାଜର କଲ୍ୟାଣ ନିମିତ୍ତ ସେ ପରିବେଷଣ କରି ଚିରସ୍ମରଣୀୟ ହୋଇଯାଇଛନ୍ତି । ତତ୍‌କୃତ ଭାଷ୍ୟସମୂହ ଅଦ୍ୱୈତବାଦର ସିଦ୍ଧାନ୍ତ ଉପରେ ଆଧାରିତ ହେଲେ ହେଁ ଦ୍ୱୈତବାଦ ଓ ଭକ୍ତିରସର ସମନ୍ୱୟ ହେତୁ ପ୍ରଜ୍ଞାର ଐଶ୍ୱର୍ଯମୟ ଆଭାସରେ ପରିପୂର୍ଣ୍ଣ । ବୈଷ୍ଣବୀୟ ଭାବ ଧାରାରେ ଏହି ସବୁ ଭାଷ୍ୟ ଭାରତୀୟ ଆଧାତ୍ମଶାସ୍ତ୍ରର ମୁକୁଟମଣି ରୂପେ ସ୍ୱୀକୃତ । ଈଶ୍ୱର ସାଧନ ମାର୍ଗକୁ ସୁଗମ ଓ ସରଳ ରୀତିରେ ବିଦ୍ୟାନୁଭୂତି ସଂପନ୍ନ ନୂତନ ସ୍ୱାଦରେ ଉପସ୍ଥାପନାହିଁ ତାଙ୍କ ଭାଷ୍ୟର ଚମତ୍କାରିତା । ଏହି ପୂଜ୍ୟ ଭାଷ୍ୟକାର ସାଧନାଲବ୍ଧ ସାରଗର୍ଭକ ବିଦ୍‌ବତ୍ତା ପୂର୍ଣ୍ଣ ପ୍ରାଞ୍ଜଳ ମତକୁ ସମନ୍ୱୟ ମାର୍ଗରେ ଉପସ୍ଥାପନ ପୂର୍ବକ ଭାରତୀୟ ଆଧାତ୍ମ ବିଦ୍ୟାର ମହତ୍ୱଶାଳୀ ସିଦ୍ଧାନ୍ତ ପ୍ରତିପାଦନ କରିଛନ୍ତି ତତ୍‌କୃତଭାଷ୍ୟ ସମୂହ ଅଖିଳ ବିଶ୍ୱର ଆଧାତ୍ମିକ ବିଭବ ତଥା ମାନବ ସଭ୍ୟତା ନିମିତ୍ତ ଶ୍ରେଷ୍ଠ ଅବଦାନ ।

ସନାତନ ଧର୍ମର ପଥ ପ୍ରଦର୍ଶକ ଜଗଦ୍‌ଗୁରୁ ଆଦିଶଙ୍କରାଚାର୍ଯ୍ୟଙ୍କର ମହାସମାଧି ଗ୍ରହଣ କରିବାର ପ୍ରାୟ ପାଞ୍ଚଶତ ବର୍ଷ ପରେ ଚତୁର୍ଦ୍ଦଶ ଶତାବ୍ଦୀର ପ୍ରାରମ୍ଭରେ ଶ୍ରୀଧରସ୍ୱାମୀଙ୍କର ଆବିର୍ଭାବ ହୋଇଥିଲା । ପବିତ୍ର ଓଡ଼ିଶା ପ୍ରଦେଶର ବାଲେଶ୍ୱର ଜିଲ୍ଲାନ୍ତର୍ଗତ ରେମୁଣା କ୍ଷୀରଚୋରା ଗୋପୀନାଥ ମନ୍ଦିର ନିକଟବର୍ତ୍ତୀର ମରେଇଗାଁ ବା ମୟୂରଗ୍ରାମ ବ୍ରାହ୍ମଣ ଶାସନରେ ସେ ଭୂମିଷ୍ଠ ହୋଇଥିଲେ । ତାଙ୍କର ଜନ୍ମସ୍ଥାନ ସଂପର୍କରେ ବିଂଶ ଶତାବ୍ଦୀ ପୂର୍ବରୁ ବିଭିନ୍ନ ଗବେଷକ ବୃନ୍ଦ ବିଭିନ୍ନ ମତ ପୋଷଣ କରୁଥିଲେ । କିନ୍ତୁ ସ୍ୱର୍ଗୀୟ ଚନ୍ଦ୍ରମୋହନ ମହାରଣା ସର୍ବପ୍ରଥମେ ମାସିକ ପତ୍ରିକା "ମୁକୁର"ରେ ଏକ ପ୍ରବନ୍ଧରେ ପ୍ରକାଶ କଲେ ଯେ ଶ୍ରୀଧର ସ୍ୱାମୀ ରେମୁଣା ଥାନାନ୍ତର୍ଗତ ସୋନ ଓ ବଳଙ୍ଗ ନଦୀ ମଧବର୍ତ୍ତୀ ମରେଇଗାଁରେ ଜନ୍ମଗ୍ରହଣ କରିଥିଲେ ଏବଂ ଏହି ପ୍ରାମାଣିକ ତଥ୍ୟ ବିଭିନ୍ନ ଗବେଷକଙ୍କ ଦ୍ୱାରା ସ୍ୱୀକୃତ। ପରବର୍ତ୍ତୀ କାଳରେ ଡକ୍ଟର ହରେକୃଷ୍ଣ ମହତାବ ସ୍ୱରଚିତ ଓଡ଼ିଶା ଇତିହାସ

ମୂଲ୍ୟବାନ ଐତିହାସିକ ପ୍ରମାଣ ପ୍ରଦାନ ପୂର୍ବକ ଏହି ଉକ୍ତିର ସତ୍ୟତା ପ୍ରତିପାଦନ କରିଛନ୍ତି । ଏହି ପ୍ରାମାଣିକ ତଥ୍ୟ ଲବ୍ଧପ୍ରତିଷ୍ଠ ପ୍ରତ୍ନତତ୍ତ୍ୱବିତ୍ ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟଙ୍କ ଦ୍ୱାରା ମଧ ସ୍ୱୀକୃତ । କିମ୍ବଦନ୍ତୀ ଅନୁଯାଇ ଶ୍ରୀଧରସ୍ୱାମୀ ମାଘ ଶୁକ୍ଳସପ୍ତମୀରେ ଏକ ନୈଷ୍ଠିକ ଅର୍ଥବବେଦୀ ସଂସ୍କୃତି ସଂପନ୍ନ ବୈଷ୍ଣବ ଭାବାପନ୍ନ ଆଦର୍ଶ ପରିବାରରେ ଜନ୍ମ ନେଇଥିଲେ । ବାଲ୍ୟକାଳରୁ ଏହି ମହାତ୍ମାଙ୍କର ଅଦ୍ଭୁତ ସ୍ମୃତିଶକ୍ତି ଓ ତୀକ୍ଷ୍ଣ ବୁଦ୍ଧିର ପରିଚୟ ମିଳିଥିଲା । ତତ୍କାଳୀନ ଓଡ଼ିଶାରେ ରେମୁଣା ଏକ ପ୍ରସିଦ୍ଧ ତୀର୍ଥ ସ୍ଥାନ ରୂପେ ଖ୍ୟାତି ଲାଭ କରିଥିଲା । ବିନୋଦ ଚୈତନ୍ୟ ବାବାଜୀଙ୍କ "ଗୋପୀନାଥ ଚରିତାମୃତ" ଗ୍ରନ୍ଥ ବର୍ଣ୍ଣନାନୁଯାୟୀ ପ୍ରଥମ ନରସିଂହଦେବ ବା ଲାଙ୍ଗୁଳା ନରସିଂହ ଦେବଙ୍କ ଦ୍ୱାରା ଏହି ରମଣୀୟସ୍ଥାନରେ ପ୍ରଭୁ ଗୋପୀନାଥଙ୍କ ଇଚ୍ଛାରେ ମନ୍ଦିର ନିର୍ମାଣ ହୋଇଥିଲା । ସ୍ଥାନଟିର ରମଣୀୟତା ହେତୁ ରେମୁଣା ନାମ ପ୍ରସିଦ୍ଧ ଲାଭ କରିଥିବା କମ୍ବଦନ୍ତୀ ରହିଛି, ଭକ୍ତ ମାଧବେନ୍ଦ୍ର ପୁରୀଙ୍କ ଯୋଗୁଁ ପ୍ରଭୁ ନିଜେ କ୍ଷୀରୀ ଚୋରିକରି କ୍ଷୀରୋଚୋରା ଗୋପୀନାଥ ନାମରେ ପ୍ରସିଦ୍ଧ ଲାଭ କଲେ । ଶ୍ରୀଧର ସ୍ୱାମୀଙ୍କ ଜନ୍ମସ୍ଥାନ ମରେଇଗାଁ ଏହି ରେମୁଣାଠାରୁ ଅନତିଦୂରରେ ଅବସ୍ଥିତ ଥିବାରୁ ତାଙ୍କ ଉପରେ ବାଲ୍ୟକାଳରୁ ଗୋପୀନାଥ ଉପାସନାର ପ୍ରଭାବ ପଡ଼ିବା ବିଶ୍ୱାସ ଯୋଗ୍ୟ । ଉଲ୍ଲେଖ ଯୋଗ୍ୟ ଯେ ଶ୍ରୀଧର ସ୍ୱାମୀଙ୍କ ଜନ୍ମପୂର୍ବରୁ ଓଡ଼ିଶାରେ ରାମାନୁଜ ଓ ନରହରି ତୀର୍ଥଙ୍କ ଦ୍ୱାରା ବୈଷ୍ଣବଧର୍ମ ପ୍ରଚାରିତ ହୋଇଥିଲା । ବିଶେଷତଃ ମାଧ୍ୱାଚାର୍ଯ୍ୟଙ୍କ ଶିଷ୍ୟ ନରହରି ତୀର୍ଥଙ୍କର ବିଷ୍ଣୁ ଉପାସନାର ପ୍ରଭାବରୁ ଶ୍ରୀଧର ସ୍ୱାମୀ ବାଲ୍ୟକାଳରୁ ପ୍ରେମ ଭକ୍ତିମାର୍ଗରେ ଅମୃତତ୍ତ୍ୱର ସନ୍ଦେଶ ଲାଭ କରିଥିଲେ । ଉପନୟନ ପରେ ସେ ଗୃହରେ ରହି ପାରମ୍ପରିକ ରୀତିରେ ବେଦବେଦାନ୍ତ ଅଧ୍ୟୟନ କରିଥିଲେ, ବେଦାଧ୍ୟୟନ ଦ୍ୱାରା ତାଙ୍କ ଅନ୍ତରରେ ଉଦ୍ରେକ ହୋଇଥିବା ଭକ୍ତିବୀଜ ଏକ ଦିବ୍ୟଜ୍ୟୋତି ରୂପୀ ଭ୍ରୂଣରେ ରୂପାନ୍ତରିତ ହୋଇଥିଲା । ପରିଣାମ ସ୍ୱରୂପ ଯୌବନ କାଳରେ ହିଁ ତାଙ୍କର ଆତ୍ମାର ସଂସାର ପ୍ରତି ବିତୃଷ୍ଣା ଜାତ ହୋଇଥିଲା । ପରିଶେଷରେ ଆତ୍ମାର ଅପରୋକ୍ଷାନୁଭୂତି ଅନୁସନ୍ଧାନରେ ଶ୍ରୀଧର ଗୃହତ୍ୟାଗ ପୂର୍ବକ ପବିତ୍ର ନୀଳାଚଳ ଧାମରେ ପଦାର୍ପଣ କଲେ । ଜଗଦ୍‌ଗୁରୁ ଆଦି ଶଙ୍କରାଚାର୍ଯ୍ୟଙ୍କ ପ୍ରତିଷ୍ଠିତ ଭୋଗବର୍ଦ୍ଧନ ପୀଠର ସିଦ୍ଧ ମହାତ୍ମା ରାମକୃଷ୍ଣ ନନ୍ଦଙ୍କର ଶିଷ୍ୟତ୍ୱ ଗ୍ରହଣ କଲାପରେ ସେ ସ୍ୱାମୀ ପାଦ ଶ୍ରୀଧର ରୂପେ ପରିଚିତ ହେଲେ । ବଙ୍ଗଳା ବିଶ୍ୱକୋଷରେ ଉଲ୍ଲେଖ ଅଛି ଯେ ଶ୍ରୀଧର ସ୍ୱାମୀଙ୍କ ଗୁରୁଙ୍କ ନାମ ପରମାନନ୍ଦ ଥିଲା । କିନ୍ତୁ ପରବର୍ତ୍ତୀ ଗବେଷଣାରୁ ଏହା ଭ୍ରମାତ୍ମକ ରୂପେ ବିବେଚନା କରାଯାଇଛି । ସ୍ୱାମୀପଦ ଶ୍ରୀଧର ସ୍ୱରଚିତ ଭାବାର୍ଥ ଦୀପିକାର ପ୍ରାରମ୍ଭରେ ଉଲ୍ଲେଖ କରିଛନ୍ତି :-

ନାରାୟଣଂ ନମସ୍କୃତ୍ୟଂ ନରୋଚୈବ ନରୋତ୍ତମଂ
ଦେବୀ ସରସ୍ୱତୀ ବ୍ୟାସ ତତୋ ଜୟ ମୁଦୀରୟେତ୍ ।
ମୂକଂ କରୋତି ବାଚାଳଂ ପଙ୍ଗୁଲଂଘୟତେ ଗିରି
ଯତ୍‌କୃପା ତମହଂ ବନ୍ଦେ ପରମାନନ୍ଦ ମାଧବଂ ।
ପୁନଶ୍ଚ ଏହି ପରମ ଗ୍ରନ୍ଥର ଅନ୍ତିମ ଶ୍ଳୋକରେ ଉଲ୍ଲେଖ କରିଛନ୍ତି ;-
ଗୀୟାତାଂ ପରମାନ୍ଦ ନୃହରି ସଦ୍‌ଗୁରୁ ସ୍ୱଂୟଂ
ଶ୍ରୀ ପରମାନନ୍ଦ ସଂପ୍ରୀତୈ ଗୁହ୍ୟଂ ଭାଗବତ ମୟା
ବିବୃତଂ ତନ୍ମତେନେଦଂ ନତୁମନ୍ ମତି ବୈଭବଂ ।

ମନେହୁଏ ଏହି ଶ୍ଳୋକ ପାଠ ପୂର୍ବକ ବଙ୍ଗଳା ଭାଷାକୋଷର ପ୍ରଣେତା ଅନୁମାନ କରିଛନ୍ତି ପରମାନନ୍ଦହିଁ ଶ୍ରୀଧରଙ୍କର ଏକ ଦୈନ୍ୟ - ନିବେଦନ । ପ୍ରାରମ୍ଭରେ ସେ ପରବ୍ରହ୍ମ ପରମାନନ୍ଦଙ୍କର କୃପାଭିକ୍ଷା କରିଛନ୍ତି । ଶେଷଶ୍ଳୋକରେ ଗୁରୁଙ୍କୁ ସାକ୍ଷାତ ପରମାନନ୍ଦ ସ୍ୱରୂପରେ ବିବେଚନା କରି ଉଲ୍ଲେଖ କରିଛନ୍ତି " ନରରୂପୀ ସାକ୍ଷାତ୍ ହରି ସ୍ୱରୂପ ସଦ୍‌ଗୁରୁଦେବ ଯେକି; ପରମାନନ୍ଦ ପଦବାଚ୍ୟ ତାଙ୍କର ପ୍ରୀତି ଉଦ୍ଦେଶ୍ୟରେ ଭାଗବତର ପ୍ରଚ୍ଛନ୍ନ ତତ୍ତ୍ୱ ପରିବେଷଣ କରିଛନ୍ତି ଏବଂ ଏଥିରେ ତାଙ୍କର କୌଣସି ମତବୈଭବ୍ ନାହିଁ" । ଏହାହିଁ ହେଉଛି ଶ୍ଳୋକଟିର ଭାବାର୍ଥ, କେବଳ ସେତିକି ନୁହେଁ, ସେଆତ୍ମପ୍ରକାଶ ଟୀକାର ପ୍ରାରମ୍ଭରେ ଲେଖିଛନ୍ତି :-

ଶ୍ରୀବିନ୍ଦୁ ମାଧବଂ ବନ୍ଦେ ପରମାନ୍ଦ ବିଗ୍ରହଂ
ବାଚଂ ବିଶ୍ୱେଶ୍ୱରଂ ଗଙ୍ଗା ପରାଶର ମୁଖାନ୍ ମୁନିନ୍

ଏତଦ୍‌ଭିନ୍ନ ଭାବାର୍ଥଦୀପିକା ଟୀକାର ଦଶମସ୍କନ୍ଧ ତ୍ରୟତ୍ରିଂଶ ଅଧ୍ୟାୟ ଉପସଂହାରରେ ମଧ୍ୟ ଲେଖିଛନ୍ତି -

ସେୟଂ ଶ୍ରୀ ପରମାନନ୍ଦ - ସେବି - ଶ୍ରୀଧର ନିର୍ମିତା
ଶ୍ରୀଭାଗବତ ଭାବାର୍ଥ ଦୀପିକା ଦଶମାଶ୍ରୟା

ଏଥିରୁ ସ୍ପଷ୍ଟ ପ୍ରତୀୟମାନ ହେଉଛି ଯେ ଶ୍ରୀଧର ସ୍ୱାମୀ ବିଭିନ୍ନ ସ୍ଥଳରେ ପରମାର୍ଥ ଅର୍ଥରେହିଁ ପରମାନନ୍ଦ ଶବ୍ଦ ପ୍ରୟୋଗ କରିଛନ୍ତି । କିନ୍ତୁ ପ୍ରକୃତ ପକ୍ଷେ ପରମାନନ୍ଦ ତାଙ୍କର ଗୁରୁ ନୁହନ୍ତି । ଏ ସଂପର୍କରେ ଭୋଗବର୍ଦ୍ଧନ ମଠ ଓ ଶ୍ରୀଧରଙ୍କ ସାଧନାପୀଠ କପିଳାସର ବ୍ରହ୍ମଚାରୀ ମଠର ଗୁରୁକ୍ରମ୍ନାୟ ବିଶେଷ ପ୍ରଣିଧାନ ଯୋଗ୍ୟ । ପାରଂପରିକ ରୀତିରେ ପ୍ରତ୍ୟେକ ମଠରେ ଗୁରୁ ପରଂପରା ଲିଖିତ ଭାବରେ ରହିଥାଏ । ଭକ୍ତି ଅମ୍ନାୟରୁ ତଥ୍ୟ ସଂଗ୍ରହ ପୂର୍ବକ ଢେଙ୍କାନାଳ ଇତିହାସର

ପ୍ରଣେତା ସ୍ୱର୍ଗତ ପଣ୍ଡିତ ରାମଚନ୍ଦ୍ରନନ୍ଦ ଭକ୍ତିବିନୋଦ ତାଙ୍କର ଗୁରୁ ଓ ସାଧନାର ସଂକ୍ଷିପ୍ତ ସୂଚନା ପ୍ରଦାନ କରିଅଛନ୍ତି । ଏହା ପ୍ରାମାଣିକ ତଥ୍ୟ ହୋଇଥିବାରୁ ବିଶ୍ୱାସ ଯୋଗ୍ୟ ।

ପୀଠେଽସ୍ୟ ଶିକ୍ଷ୍ୟୋଃ ତ୍ରତୁ ଭୋଗବର୍ଦ୍ଧନେ
ମହେଶ୍ୱରାନନ୍ଦ ସରସ୍ୱତୀ ବସନ୍
ନୀଳାଦ୍ରି ନାଥା ପଚିତିଂ ଯଥା ପୁରା
ନୀରୀକ୍ଷତେ ସ୍ମାଃ ଶ୍ରମକୃତ୍ୟ ତତ୍ପରଃ
ଶ୍ରୀ ରାମକୃଷ୍ଣା ନନ୍ଦୋଃ ଭୁତ୍ ଶିଷ୍ୟସ୍ତସ୍ୟ ମହାଯତିଃ
ସ୍ୱରବିଜ୍ଞାନ ନୈପୁଣ୍ୟ ପୁଣ୍ୟଂତେନ ମହତ୍ ଯଶଃ
ତଦବେତ୍ୟ ତଦୌତସ୍ମୈ ସ୍ୱାମୀ ବର୍ଯ୍ୟାୟନେତୃତାଂ
ପ୍ରତାପଭାନୁ ନୃପତିଃ କପିଳାସ ଶିବାଳୟେ

ତତ୍ ଶିକ୍ଷ୍ୟୋଃ ଭୁତ୍ ଶ୍ରୀଧର ସ୍ୱାମୀପାଦୋ
ତତ୍ପ୍ରାନିତ୍ୟଂ ମନ୍ତ୍ରରାଜଂ (ନାରସିଂହଂ)
ବିଦ୍ୟାଚାତୁର୍ଦ୍ଦଶ୍ୟାମଭ୍ୟାସସେବଶ୍ୟଂ
ସୁସ୍ୟକ୍ଷିପ୍ରଂ ବିପ୍ରମୋକ୍ଷଂ ତତାନ

ଶ୍ରୀମଦ୍ ଭାଗବତଂ ସଚାତି ବିଶଦଂ ବ୍ୟାଖ୍ୟାୟ ସୁଖ୍ୟାତିମାନ୍ ବିଶ୍ୱସ୍ୟୋପକୃତଂ ଚକାର ନିତରାଂ ତତ୍ତ୍ୱାର୍ଥ ମାଦୀପୟନ୍ ପ୍ରାଧାନ୍ୟଂ ଗିରିଶୋ ନୃସଂହ କରୁଣା ଯତଃ ବଭାକ୍ଷେଃସ୍ୟତ୍ର ବ୍ୟାସୋବେତ୍ତି ନବାଃଥ ବେତ୍ତି ସକଳଂ ଶ୍ରୀ ଶ୍ରୀଧର ଷେତ୍ୟବି ।

ଏହି ଆମ୍ନାୟରୁ ଉପଲବ୍ଧ ହୁଏ ଯେ ଭୋଗବର୍ଦ୍ଧନ ପୀଠର ମହେଶ୍ୱରାନନ୍ଦ ସରସ୍ୱତୀଙ୍କ ଶିଷ୍ୟ ମହାଯତି ରାମକୃଷ୍ଣାନନ୍ଦ ପ୍ରତାପଭାନୁ ନୃପତିଙ୍କ ଠାରୁ ସନନ୍ଦ ଲାଭ ପୂର୍ବକ କପିଳାସ ପୀଠରେ ନିବାସ କରିଥିଲେ । ସେହି ରାମକୃଷ୍ଣନନ୍ଦଙ୍କର ଶିଷ୍ୟ ଶ୍ରୀଧର ସ୍ୱାମୀ ନୃସିଂହମନ୍ତ୍ର ଭକ୍ତି ସହିତ ଜପକରି ଶ୍ରୀମଦ୍ ଭାଗବତର ପ୍ରସିଦ୍ଧ ବ୍ୟାଖ୍ୟା ରଚନା କରିଥିଲେ । କେବଳ ସେତିକି ନୁହେଁ ଶ୍ରୀଧର ମଧ ଚତୁର୍ଦ୍ଦଶ ବିଦ୍ୟା ଆୟତ କରି ପାରିଥିଲେ । ଏଥିରୁ ସ୍ପଷ୍ଟ ପ୍ରମାଣିତ ହେଉଛି ଶ୍ରୀଧର ସ୍ୱାମୀଙ୍କ ଗୁରୁ ହେଉଛନ୍ତି ରାମକୃଷ୍ଣାନନ୍ଦ । ସ୍ୱୀୟ ଗୁରୁଦେବଙ୍କ ଆଦେଶରେ ଶ୍ରୀଧର କପିଳାସ ପୀଠରେ କଠୋର ତପଶ୍ଚର୍ଯ୍ୟା ପୂର୍ବକ ନୃସିଂହମନ୍ତ୍ର ଜପକରି ସିଦ୍ଧିଲାଭ କରିଥିଲେ । ଏପରିକି ନୈସର୍ଗିକ ଶୋଭା ସମ୍ଭାର ପରିପୂର୍ଣ୍ଣ ପରମ ରମଣୀୟ କପିଳାସ ପୀଠସ୍ଥିତ ଶକ୍ତି ତନ୍ତ୍ରର ପରମାରାଧ୍ୟା ପାର୍ବତୀଙ୍କ ଦକ୍ଷିଣ ପାର୍ଶ୍ୱରେ ବୈଷ୍ଣବତନ୍ତ୍ରର ପରମାରାଧ୍ୟ ନୃସିଂହଙ୍କର ମୂର୍ତ୍ତି ସ୍ଥାପନ ପୂର୍ବକ ସେ ବୈଷ୍ଣବ ଓ

ଶାକ୍ତ ତତ୍ତ୍ୱର ମହାମିଳନ ଘଟାଇ ଉପାସନା ପ୍ରଣାଳୀରେ ଏକ ନବଦିଗନ୍ତ ସୃଷ୍ଟି କରିଥିଲେ । କପିଳାସ ପୀଠସ୍ଥିତ ବ୍ରହ୍ମଚାରୀ ମଠ ତାଙ୍କର ସାଧନ ପୀଠ ଏବଂ ପ୍ରଭୁ ନୃସିଂହ ଥିଲେ ତାଙ୍କର ଇଷ୍ଟ । ଏ ଅବଧି ଶ୍ରୀଧର ସ୍ୱାମୀଙ୍କର ସମାଧି କପିଳାସରେ ବିଦ୍ୟମାନ ।

ଯୋଗୀଜନ ସେବ୍ୟ କପିଳାସପୀଠର ରକ୍ତାଶୋକ କୃତି ମଧ୍ୟରେ ଶ୍ରୀଧର ସ୍ୱାମୀ ପ୍ରଭୁ ନୃସିଂହଙ୍କ ପାଦପଦ୍ମତଳେ ଏକାଗ୍ରଚିତ୍ତରେ ଉପବେଶନ ପୂର୍ବକ ବିଶ୍ୱ ପ୍ରସିଦ୍ଧ ଟୀକା ସମୂହ ରଚନା କରିଥିଲେ । ସେହି ସମୟରେ ଜନସାଧାରଣ ଶ୍ରୀମଦ୍ ଭଗବତ ଗୀତା, ଶ୍ରୀମଦ୍ ଭାଗବତ ପ୍ରଭୃତି ଦୁର୍ଲ୍ଲଭ ଶାସ୍ତ୍ର ସଂପର୍କରେ ଅନଭିଜ୍ଞ ଥିଲେ । ବେଦର ସମସ୍ତ ପ୍ରଚ୍ଛନ୍ନ ତତ୍ତ୍ୱ ଏହି ସବୁ ପରମଗ୍ରନ୍ଥରେ ପ୍ରତିପାଦିତ ହୋଇଥିବାରୁ ଏହାକୁ ସର୍ବବେଦାନ୍ତସାର ତଥା ଭାରତୀୟ ସଂସ୍କୃତିର ଅନୁପମ ରତ୍ନର ମାନ୍ୟତା ଦିଆଯାଏ । ସିଦ୍ଧାନ୍ତରତ୍ନ ସମନ୍ୱିତ ସମସ୍ତ ଲୋକର ଚକ୍ଷୁସ୍ୱରୂପ ଏହି ଦୁର୍ଲ୍ଲଭ ଶାସ୍ତ୍ର ସମୂହର ଟୀକା ପ୍ରଣୟଣ ପୂର୍ବକ ପୂଜ୍ୟ ସ୍ୱାମୀଜୀ ବିଶ୍ୱବନ୍ଦନୀୟ ହୋଇପାରିଛନ୍ତି । ତାଙ୍କରି ଟୀକା ଅନୁସରଣରେ ସନାତନ ଗୋସ୍ୱାମୀ, ଜୀବ ଗୋସ୍ୱାମୀ, ବିଶ୍ୱନାଥ ଚକ୍ରବର୍ତ୍ତୀ, ବଳଦେବ ବିଦ୍ୟାଭୂଷଣ ଓ ଅତିବଡ଼ି ଜଗନ୍ନାଥ ଦାସ ପ୍ରଭୃତି ମହାତ୍ମା ବୃନ୍ଦ ବିସ୍ତୃତ ଶାସ୍ତ୍ରମାନ ରଚନା କରିଅଛନ୍ତି । ଶ୍ରୀଧର ସ୍ୱାମୀ ରଚନା କରିଥିବା ପରମଶାସ୍ତ୍ର ସମୂହ ହେଉଛି ଶ୍ରୀମଦ୍ ଭଗବତ୍ ଗୀତାର ସୁବୋଧିନୀ ଟୀକା, ଗୀତା ସାରର ବ୍ରହ୍ମସମ୍ବୋଧୀନୀ ଟୀକା, ଭାଗବତ ପୁରାଣ ବିଷୟକ ଦେବସ୍ତୁତି ଟୀକା, ପଦାର୍ଥ ପ୍ରକାଶିକା ପୁରାଣଟୀକା, ବ୍ରଜ ବିହାରକାବ୍ୟ ଏବଂ ଅନେକ ଉପାଦେୟ ଶ୍ଳୋକ ସମୂହକୁ ଏକତ୍ରିତ କରି ଶ୍ରୀ ପଦ୍ୟାବଳୀ ଏହି ସମସ୍ତ ଶାସ୍ତ୍ର ସରଳ ସଂସ୍କୃତ ଭାଷାରେ ଲିଖିତ । ସେହି ସମୟରେ ଓଡ଼ିଆ ଭାଷାର ସଂପୂର୍ଣ୍ଣ ବିକାଶ ହୋଇନଥିବାରୁ ଏବଂ ବିଜ୍ଞମହଲରେ ସଂସ୍କୃତ ଭାଷାର ଆଦର ଥିବାରୁ ଶ୍ରୀଧର ସଂସ୍କୃତ ଭାଷାରେ ହିଁ ଲେଖିଥିଲେ । ସେ ନିଜେ ସଂସ୍କୃତ ଭାଷାର ଜଣେ ଅଦ୍ୱିତୀୟ ବିଦ୍ୱାନ ଥିଲେ । ସମଗ୍ର ଭାରତ ବର୍ଷରେ ଏହି ଭାଷ୍ୟ ସମୂହ ବିଶେଷ ଜନାଦୃତ ଲାଭ କରିଥିଲା ଏବଂ ଏହି ରଚନା ନିମିତ୍ତ ତତ୍କାଳୀନ ଭାରତର ଜ୍ଞାନୀ ବୃନ୍ଦ ଶ୍ରୀଧରଙ୍କୁ ସମ୍ମାନୀତ କରିଥିଲେ ।

ଶ୍ରୀଧରକୃତ ଶ୍ରୀମଦ୍ ଭାଗବତ୍ ଗୀତାର ସୁବୋଧିନୀ ଟୀକା ବିଶ୍ୱପ୍ରସିଦ୍ଧ । ମହାଭାରତ ସଦୃଶ ବିଶାଳାକାୟ ବିଶ୍ୱକୋଷର ଗୀତା ହେଉଛି ସାରତମ ଅଂଶ । ଏହା ସାତଶହ ଶ୍ଳୋକ ବିଶିଷ୍ଟ ଏବଂ ଅଷ୍ଟାଦଶ ଅଧ୍ୟାୟ ସମ୍ବଳିତ ପରମଶାସ୍ତ୍ର । ନିଃଶ୍ରେୟସ ପ୍ରାପ୍ତିର ଉପାୟ ଏହି ପରମଗ୍ରନ୍ଥରେ ସୁବୋଧ୍ୟ ଓ ସରଳ ଭାଷାରେ ଅଭିବ୍ୟକ୍ତ କରାଯାଇଛି । ଶ୍ରୀଧର ସ୍ୱାମୀଙ୍କ ପୂର୍ବରୁ ଗୀତାର ଶଙ୍କର ଭାଷ୍ୟ ଓ

ରାମାନୁଜ ଭାଷ୍ୟ ପ୍ରଭୃତି ପ୍ରାଚୀନ ଟୀକାମାନ ଥିଲେ ହେଁ ଶ୍ରୀଧରଙ୍କ ଟୀକା ସ୍ୱକୀୟ ସରଳ ବୋଧଗମ୍ୟ ଭାବ ଯୋଗୁଁ ବିଜ୍ଞମହଲରେ ବିଶେଷ ଆଦୃତି ଲାଭ କରିଥିଲା । ଗୀତାର ସୁବୋଧିନୀ ଟୀକାରେ ସ୍ୱାମୀପାଦ ଶ୍ରୀଧର ମାନବ ଜୀବନର ଲକ୍ଷ୍ୟ ସଂପର୍କୀୟ ସମନ୍ୱୟାତ୍ମକ ସିଦ୍ଧାନ୍ତ ଏବଂ ପରମ ରମଣୀୟସାଧନ ମାର୍ଗର ଅଧ୍ୟାତ୍ମ ତତ୍ତ୍ୱ ନିରୂପଣ କରିଅଛନ୍ତି । ସ୍ୱୀୟ ଦାର୍ଶନିକ ସିଦ୍ଧାନ୍ତକୁ ସୁବୋଧ୍ୟ ତଥା ହୃଦୟ ସ୍ପର୍ଶୀ ଭାଷ୍ୟରେ ସୁଶୋଭିତ କରି ଏହାର ଗୂଢ଼ତମ ତାତ୍ପର୍ଯ୍ୟକୁ ନିଜ ଦୃଷ୍ଟିରେ ଅଭିବ୍ୟକ୍ତ କରିବାର ଏକ ସଫଳ ପ୍ରୟାସ ନେଇଛନ୍ତି ଶ୍ରୀଧର ଏହି ସୁବୋଧିନୀ ଟୀକାରେ । ସାର୍ବଜନୀନ ଦୃଷ୍ଟିକୋଣରୁ ଏହି ଭାଷ୍ୟ ଏକ ପୂର୍ଣ୍ଣ ବିବେଚନାତ୍ମକ ଗ୍ରନ୍ଥ । ଏହି ଟୀକାର ବୈଶିଷ୍ଟ୍ୟ ହେଉଛି ଭାରତୀୟ ଦର୍ଶନର ବ୍ୟାବହାରିକ ଉଦ୍ଦେଶ୍ୟକୁ ସର୍ବ ସମୟରେ ପ୍ରତିପାଦନ କରିବା । ବିନୟ ମାଧ୍ୟମରେ ପରିବେଷଣ ହୋଇଥିବାରୁ ଏହି ଭାଷ୍ୟ ମାନବୀୟ ହୋଇ ମଧ୍ୟ ଦିବ୍ୟ ହୋଇଯାଇଛି, ଯାହାକି ଟୀକା ପାଠ ମାତ୍ରେ ଅନୁଭୂତ ହୋଇଥାଏ । ପ୍ରୋକ୍ତ ଟୀକାର ପ୍ରାରମ୍ଭରେ ଏହା ସୁସ୍ପଷ୍ଟ । ଦୈନ୍ୟ ନିବେଦନ ମାଧ୍ୟମରେ ଅଖିଳ ବିଶ୍ୱ ସମ୍ମୁଖରେ ଗୀତାର ସୁବୋଧିନୀ ଟୀକା ପରମକାରୁଣିକ ଭଗବାନ ଦେବକୀ ନନ୍ଦନଙ୍କ କୃପାରୁ ପରିବେଶଣ କରିବାକୁ ଯାଇ ଶ୍ରୀଧର ଲେଖିଛନ୍ତି :-

"ଶେଷାଶେଷ ମୁଖ ବ୍ୟାଖ୍ୟ ଚାତୁର୍ଯ୍ୟଂ ତ୍ୱେକ ବକ୍ତଃ

ଦଧାନମଦ୍ଭୁତଂ ବନ୍ଦେ ପରମାନନ୍ଦ ମାଧବଂ

ଶ୍ରୀ ମାଧବଂ ପ୍ରଣମ୍ୟୋ ମାଧବଂ ବିଶ୍ୱେଶ ମାଦରାତ୍ ତଦ୍ ଭକ୍ତି ଯନ୍ତିତଃ କୁର୍ବେ ଗୀତା ବାଖ୍ୟା ସୁବୋଧିନୀ ଭାଷ୍ୟକାର ମତଂ ସମ୍ୟକ୍ ତଦ୍ ବ୍ୟାଖ୍ୟାତୃ ଗିରସ୍ତଥା ।

ଯଥାମତି ସମାଲୋକ୍ୟ ଗୀତାବ୍ୟାଖ୍ୟାଂ ସମାରଭେ
ଗୀତା ବ୍ୟାଖ୍ୟା ୟତେ ଯସ୍ୟାଃ ପାଠ ମାତ୍ରାଦ ଯତ୍ନତଃ
ସେୟଂ ସୁବୋଧିନୀ ଟୀକା ସଦା ଧ୍ୟେୟା ମନୀଷିଭିଃ

ତତ୍ର ଖିଲୁ ସକଳ ଲୋକ ହିତାବତାବତାରଃ ପରମକାରୁଣିକୋ ଭଗବାନ୍ ଦେବକୀ ନନ୍ଦସ୍ତତ୍ତ୍ୱଜ୍ଞାନ ବିଜୃମ୍ଭିତ ଶୋକମୋହ ଭ୍ରଂଶିତ ବିବେକତୟା ନିଜଧର୍ମ ପରିତ୍ୟାଗ ପୂର୍ବକ ପରଧର୍ମାନୁସନମର୍ଜୁନଂ ଧର୍ମ ଜ୍ଞାନ ରହସ୍ୟୋ ପଦେଶ ପ୍ଲବେନ ତସ୍ମାତ୍ ଶୋକ ସାଗରାଦୁଦ୍ଧଧାର" ।

ପ୍ରଳୟଙ୍କରୀ ସଂଗ୍ରାମ ମହାଭାରତ ଯୁଦ୍ଧର ଅବ୍ୟବହିତ ପୂର୍ବରୁ କୁରୁକ୍ଷେତ୍ର ରଣାଙ୍ଗନରେ ସଂଶୟଚିତ୍ତ ମାନବମାତ୍ରର ପ୍ରତିନିଧିତ୍ୱ କରୁଥିବା ପ୍ରସିଦ୍ଧ ଯୋଦ୍ଧା

ଅର୍ଜୁନଙ୍କୁ ପରମକାରୁଣିକ ଦେବକୀ ନନ୍ଦନ ଶ୍ରୀକୃଷ୍ଣ ଗୀତାଜ୍ଞାନ ଛଳରେ ଦେଇଥିବା ଉପଦେଶ ମାର୍ଗକୁ ସ୍ୱକୀୟ ପୁରୋଦୃଷ୍ଟିରେ ଅଖିଳ ବିଶ୍ୱରେ ସୁବୋଧିନୀ ଟୀକା ମାଧ୍ୟମରେ ଉପସ୍ଥାପନା ପୂର୍ବକ ଶ୍ରୀଧର ସ୍ୱାମୀ ଚିରସ୍ମରଣୀୟ ହୋଇ ଯାଇଛନ୍ତି । ସୁବୋଧିନୀ ଟୀକା ସଂପର୍କରେ ମତଦେବାକୁ ଯାଇ ବେଲୁର୍ ମଠର ସ୍ୱାମୀ ଶ୍ରୀ ଜଗଦୀଶ୍ୱରାନନ୍ଦ ଉଲ୍ଲେଖ କରିଛନ୍ତି :-

"ଗୀତାର ବହୁଭାଷ୍ୟ ଓ ଟୀକା ଅଧ୍ୟୟନାନ୍ତେ ନିଃସଂଶୟ ବୁଝିଯାଛି ଶ୍ରୀଧର ସ୍ୱାମୀକୃତ ସୁବୋଧିନୀ ଟୀକାର ସର୍ବାପେକ୍ଷା ସଂକ୍ଷିପ୍ତ ସରଳ ଓ ସାରଗର୍ଭ ଏବଂ ଅଧିକାଂଶ ପାଠକ ପାଠିକାର ପକ୍ଷେ ଅତିଶୟ ଉପଯୋଗୀ, ଆଚାର୍ଯ୍ୟ ଶ୍ରୀଧର ସ୍ୱାମୀ ସ୍ୱୟଂ ସତ୍ୟର ବଲିୟାଛେନ୍ ପାଠମାତ୍ର ପ୍ରଯତ୍ନେଇ ଏଇ ଟୀକାର ଅର୍ଥ ବୋଝାଯାଏ । ସୁବୋଧିନୀ ଟୀକା ଏକଟି ଅନନ୍ୟ ବୈଶିଷ୍ଟ୍ୟ ଜ୍ଞାନ ଓ ଭକ୍ତିର ଅଭିନବ ସମନ୍ୱୟ ସାଧନ । ଏଇ ହେତୁ ମହାପ୍ରଭୁ ଚୈତନ୍ୟ ଦେବ ଏହାର ଭୂୟସୀ ପ୍ରଶଂସା କରିଲେନ ଏବଂ ଭକ୍ତି ଓ ଜ୍ଞାନୀ ଉଭୟେ ଉକ୍ତ ଟୀକା ପାଠେ ଅନୁରକ୍ତ" ।

କେତେକ ଜ୍ଞାନ ପନ୍ଥୀ ସନ୍ନ୍ୟାସୀ ଓ ପଣ୍ଡିତ ତତ୍‌କୃତ ସୁବୋଧିନୀ ଟୀକାରେ ଭକ୍ତିର ପ୍ରାଧାନ୍ୟକୁ ସମର୍ଥନ ନକରିବାରୁ ଭକ୍ତଟୀକାର ମୂଲ୍ୟ ନିର୍ଣ୍ଣୟ କରି ସ୍ୱୟଂ ଆଶୁତୋଷ କାଶୀନାଥ ସ୍ୱପ୍ନାଦେଶ ଦେଲେ ଯେ -

ଅହଂ ବେତ୍ତି ଶୁକୋ ବେତ୍ତି ବ୍ୟାସୋ ବେତ୍ତି ନ ବେତ୍ତିବା

ଶ୍ରୀଧରଂ ସକଳଂ ବେତ୍ତି ଶ୍ରୀନୃସିଂହ ପ୍ରସାଦତଃ

ବୈଷ୍ଣବ କୁଳତିଳକ କାଶୀ ବିଶ୍ୱନାଥଙ୍କ ଉପରୋକ୍ତ ଉକ୍ତିରୁ ଶ୍ରୀଧର ସ୍ୱାମୀ କୃତ ସୁବୋଧିନୀ ଟୀକାର ମର୍ଯ୍ୟାଦା ଓ ଗୁରୁତ୍ୱ ଅନୁମେୟ ।

ଶ୍ରୀଧର ସ୍ୱାମୀ ରଚିତ ଶ୍ରୀମଦ୍ ଭାଗବତର ଭାବାର୍ଥ ଦୀପିକା ଭାଷ୍ୟ ଅଖିଳ ବିଶ୍ୱର ଏକ ଅମୂଲ୍ୟ ବିଭବ । ଭାରତୀୟ ସଂସ୍କୃତିରେ ଶ୍ରୀମଦ୍ ଭାଗବତ ହେଉଛି ସର୍ବଶ୍ରେଷ୍ଠ ଭକ୍ତିଗ୍ରନ୍ଥ ତଥା ସକଳ ଶାସ୍ତ୍ରର ଅମୃତ ଏବଂ ବେଦ ସମୂହର ସତ୍‌ଫଳ ସ୍ୱରୂପ, ଅଷ୍ଟାଦଶ ସହସ୍ର ଶ୍ଳୋକ ବିଶିଷ୍ଟ ଏହି ପରମଶାସ୍ତ୍ର ସଂପର୍କରେ ସମ୍ୟକ୍ ସୂଚନା ଦେବାକୁ ଯାଇ ଶ୍ରୀଧର ସ୍ୱାମୀ ଉଲ୍ଲେଖ କରିଛନ୍ତି -

ଶ୍ରୀମଦ୍ ଭାଗତାଭିଧଃ ସୁରତରୁସ୍ତାରଙ୍କୁର ସଜ୍ଜନିଃ
ସ୍କନ୍ଧୈର୍ଦ୍ୱାଦଶଭିସ୍ତତଃ ପ୍ରବିଳସଦ୍ ଭକ୍ତ୍ୟାଳବାଲୋଦୟଃ
ଦ୍ୱାତ୍ରିଂଶ ତ୍ରିଶତଞ୍ଚ ଯସ୍ୟ ବିଲସତ୍ ଶାଖାଂ ସହସ୍ରାଣ୍ୟଲଂ
ପୂର୍ଣ୍ଣ୍ୟାଶ୍ୟଷ୍ଟ ଦଶେଷ୍ଟଦୋତି ସୁଲଭୌ ବର୍ବର୍ତ୍ତି ସର୍ବୋପରି ।

ଏହାର ଭାବାର୍ଥ ହେଉଛି ଭକ୍ତିରୂପକ ମନ୍ଦାରେ ସତ୍‌ରୂପକ ବୀଜ ରୋପଣ ଦ୍ୱାରା ଯେଉଁ ମହାନ୍ ଦେବବୃକ୍ଷ ଉତ୍ପନ୍ନ ହୋଇଅଛି ତାହାହିଁ ଭାଗବତ । ଏହି ପରମ ବୃକ୍ଷ ଦ୍ୱାଦଶ ଶାଖା, ତିନି ଶତ ବତିଶି ପ୍ରଶାଖା ଓ ଅଠର ସହସ୍ର ଭକ୍ତିପୂର୍ଣ୍ଣ ପତ୍ର ଦ୍ୱାରା ସୁଶୋଭିତ । ଶ୍ରୀଧରଙ୍କର ଭାଗବତ ସମ୍ବନ୍ଧୀ ଆଧ୍ୟାତ୍ମିକ କଳ୍ପନା ପରମରମଣୀୟ । ଶ୍ରୀମଦ୍ ଭାଗବତର ଭାବାର୍ଥ ଦୀପିକା ଟୀକା ରଚନା ପୂର୍ବକ ସ୍ୱାମୀପାଦ ଶ୍ରୀଧର ବେଦର ପରମତତ୍ତ୍ୱକୁ ଆତ୍ମାର ପରିତୁଷ୍ଟି ନିମିତ୍ତ ଅଗଣିତ ମୁମୁକ୍ଷୁ ଜନଙ୍କ ନିକଟରେ ପ୍ରକାଶ କରିଅଛନ୍ତି । ଏହି ଟୀକାରେ ଶ୍ରୀ ଶଙ୍କରାଚାର୍ଯ୍ୟଙ୍କ କେବଳାଦ୍ୱୈତବାଦ, ଶ୍ରୀ ରାମାନୁଜଙ୍କ ଦ୍ୱୈତବାଦ ଶ୍ରୀ ମାଧ୍ୱାଚାର୍ଯ୍ୟଙ୍କ ବିଶିଷ୍ଟ ଦ୍ୱୈତବାଦ ତଥା ଶ୍ରୀ ଚୈତନ୍ୟଙ୍କର ଅଚିନ୍ତ୍ୟ ଭେଦାଭେଦର ଅପୂର୍ବ ସମନ୍ୱୟ ଘଟିଅଛି । ପ୍ରୋକ୍ତ ଟୀକାରେ ଭକ୍ତିର ଅନାବିଳ ସ୍ରୋତର ମାଧୂର୍ଯ୍ୟ ହିଁ ବର୍ଣ୍ଣିତ । ଶ୍ରୀଧରଙ୍କକ ମତରେ ଧର୍ମ ସମ୍ବନ୍ଧୀୟ ସମସ୍ତ ବିଚାର ଓ ଦର୍ଶନରମୂଳତତ୍ତ୍ୱ ଶ୍ରୀମଦ୍ ଭାଗବତରେ ହିଁ ବିଦ୍ୟମାନ । ସେ ସ୍ପଷ୍ଟ କରି ଦେଇଛନ୍ତି ଯେ ଫଳ ଲାଭ ଆଶାର କପଟତା ପରିହାର ପୂର୍ବକ ଆସକ୍ତି ଶୂନ୍ୟ ପରମ ଭାଗବତ ଧର୍ମ ଅବଲମ୍ବନ କଲେ ତତ୍‌କ୍ଷଣାତ୍ ଈଶ୍ୱର ସାକ୍ଷାତ୍‌କାର ଲାଭ ହୋଇଥାଏ । ଟୀକାର ପ୍ରାରମ୍ଭରେ ସେ ଉଲ୍ଲେଖ କରିଛନ୍ତି -

ଓଁ ନମୋ ଭଗବତେ ପରମହଂସାସ୍ୱାଦିତ ଚରଣକମଳ ଚିନ୍‌ମକରନ୍ଦାୟ ଭକ୍ତ ଜନ ମାନସ ନିବାସାୟ ଶ୍ରୀକୃଷ୍ଣାୟ, ବାଗୀଶା ଯସ୍ୟ ବଦନେ ଲକ୍ଷ୍ମୀର୍ଯସ୍ୟଚ ବକ୍ଷସି, ନାସ୍ୟାସ୍ତେ ହୃଦୟେ ସଂବିତ୍ ତଂ ନୃସିଂହ ମହଂ ଭଜେ, ବିଶ୍ୱସର୍ଗ ବିସର୍ଗାଦି ନବ ଲକ୍ଷଣ ଲକ୍ଷିତଂ, ଶ୍ରୀ କୃଷ୍ଣାଖ୍ୟଂ ପରଂଧାମ ଜଗଦ୍ଧାମ ନମାମି ତତ୍, ମାଧବୋ ମାଧବୋବୀଶୌ ସର୍ବ ସିଦ୍ଧି ବିଧାୟିନୌ, ବନ୍ଦେ ପରସ୍ପରା ତ୍ମାନୌ ପରସ୍ପର ନତି ପ୍ରିୟେ, ସଂପ୍ରଦାୟାନୁ ରୋଧେନ ପୌର୍ବାପର୍ଯ୍ୟାନୁ ସାରତଃ, ଶ୍ରୀ ଭଗବତ ସାରାର୍ଥ ଦୀପିକେୟଂ ପ୍ରତ୍ୟନ୍ୟତେ, କାହଂ ମନ୍ଦମତିଃ କ୍ୱେଦଂ ମଥନଂ କ୍ଷୀରବାରିଧେଃ, ମୂକଂ କରୋତି ବାଚାଳଂ ପଙ୍ଗୁ ଲଂଘୟତେ ଗିରିଂ, ଯଦ୍‌କୃପା ତମହଂ ବନ୍ଦେ ପରମାନନ୍ଦ ମାଧବଂ ।

ଉପରୋକ୍ତ ଉକ୍ତିରୁ ଶ୍ରୀଧରଙ୍କ ସମନ୍ୱୟତା, ବିନୟତା ଓ ସରଳତା ସୁସ୍ପଷ୍ଟ । ଉଲ୍ଲେଖ ଯୋଗ୍ୟଯେ ତାଙ୍କରି ଟୀକା ଅନୁକରଣରେ ଜଗନ୍ନାଥ ଦାସ ଓଡ଼ିଆ ଭାଗବତ ରଚନା କରିଥିଲେ । ଏହାର ସୂଚନା ଓଡ଼ିଆ ଭାଗବତର ଦ୍ୱାଦଶ ସ୍କନ୍ଧରେ ରହିଅଛି ।

ଶ୍ରୀଧରନାମେ ବିପ୍ରବର କଳିଯୁଗରେ ଜନ୍ମତାର
ଶ୍ରୀଭାଗବତଯେ ପୁରାଣ ଅଷ୍ଟାଦଶ ସହସ୍ରଶ୍ଳୋକେଣ

ତା ଟୀକା ଚଉବିଂଶ ସସ୍ର କରଇ ଶ୍ରୀଧର ପ୍ରକାଶ
ବିପ୍ରକୁଳରେ ଜନ୍ମ ହୋଇ ଜଗନ୍ନାଥ ଯେ ନାମ ବହି
ପ୍ରାକୃତ ବନ୍ଧେ ଭାଗବତ କହିଲେ ସନ୍ଥ ଜନହିତ

ଓଡ଼ିଆ ଭାଗବତର ପ୍ରାରମ୍ଭରେ ଯେଉଁ ''ନାରାୟଣଂ ନମସ୍କୃତ୍ୟ'' ଶ୍ଳୋକ ପାଠ କରାଯାଏ ତାହା ମଧ ଶ୍ରୀଧର ସ୍ୱାମୀଙ୍କ ରଚିତ । ଶ୍ରୀଧର ସ୍ୱାମୀ ଭାଗବତର ଟୀକା ରଚନା କରିବା ପୂର୍ବରୁ କେବଳ ଜ୍ଞାନୀ ଓ ସାଧୁଙ୍କ ମଧ୍ୟରେ ଭାଗବତଜ୍ଞାନ ସୀମିତ ଥିଲା । କାଶୀରୁ ବିଦ୍ୱାନ୍ ପଣ୍ଡିତ ମାନେ ପୁରୀକୁ ଆସି କଳ୍ପବଟ ମୂଳରେ ସଂସ୍କୃତ ଭାଗବତକୁ ବ୍ୟାଖ୍ୟାକରି ସମବେତ ଭକ୍ତବୃନ୍ଦକୁ ଶୁଣାଉଥିଲେ । ଓଡ଼ିଶାର ଏହି ଦୁର୍ଦ୍ଦିନରେ ଜଗନ୍ନାଥ ଦାସ ଶ୍ରୀଧର ଟୀକା ଅନୁକରଣରେ ନବାକ୍ଷରୀ ବୃତ୍ତରେ ଓଡ଼ିଆ ଭାଗବତ ରଚନା ପୂର୍ବକ ବିନା ବିଦ୍ୟାଳୟରେ ଲକ୍ଷଲକ୍ଷ ଓଡ଼ିଆଙ୍କୁ ଶିକ୍ଷା, ସଂସ୍କୃତି ଓ ଆଧାତ୍ମିକ ତାରେ ଉଦ୍‌ବୁଦ୍ଧ କରାଇ ଏ ଜାତିର ଏକାନ୍ତ ଆତ୍ମୀୟ ହୋଇ ପାରିଥିଲେ । ପରୋକ୍ଷ ଭାବରେ ଶ୍ରୀଧର ସ୍ୱାମୀଙ୍କ ଯୋଗୁଁହିଁ ଓଡ଼ିଶାରେ ଭାଗବତର ଆଦର ବଢ଼ିଥିଲା । ଶ୍ରୀଧରଙ୍କ ଭକ୍ତିମୂଳକ ଭାବାର୍ଥ ଦୀପିକା ଭାଷ୍ୟ ସନ୍ନ୍ୟାସୀ ଗଣଙ୍କ ଉପରେ ମଧ ବିଶେଷ ପ୍ରଭାବ ପକାଇଥିଲା । ବିଭିନ୍ନ ସଂପ୍ରଦାୟର ଆଚାର୍ଯ୍ୟବୃନ୍ଦ ଭାଗବତତତ୍ତ୍ୱକୁ ସ୍ୱକୀୟ ପଦ୍ଧତି ଅନୁଯାୟୀ ନିରୂପଣ କଲେ ମଧ ଶ୍ରୀଧର ସ୍ୱାମୀ ଏକ ସମନ୍ୱୟାତ୍ମକ ଭକ୍ତି ତତ୍ତ୍ୱ ସମ୍ବଳିତ ଟୀକା ରଚନା କରିଥିବାରୁ ତାହା ଅଧିକ ଲୋକ ପ୍ରିୟ ହୋଇ ''ଶ୍ରୀଧରୀ'' ନାମରେ ମାନ୍ୟତା ଲାଭ କରିଥିଲା । ଏପରିକି ସ୍ୱୟଂ ପ୍ରେମାବତାର ଗୌରାଙ୍ଗ ମହାପ୍ରଭୁ ଶ୍ରୀଧର ସ୍ୱାମୀଙ୍କୁ ଏହି ଟୀକା ରଚନା ନିମିତ୍ତ ଗୁରୁ ରୂପେ ସ୍ୱୀକାର କରିଥିଲେ । ଏ ସଂପର୍କରେ ଏକ ମନୋରମ ଦୃଷ୍ଟାନ୍ତ ରହିଛି । ଶ୍ରୀ ଚୈତନ୍ୟ ମହାପ୍ରଭୁ ନୀଳାଚଳ ଧାମରେ ନିବାସ କରୁଥିବା ସମୟରେ ଜନୈକ ଜ୍ଞାନାଭିମାନୀ ବଲ୍ଲଭାଚାର୍ଯ୍ୟ ନାମକ ବ୍ୟକ୍ତି ସ୍ୱରଚିତଭାଗବତର ଟୀକା ଖଣ୍ଡିଏ ଆଣି ଗୌର ସୁନ୍ଦରଙ୍କୁ ଦେଖାଇଲେ ଏବଂ ପ୍ରକାଶ କଲେ ଯେ ପ୍ରୋକ୍ତ ଟୀକାରେ ଶ୍ରୀଧରଙ୍କ ମତ କେତେକାଂଶରେ ଖଣ୍ଡିତ ହୋଇଅଛି । ବଲ୍ଲଭାଚାର୍ଯ୍ୟଙ୍କ ଅଭିମାନ ସୂଚକ ଉକ୍ତି ଶୁଣି ଶ୍ରୀଚୈତନ୍ୟ ମହାପ୍ରଭୁ ମତ ଦେଲେ ଯେ ''ଶ୍ରୀଧର ସ୍ୱାମୀ ନିନ୍ଦି ଟୀକାକାର, ଶ୍ରୀଧର ସ୍ୱାମୀ ନାହିଁ ମାନ ଏତ ଗର୍ବ କର । ଶ୍ରୀଧର ସ୍ୱାମୀ ପ୍ରସାଦେ ଭାଗବତ ଜାନି, ଜଗତ୍ ଗୁରୁ ଶ୍ରୀଧର ସ୍ୱାମୀ ଗୁରୁ କରି ମାନି ''

ଶ୍ରୀଧରର ଆନୁଗତ୍ୟେ ଯେ କରେ ଲିଖନ, ସବୁଲୋକ ମାନ୍ୟକରି କରିବେ ଗ୍ରହଣ'' ଭାବାର୍ଥ ଦୀପିକାର ସିଦ୍ଧାନ୍ତ ହେଉଛି ନିର୍ମଳ ଭକ୍ତି ଓ ସମର୍ପଣ ଭାବାପନ୍ନ ଜୀବନ ଯାପନ କଲେ ହୃଦୟ ଶୁଦ୍ଧି ହୋଇ ଅନ୍ତଶ୍ଚେତନା ଜାଗରିତ ହୁଏ । ଏହା ହିଁ ହେଉଛି ପରମ ଭାଗବତ ଧର୍ମ । ବିଶ୍ୱର ପ୍ରତ୍ୟେକ ଜୀବ ଏହି ଧର୍ମ ପାଳନ କରିବା

ବିଧେୟ । ଭାଗବତର ଏକାଦଶସ୍କନ୍ଧ ଦ୍ୱିତୀୟ ଅଧ୍ୟାୟ ଛତିଶ ଶ୍ଲୋକର ଶ୍ରୀଧର ଟୀକା ପାଠକଲେ ଶ୍ରୀଧରଙ୍କ ମତ ଅନୁଭବ କରି ହୁଏ । ବ୍ୟାସଦେବଙ୍କ ରଚିତ ମୂଳ ଶ୍ଲୋକ ହେଉଛି :-

କାୟେନ ବାଚାମନସେନ୍ଦ୍ରିୟୈର୍ବା ବୁଦ୍ଧ୍ୟାତ୍ମନା ବାନୁସୃତ ସ୍ୱାଭାବାତ୍ ଯୋ କରୋତି ଯତ୍ ଯତ୍ ସକଳଂ ପରସ୍ମୈ ନାରାୟଣାୟେତି ସମର୍ପୟେତ୍ ତତ୍ ।

ଏହି ତାତ୍ପର୍ଯ୍ୟ ପୂର୍ଣ୍ଣ ଶ୍ଲୋକର ବ୍ୟାଖ୍ୟା କରିବାକୁ ଯାଇ ପୂଜ୍ୟ ଶ୍ରୀଧର ସ୍ୱାମୀ ସ୍ୱରଚିତ ଭାବାର୍ଥ ଦୀପିକାରେ ଉଲ୍ଲେଖ କରିଛନ୍ତି -

'ନନୁକେ ତେ ଭାଗବତା ଧର୍ମାଃ । ଈଶ୍ୱରାର୍ପିତାନି ସର୍ବକର୍ମାଣ୍ୟ ପୀତ୍ୟାହ କାୟେନେତି । ଆତ୍ମନା ଚିତ୍ତେନ ଅହଂକାରେଣ ବା ଅନୁସୃତୋ ଯଃ ସ୍ୱଭାବସ୍ତାସ୍ମତ୍ । ଅୟମର୍ଥଃ । ନେ କେବଳଂ ବିଧିତଃ କୃତମେବତି ନିୟମ ସ୍ୱଭାବାନୁସାରି ଲୌକିକମପୀତି । ତଥା ଚ ଭଗବତ୍ ଗୀତାସୁ

'ଯତ୍ କରୋଷି ଯଦଶ୍ନାସି ଯଜ୍ଜୁହୋଷି ଦଦାସି ଯତ୍
ଯତ୍ତପସ୍ୟସି କୌନ୍ତେୟ ତତ୍ କୁରୁଷ୍ୱ ମଦର୍ପଣମିତି'

ଯଦ୍ ବାନନୁ କଷ୍ୟାଦୀନାମେବ କର୍ମ୍ମନାତ୍ମନ ଇତ୍ୟାଶଂ କ୍ୟହ ଅଧାସେନାନୁସୃତାତ୍ ବ୍ରାହ୍ମଣତ୍ୱାଦି ସ୍ୱଭାବାତ୍ ଯଦ୍ୟତ୍ କରୋତୀତ୍ୟର୍ଥଃ ତତ୍ ସକଳଂ ପରସ୍ମୈ ପରମେଶ୍ୱରାୟ ନାରାୟଣାୟେଃ ସମର୍ପୟେତ୍ । ତଥାସତି ସକଳମପି କର୍ମ୍ମ ଭାଗବତୋ ଧର୍ମ୍ମୋଭବତୀତି ଭାବଃ ।''

ଉପରୋକ୍ତ ବ୍ୟାଖ୍ୟାରେ ଶ୍ରୀଧର ସ୍ୱାମୀ ଗୀତା ନବମ ଅଧ୍ୟାୟର ସତାଇଶି ଶ୍ଲୋକଟିକୁ ଉଦାହରଣ ଦେଇ ସମର୍ପଣ ଭାବାପନ୍ନ ଭକ୍ତିମାର୍ଗରେ ପ୍ରାଞ୍ଜଳ ଓ ସମନ୍ୱୟାତ୍ମକ ଦିଗ୍‌ଦର୍ଶନ ଦେଇଅଛନ୍ତି ଫଳତଃ ପରମ ଭାଗବତ ଧର୍ମର ସ୍ୱରୂପ ପ୍ରକାଶ ପାଇଛି । ଉଲ୍ଲେଖ ଯୋଗ୍ୟଯେ ପ୍ରଚ୍ଛନ୍ନ ଭାବରେ ସକଳ କର୍ମ ଭାଗବତ ଧର୍ମରେ ପରିଣତ ହେବାର ସନ୍ଦେଶ ହିଁ ଶ୍ରୀଧର ଅଖିଳ ବିଶ୍ୱକୁ ଏହି ନିର୍ଣ୍ଣୟାର୍ଥେ ଭାବାର୍ଥ ଦୀପିକା ଏକ ଦର୍ପଣ ସଦୃଶ ପରମ ଭାଗବତ ଧର୍ମ ଅବଲମ୍ବନରେ ଦିବ୍ୟ ଈଶ୍ୱରାନୁଭୂତି ଲାଭନିମିତ୍ତ ସଶନ୍ୱୟାତ୍ମକ ନିର୍ମଳ ଭକ୍ତିର ଉପାଦେୟତାର ତାତ୍ପର୍ଯ୍ୟ ସମ୍ବନ୍ଧରେ ଭାବାର୍ଥ ଦୀପିକା ଭାଷ୍ୟ ଏକ ସିଦ୍ଧ ପ୍ରାମାଣିକ ଶାସ୍ତ୍ର ଏହି ଦୁର୍ଲଭ ଶାସ୍ତ୍ରହିଁ ସିଦ୍ଧ ସାଧକ ଶ୍ରୀଧରଙ୍କ ଅନୁଭୂତି ମୂର୍ଚ୍ଛନା ।

ଏତଦ୍ ଭିନ୍ନ ଶ୍ରୀଧର ସ୍ୱାମୀ ବିଷ୍ଣୁ ପୁରାଣର ସାରଗର୍ଭକ ଆତ୍ମପ୍ରକାଶ ଟୀକା, ସନତ୍ ସୁଜାତୀୟର ବାଳବୋଧିନୀ ଟୀକା, ଗୀତାସାରର ବ୍ରହ୍ମ ସମ୍ବୋଧିନୀ ଟୀକା, ଭାଗବତ ପୁରାଣ ବିଷୟକ ଦେବସ୍ତୁତି ଟୀକା, ପଦାର୍ଥ ପ୍ରକାଶିକା ପୁରାଣ ଟୀକା,

ବ୍ରଜବିହାର କାବ୍ୟ ତଥା ଶ୍ରୀ ପଦ୍ୟାବଳୀ ରଚନା କରିଥିଲେ । ପୂର୍ବରୁ ଏହି ଶାସ୍ତ୍ର ସମୂହର ଭାଷ୍ୟ ରଚନା ହୋଇନଥିଲା ଏହି ଦୁର୍ଲଭ ଟୀକା ସମୂହରେ ଅଦ୍ୱୈତମତ ସହିତ ପ୍ରେମ ଭକ୍ତି ମୂଳକ ମତର ସମନ୍ୱୟ ପ୍ରତିପାଦିତ ହୋଇଅଛି । ଫଳତଃ ଏହା ସର୍ବ ଭାରତୀୟ ସ୍ତରରେ ଜନାଦୃତି ଲାଭ କରିବା ସହିତ ବିଦ୍ୟାନଗରୀ କାଶୀରେ ବିଶେଷ ଆଲୋଡ଼ନ ସୃଷ୍ଟି କରିଥିଲା । ଲେଖିବା ବାହୁଲ୍ୟ ଚନ୍ଦ୍ରଦତ୍ତଙ୍କ ରଚିତ ସଂସ୍କୃତ "ଭକ୍ତିମାଳା" ଗ୍ରନ୍ଥରେ ଶ୍ରୀଧର ସ୍ୱାମୀଙ୍କୁ ଜଣେ ଅଲୌକିକ ମହାପୁରୁଷ ରୂପେ କଳ୍ପନା କରାଯାଇ ତାଙ୍କରି ଅଲୌକିକ ଲୀଳା ମଧ ବର୍ଣ୍ଣନା କରାଯାଇଅଛି । ଏଥିରୁ ତତ୍‌କାଳୀନ ବିଶାଳ ଭାରତୀୟ ସମାଜରେ ଶ୍ରୀଧରଙ୍କ ଲୋକ ପ୍ରିୟତା ସୁସ୍ପଷ୍ଟ । ତତ୍‌କୃତ ଭାଷ୍ୟମାନଙ୍କରେ ଭାବ, ଜାତି, ଧର୍ମ, ସଂପ୍ରଦାୟ ସମନ୍ୱୟାତ୍ମକ ଉପାସନା ପ୍ରଣାଳୀର ମାଧୁର୍ଯ୍ୟ ଭାଷ୍ୟ ମାଧମରେ ପରିବେଷଣ କରି ପ୍ରାତଃ ସ୍ମରଣୀୟ ହୋଇପାରିଛନ୍ତି । ସ୍ୱକୀୟ ରଚନାରେ ସେ ଭାରତୀୟ ଆଧାତ୍ମିକ ବିଦ୍ୟା ଓ ଦର୍ଶନକୁ ସୌରଭମୟ କରି ଜଗତ୍‌ଗୁରୁ ପଦବାଚ୍ୟ ହୋଇପାରିଛନ୍ତି । ସେହି ସୌରଭରେ ଆତ୍ମବିଭୋର ହୋଇ ପ୍ରେମାବତାର ଶ୍ରୀ ଚୈତନ୍ୟ ତାଙ୍କୁ ଗୁରୁରୂପରେ ସ୍ୱୀକାର କରିଛନ୍ତି । ଜ୍ଞାନାଲୋକ ବିଭୂଷିତ ତାଙ୍କର ଭାଷ୍ୟ ସମୂହ ସାଧନା ସମ୍ଭୂତ ଐଶୀ ବାଣୀରେ ପରିପୂର୍ଣ୍ଣ, ତାଙ୍କ ରଚନାବଳୀ ସୁବୋଧ, ଜ୍ଞାନ ଐଶ୍ୱର୍ଯ୍ୟ ପୂର୍ଣ୍ଣ, ଦାର୍ଶନିକ ଦୃଷ୍ଟିକୋଣ ସମନ୍ୱୟାତ୍ମକ ଏବଂ ଭକ୍ତି ଭଗବତ୍ - ପ୍ରୀତିରୂପା, ଯାହାର ଆଧାତ୍ମିକ ସୌନ୍ଦର୍ଯ୍ୟ ହିଁ ପରମାନନ୍ଦ । ପୂଜ୍ୟ ଶ୍ରୀଧର ବାରମ୍ବାର ପରମାନନ୍ଦ ଶବ୍ଦ ପ୍ରୟୋଗ ପୂର୍ବକ ପ୍ରଚ୍ଛନ୍ନ ମାଧୁର୍ଯ୍ୟରେ ଭାଷ୍ୟ ସମୂହଙ୍କୁ ରସାଣିତ କରି ବିଶ୍ୱ ବନ୍ଦନୀୟ ହୋଇ ପାରିଛନ୍ତି । ମାନବ ଜାତିର ଐହିକ ଓ ପାରଲୌକିକ କଲ୍ୟାଣ ନିମିତ୍ତ ଏଗୁଡ଼ିକ ହେଉଛି ଶ୍ରୀଧର ସ୍ୱାମୀଙ୍କର ଶ୍ରେଷ୍ଠ ଅବଦାନ । ତାଙ୍କର ପ୍ରତ୍ୟେକଟି କୃତି ଏକ ସ୍ୱତନ୍ତ୍ର ଦୂର ଦୃଷ୍ଟି ସଂପନ୍ନ ଉଚ୍ଚାଙ୍ଗ ଆଲୋଚନା ଆବଶ୍ୟକ କରେ ।

ସଂପ୍ରଦାୟଗତ ସଂକୀର୍ଣ୍ଣତା ଶ୍ରୀଧର ସ୍ୱାମୀଙ୍କ ହୃଦୟକୁ ସ୍ପର୍ଶ କରି ନଥିଲା । ଅଦ୍ୱୈତବାଦ, ଦ୍ୱୈତ ବାଦ ପ୍ରଭୃତି ବିଭିନ୍ନ ଧର୍ମ ଧାରାରେ ସେ ଅନୁପ୍ରାଣିତ ହୋଇଥିଲେ ମଧ ଏକ ସାର୍ବଜନୀନ ସମନ୍ୱୟାତ୍ମକ ଧର୍ମଧାରାହିଁ ତାଙ୍କର ମତ ଥିଲା, ଯାହାକି ଭାଷ୍ୟ ସମୂହରେ ସୁସ୍ପଷ୍ଟ । ତତ୍‌କାଳୀନ ଭାରତବର୍ଷରେ ଅନେକ ଧର୍ମ ସଂପ୍ରଦାୟ ସୃଷ୍ଟି ହୋଇଥିଲେ ମଧ ସେ ନିଜର ଭାଷ୍ୟର ସିଦ୍ଧାନ୍ତରେ ଏକ ସମନ୍ୱୟାତ୍ମକ ଚେତନା ସୃଷ୍ଟି କରିପାରିଥିଲେ, କୌଣସି ନିର୍ଦ୍ଦିଷ୍ଟ ସଂପ୍ରଦାୟର ମତବାଦ ଉପରେ ସୀମିତ ନରହି ସ୍ୱକୀୟ ଅର୍ନ୍ତଦୃଷ୍ଟିକୁ ସଂପ୍ରସାରିତ କରି ସେ ଉଚ୍ଚକୋଟୀର ଭାଷ୍ୟ ରଚନା କରି ପାରିଥିଲେ । ଭାରତୀୟ ସଂସ୍କୃତିର

ସମନ୍ୱୟାତ୍ମକ ସାମଗ୍ରିକ ଚେତନା ତାଙ୍କ ଭାଷ୍ୟ ସମୂହରେ ସାକାର ହୋଇଉଠିଛି । ଶ୍ରୀଧର ସ୍ୱାମୀଙ୍କର ଦାର୍ଶନିକ ତତ୍ତ୍ୱ ଅତି ସରଳ । ତାଙ୍କ ମତରେ ବେଦ ନିରୂପିତ ଶ୍ରେୟବସ୍ତୁ ଭକ୍ତିକୁ ପରିତ୍ୟାଗ କରି କେବଳ ଜ୍ଞାନ ନିମିତ୍ତ ଯତ୍ନବାନ ହେଲେ ଦୁଃଖହିଁ ସାର ହୋଇଥାଏ । ହରିଭକ୍ତି ବିନା ବ୍ରହ୍ମଜ୍ଞାନ ଫଳପ୍ରଦ ହୁଏନାହିଁ । ଭଗବତ୍ ପ୍ରାପ୍ତି ନିମିତ୍ତ ସେ ଭକ୍ତିର ଉତ୍କର୍ଷତା ସାଧନାରେ ଉପଲବ୍ଧି କରିଥିଲେ । ତାଙ୍କର ସିଦ୍ଧାନ୍ତ ହେଉଛି ଯେ କେହି ତପକରୁ ପର୍ବତରୁ ଗର୍ତ୍ତକୁ ପତିତ ହେଉ, ତୀର୍ଥରେ ଭ୍ରମଣ କରୁ, ଅନେକ ଶାସ୍ତ୍ରଅଭ୍ୟାସ କରୁ, ଯାଗ ଯଜ୍ଞାଦି କରୁ ଅଥବା ତର୍କ ଦ୍ୱାରା ବିବାଦ କରୁ, କିନ୍ତୁ ହରିଙ୍କ କୃପାବିନା ମୃତ୍ୟୁକୁ ଲଂଘନ କରି ପାରିବ ଶ୍ରୀଧର ସ୍ୱାମୀଙ୍କ ଦୃଷ୍ଟିକୋଣ ହେଉଛି ଧର୍ମହିଁ ମାନବୋଚିତ କର୍ତ୍ତବ୍ୟ, ଯାହାଦ୍ୱାରା ସାର୍ବଜନୀନ ଏକତ୍ୱବୋଧ ଓ ଆନନ୍ଦ ସୃଷ୍ଟି ହୋଇଥାଏ । ତେଣୁ ସ୍ୱକୀୟ ଅଲୌକିକ ଲେଖନୀ ଚାଳନା ଦ୍ୱାରା ଧର୍ମକ୍ଷେତ୍ରରେ ସମନ୍ୱୟ ସ୍ଥାପନର ସୁର୍ଷମ ଚିତ୍ର ଅଙ୍କନ କରି ସେ ପ୍ରାତଃ ସ୍ମରଣୀୟହୋଇ ଯାଇଛନ୍ତି । ସମନ୍ୱୟାତ୍ମକ ଧର୍ମ ଅବଲମ୍ବନ ପୂର୍ବକ ନିଷ୍କାମ କର୍ମ ଦ୍ୱାରା ସାଧନ ମାର୍ଗ ଆରମ୍ଭ କରି ଶରଣା ଗତିରେ ଈଶ୍ୱର ଉପଲବ୍ଧି ନିମିତ୍ତ ସେ ନିଜର ରଚନା ମାଧ୍ୟମରେ ଅଖିଳ ବିଶ୍ୱକୁ ନିବେଦନ କରିଅଛନ୍ତି । ତାଙ୍କର ମତ ହେଉଛି ନିର୍ମଳ ଭକ୍ତି ଉଦୟ ହେବା ପରେ ଜୀବ ପରଜ୍ଞାନର ଅଧିକାରୀ ହୁଏ, ଯଦ୍ୱାରା ସେ ଭଗବାନଙ୍କର ସ୍ୱରୂପ, ସ୍ୱଭାବ, ବିଭୂତି ଓ ଗୁଣମାନଙ୍କୁ ଯଥାର୍ଥ ରୂପେ ଉପଲବ୍ଧି କରିପାରେ । ସାଧନାର ପ୍ରଥମ ପର୍ଯ୍ୟାୟରେ ପୂଣ୍ୟପୀଠ କପିଳାସରେ ଶ୍ରୀଧର ହିଁ ସମନ୍ୱୟ ଚେତନାରେ ଉଦ୍‌ବୁଦ୍ଧ ହୋଇଥିଲେ । ଶ୍ରୀଧର ସ୍ୱାମୀ କପିଳାସ ପୀଠରେ ବିରାଜିତା ତନ୍ତ୍ରର ପରମାରାଧ୍ୟା ରାଜରାଜେଶ୍ୱରୀ ପାର୍ବତୀଙ୍କ ଦକ୍ଷିଣ ପାର୍ଶ୍ୱରେ ବୈଷ୍ଣବ ତନ୍ତ୍ରର ପରମାରାଧ୍ୟ ନୃସିଂହଙ୍କୁ ସ୍ଥାପନା ପୂର୍ବକ ବୈଷ୍ଣବ ଓ ଶାକ୍ତଙ୍କ ମଧ୍ୟରେ ଅପୂର୍ବ ସମନ୍ୱୟ ସୃଷ୍ଟି କରିପାରିଥିଲେ । ସ୍ୱଗୁରୁଦେବଙ୍କ ପ୍ରତିଷ୍ଠିତ ବ୍ରହ୍ମଚାରୀମଠରେ ମଧ୍ୟ ଏକ ଆସ୍ଥାନରେ ପରମ ବୈଷ୍ଣବୀ ଭୁବନେଶ୍ୱରୀ ଓ ଗିରିଧାରୀଙ୍କ ବିଗ୍ରହ ଉପାସନା ମାଧ୍ୟମରେ ସେ ପରମାନନ୍ଦ ଲାଭ କରୁଥିଲେ ।ଏ ଅବଧି ସେହି ପରଂପରା କ୍ରମେ କପିଳାସ ପୀଠସ୍ଥିତ ବ୍ରହ୍ମଚାରୀ ମଠରେ ଉପାସନା ହୋଇ ଆସୁଛି । ଏହି ପବିତ୍ର ପୀଠରେ ଶ୍ରୀଧର ସ୍ୱାମୀ ସମନ୍ୱୟାତ୍ମକ ଉପାସନା ପ୍ରଣାଳୀ ପ୍ରବର୍ତ୍ତନ କରାଇ ଶୈବ, ବୈଷ୍ଣବ, ଶାକ୍ତ, ବୈଦିକ, ବୌଦ୍ଧ ଓ ଶାବର ସଂସ୍କୃତିର ମହାମିଳନ ସୃଷ୍ଟି କରି ପାରିଥିଲେ । ଶ୍ରୀଧର ସ୍ୱାମୀ ଅଦ୍ୱୈତ ପରଂପରାର ଶିଷ୍ୟ, ମଧ୍ୱମତରେ ଅନୁପ୍ରାଣିତ ଓ ନିମ୍ବାର୍କ ମତରେ ପ୍ରଭାବିତ ହୋଇଥିଲେ ମଧ୍ୟ ବସ୍ତୁତଃ ଭକ୍ତି ପ୍ରଧାନ ଥିଲେ । ତାଙ୍କର ଅନ୍ତଶ୍ଚେତନା ବୈଷ୍ଣବ ଭାବାପନ୍ନ ଥିଲା । ବିଭିନ୍ନ ବୈଷ୍ଣବ ସଂପ୍ରଦାୟ ମଧ୍ୟରେ ସମନ୍ୱୟ ସ୍ଥାପନା ନିମିତ୍ତ ସେ ବଳିଷ୍ଠ ପଦକ୍ଷେପ ନେଇଥିଲେ ।

ଏହି ଦୃଷ୍ଟିକୋଣରୁ ତାଙ୍କ ରଚିତ ଭାଷ୍ୟ ସମୂହ ଅଗଣିତ ବୈଷ୍ଣବଙ୍କର ଗଳାର ହାର ହୋଇ ଯାଇଥିଲା । ମୋଟ ଉପରେ କହିବାକୁ ଗଲେ ତାଙ୍କର ସମନ୍ୱୟାତ୍ମକ ଦାର୍ଶନିକ ଅବଦାନ ଅବିସ୍ମରଣୀୟ ।

ବିଶ୍ୱର ଆଧ୍ୟାତ୍ମିକ ଇତିହାସରେ ପୂଜ୍ୟ ଶ୍ରୀଧର ସ୍ୱାମୀଙ୍କ ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ । ସ୍ୱକୀୟ ଅମର ଲେଖନୀରେ ଶ୍ରଦ୍ଧା ପ୍ରସୂତ ଅନ୍ତର୍ଜ୍ଞାନ ସମନ୍ୱୟାତ୍ମକ ଶୈଳୀରେ ପ୍ରତିପାଦନ କରି ସେ ବିଶ୍ୱବନ୍ଦନୀୟ ହୋଇ ପାରିଛନ୍ତି । ପ୍ରକୃତ ପକ୍ଷେ ତାଙ୍କର କୃତି ହେଉଛି ଭକ୍ତି, ଜ୍ଞାନ ଓ ବୈରାଗ୍ୟର ତ୍ରିବେଣୀ ତୀର୍ଥ । ସେ ଭାରତୀୟ ସଂସ୍କୃତିର ଅମୂଲ୍ୟ ବିଭବ ଗୀତା ଭାଗବତ ପ୍ରଭୃତି ଦୁର୍ଲଭ ଶାସ୍ତ୍ରସମୂହକୁ ମନ୍ଥନ କରି ସମନ୍ୱୟ ଚେତନାର ଲହୁଣୀ ରୂପେ ତତ୍‌କୃତ ଭାଷ୍ୟରୂପେ ମାନବ ଜାତିକୁ ଉପହାର ଦେଇ ଯାଇଛନ୍ତି । ତାଙ୍କ ଭାଷ୍ୟ ସମୂହରେ ଧର୍ମ ଓ ଆଧ୍ୟାତ୍ମିକ ଚେତନାର ଉଚ୍ଚାତି ଉଚ୍ଚ ସିଦ୍ଧାନ୍ତ ସରଳ ତଥା ସମନ୍ୱୟ ଧାରାରେ ବ୍ୟକ୍ତ । ତାଙ୍କର ଜାଜ୍ୱଲ୍ୟମାନକୃତି ତାଙ୍କୁ ଅନନ୍ତ କାଳ ନିମିତ୍ତ ବଞ୍ଚାଇ ରଖିବ । ଦୁଃଖର ବିଷୟ ଏହି ପରମପୂଜ୍ୟ ମହାତ୍ମାଙ୍କୁ ଓଡ଼ିଆଜାତି ଏ ଯାବତ୍ ଯଥୋଚିତ ଶ୍ରଦ୍ଧା ଓ ସମ୍ମାନ ପ୍ରଦର୍ଶନ କରି ପାରିନାହିଁ । ତାଙ୍କର ସାଧନା ପୀଠ ବ୍ରହ୍ମଚାରୀ ମଠ ଓ ତାହାର ସ୍ଥାବରାସ୍ଥାବର ସଂପତ୍ତି ଢେଙ୍କାନାଳ ଜିଲ୍ଲାପାଳଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ରହିଅଛି । ନିକଟରେ କପିଳାସ ପାଦଦେଶସ୍ଥିତ ସଡ଼ଙ୍ଗୀ ଗ୍ରାମଠାରେ ତାଙ୍କର ସ୍ମୃତିରକ୍ଷା ଉଦ୍ଦେଶ୍ୟରେ ସ୍ଥାନୀୟ ଜନସାଧାରଣଙ୍କ ଆନୁକୂଲ୍ୟରେ ଶ୍ରୀଧର ସ୍ୱାମୀ ମହାବିଦ୍ୟାଳୟ ପ୍ରତିଷ୍ଠା କରାଯାଇଛି । ସେହି ପ୍ରଜ୍ଞାପୁରୁଷଙ୍କର ଜନ୍ମସ୍ଥାନ ମରେଇଗାଁ ବା ମୟୂର ଗ୍ରାମ ଠାରେ ଏକ ଶ୍ରୀଧର ସ୍ୱାମୀ ସ୍ମୃତି ପରିଷଦ ଗଠନ କରାଯାଇଛି । କିନ୍ତୁ ତାଙ୍କର ଭାଷ୍ୟ ସମୂହର ଶୁଦ୍ଧ ସଙ୍କଳନ ତଥା ତାଙ୍କ ଜୀବନୀ ଓ ଦର୍ଶନ ସଂପର୍କୀୟ ଗବେଷଣାଲବ୍ଧ ପ୍ରାମାଣିକ ତଥ୍ୟ ସମ୍ବଳିତ ପୁସ୍ତକ ଏ ଯାବତ୍ ପ୍ରକାଶ ପାଇନାହିଁ । ଶ୍ରୀଧର ସ୍ୱାମୀଙ୍କର ରାଜ୍ୟସ୍ତରୀୟ ଜୟନ୍ତୀ ଓ ମହାସମାଧି ପାଳନ ନହେବା ଅତ୍ୟନ୍ତ ପରିତାର ବିଷୟ । ସେ ଓଡ଼ିଶା ତଥା ଭାରତର ଗୌରବ ଏ କଥା ଅନେକ ଓଡିଆ ଜାଣନ୍ତି ନାହିଁ । ତାଙ୍କ ଜୀବନୀ ଓ ଦର୍ଶନ ଓଡିଆ ଜାତିର ପ୍ରେରଣାର ଚିରନ୍ତନ ଉତ୍ସ ସ୍ୱରୂପ । ମାନବର ଅନ୍ତର୍ନିହିତ ମହତ୍ତ୍ୱ, ମହାଭାବ ଓ ଐଶ୍ୱରିକତାର ଜାଗରଣ ନିମିତ୍ତ ଶୀଧର ସ୍ୱାମୀଙ୍କ ଭାଷ୍ୟ ସମୂହ ହିଁ ଦିଗ୍‌ଦର୍ଶକ । ମହାତ୍ମା ବେଦ ବ୍ୟାସଙ୍କ ଭାଷାରେ

ଶ୍ରୁତିବିଭିନ୍ନା ସ୍ମୃତ୍ୟୋପି ଭିନ୍ନା

ତଥା ମୁନିନାମ୍ ମତୟୋପି ଭିନ୍ନା

ଧର୍ମସ୍ୟ ତତ୍ତ୍ୱମ୍ ନିହିତମ୍ ଗୁହାୟାମ୍

ମହାଜନେ ଯେନ ଗତଃ ସ ପନ୍ଥା ।

ଏହି ପରିପ୍ରେକ୍ଷୀରେ ଅଖିଳବିଶ୍ୱ ପୂଜ୍ୟ ଶାଧର ସ୍ୱାମୀଙ୍କ ସମନ୍ୱୟ ଦର୍ଶନରେ ଅନୁପ୍ରାଣିତ ହେଲେ ତାହାହିଁ ହେବ ତାଙ୍କ ଶ୍ରୀଚରଣରେ ସର୍ବଶ୍ରେଷ୍ଠ ପୁଷ୍ପାଞ୍ଜଳି ।

ବଡପଣ୍ଡା ସାହି

ଢେଙ୍କାନାଳ,୭୫୯୦୦୧ ।

- ସହାୟକ ଗ୍ରନ୍ଥସୂଚୀ -


୧) ଭାବାର୍ଥ ଦୀପିକା - ଶ୍ରୀଧର ସ୍ୱାମୀ ।

୨) ସୁବୋଧିନୀ ଟୀକା - ଶ୍ରୀଧର ସ୍ୱାମୀ ।

୩) ଓଡିଶା ଇତିହାସ - ଡଃ ହରେକୃଷ୍ଣ ମହତାବ ।

୪) ଢେଙ୍କାନାଳ ଇତିହାସ - ରାମ ଚନ୍ଦ୍ର ନନ୍ଦ ଭକ୍ତି ବିନୋଦ ।

୫) ଶମ୍ଭୁକ୍ଷେତ୍ର କପିଳାସ ଓ ଶ୍ରୀଧର ସ୍ୱାମୀ -

ଶ୍ରୀ ଗୌରେନ୍ଦ୍ର ପ୍ରତାପ ସିଂହଦେଓ ।

କବିଭୂଷଣ ରାଜକିଶୋର ପଟ୍ଟନାୟକ ।

ଶ୍ରୀ ଗଣେଶ ପ୍ରତାପ ସିଂହଦେଓ ।

୬) ଭାରତୀୟ ଦର୍ଶନ - ବଳଦେବ ଉପାଧ୍ୟାୟ ।

୭) ଶ୍ରୀଳ ଭକ୍ତ ଚରଣ ଦାସ - ଅଧ୍ୟାପକ ଡଃ ଫକୀର ମୋହନ ଦାସ ।

୮) Studies on Orissa History, Archaeology and Archives - P. Acharya

୯) Orissa Historical Research - P.Acharya.

୧୦) History Of Orissa - Dr. K. C. Panigrahi.

୧୧) The History of Medieval Vaishnavison in Orissa - Pravat Mukharjee.


••••

# ଆଚାର୍ଯ୍ୟ ଶ୍ରୀଧର ସ୍ୱାମୀ ଓ ଶ୍ରୀ ଜଗନ୍ନାଥ

**• ଅଧ୍ୟାପକ ଡକ୍ଟର ବ୍ରଜ କିଶୋର ସାହୁ**

(ଶ୍ରୀ ଜଗନ୍ନାଥଙ୍କ ଆଦିମ ରୂପାନ୍ତର ନୃସିଂହ ବୋଲି କୁହାଯାଏ ଏବଂ ମନ୍ତ୍ରରେ ବିଭିନ୍ନ ସମୟରେ ଜଗନ୍ନାଥଙ୍କୁ ଆରାଧନା କରାଯାଏ । ଉତ୍କଳୀୟ ସନ୍ତାନ ପ୍ରଖ୍ୟାତ ଯଶା ଶ୍ରୀଧର ସ୍ୱାମୀ, ''ବିଦ୍ୟା ଭାଗବତାବଧି''ର କେବଳ ସର୍ବ ଶ୍ରେଷ୍ଠ ଟୀକାକାର ନୁହନ୍ତି, ତାଙ୍କର ଭାଗବତ ଟୀକାକୁ ସ୍ୱୟଂ ଜଗନ୍ନାଥ ଗ୍ରହଣ କରିଥିଲେ ବୋଲି କଥିତ ଅଛି । ଡକ୍ଟର ବ୍ରଜକିଶୋର ସାହୁ ସ୍ୱାମୀଜୀଙ୍କ ଖଣ୍ଡାଦାହର ଜୀବନୀ ସହିତ ଜଗନ୍ନାଥଙ୍କର ସେ କିଭଳି ପରମଭକ୍ତ ଥିଲେ, ଏଥିରେ ସଂକ୍ଷେପରେ ଉଲ୍ଲେଖ କରିଅଛନ୍ତି ।)

ଉତ୍କଳର ଜଣେ ଅଦ୍ୱୈତବାଦୀ ଜ୍ଞାନୀ ପଣ୍ଡିତ ସର୍ବଶ୍ରେଷ୍ଠ ଭକ୍ତି ଗ୍ରନ୍ଥ ଶ୍ରୀମଭାଗବତ 'ଭାବାର୍ଥ ଦୀପିକା' ନାମକ ଗୋଟିଏ ଟୀକା ରଚନା କରିଛନ୍ତି । ତାହା ପୁଣି ଭାରତର ସବୁ ପଣ୍ଡିତଙ୍କ ଦ୍ୱରା ଅତି ଆଦରଣୀୟ ତଥା ନିତ୍ୟ ପଠନୀୟ ଗ୍ରନ୍ଥ ଭାବରେ ଗୃହୀତ ହୋଇଯାଇଛି । ଜଣେ ଅଦ୍ୱୈତବାଦୀ ଜ୍ଞାନୀ ଭକ୍ତି ଗ୍ରନ୍ଥ ଭାଗବତର ବ୍ୟାଖ୍ୟା କିପରି ନିପୁଣ ଭାବରେ ସମ୍ପନ୍ନ କରିପାରିବେ ଏହାହିଁ ଥିଲା ଶ୍ରୀକ୍ଷେତ୍ରବାସୀ ପଣ୍ଡିତମାନଙ୍କର ପରମ ବିସ୍ମୟ । ସେମାନେ ସହଜରେ 'ଭାବାର୍ଥ ଦୀପିକା'କୁ ପ୍ରାମାଣିକ ଗ୍ରନ୍ଥଭାବରେ ଗ୍ରହଣ କରିପାରୁନଥିଲେ ।

ଜଣେ ଜ୍ଞାନୀ ଜ୍ଞାନକୁ ସାଧନାର ଶ୍ରେଷ୍ଠ ମାର୍ଗ ବୋଲି ପ୍ରମାଣ କରିବା ସ୍ୱାଭାବିକ । କିନ୍ତୁ ଭାଗବତରେ ପ୍ରଦର୍ଶିତ ହୋଇଛି ଯେ ଭଗବାନଙ୍କୁ ଲାଭ କରିବା ପାଇଁ ଭକ୍ତି ହିଁ ସର୍ବଶ୍ରେଷ୍ଠ ମାଧ୍ୟମ । ତେଣୁ ଭାଗବତରେ ସଂପୂର୍ଣ୍ଣ ବ୍ୟାଖ୍ୟା ଜଣେ ଜ୍ଞାନୀଙ୍କ ଦ୍ୱାରା ସମ୍ପନ୍ନ ହେବା କେବେ ହେଲେ ସମ୍ଭବପର ନୁହେଁ ।

ସେଥିପାଇଁ ଆଜି ଶ୍ରୀକ୍ଷେତ୍ରରେ ଚହଳ ପଡ଼ି ଯାଇଛି । ଶ୍ରୀକ୍ଷେତ୍ରବାସୀ ପଣ୍ଡିତଗଣ 'ଭାବାର୍ଥ ଦୀପିକା' କୁ ସହଜରେ ଗ୍ରହଣ କରିପାରୁ ନାହାନ୍ତି । ଯଦି ଭାଗବତରେ ସମସ୍ତ ଟୀକା ମଧ୍ୟରେ 'ଭାବାର୍ଥ ଦୀପିକା'' ସର୍ବଶ୍ରେଷ୍ଠ ଟୀକା ଭାବେ ପ୍ରମାଣିତ ହୋଇ ପାରିବ, ତେବେ ସେମାନେ ଆଦରରେ ତାହାକୁ ଗ୍ରହଣ କରିବେ । କିନ୍ତୁ ପ୍ରମାଣିତ ହେବ କିପରି ?

ମନରୁ ସମସ୍ତ ସଂଶୟ ଛିନ୍ନ କରିବା ପାଇଁ ଜଗନ୍ନାଥ ହିଁ ଏକମାତ୍ର ଆଧାର । ତେଣୁ ଶ୍ରୀକ୍ଷେତ୍ରରେ ପଣ୍ଡିତ ମଣ୍ଡଳୀ ମନସ୍ଥ କଲେ, ସମସ୍ତେ ଏକ ଲୟରେ

ଜଗନ୍ନାଥଙ୍କୁ ପ୍ରାର୍ଥନା କରିବେ ଏବଂ ଜଗନ୍ନାଥଙ୍କ ନିକଟରେ ଉପସ୍ଥାପିତ କରିବେ ଶ୍ରୀମଦ୍ ଭାଗବତର ଟୀକା ସମୂହ । ଯେଉଁ ଟୀକାକୁ ଜଗନ୍ନାଥ ସ୍ୱୟଂ ହୃଦୟରେ ଗ୍ରହଣ କରିବେ, ତାହାହିଁ ହେବ ସର୍ବଶ୍ରେଷ୍ଠ ଟୀକା ।

ଏହି ନିଷ୍ପତ୍ତିଅନୁସାରେ ଶ୍ରୀକ୍ଷେତ୍ରରେ ଏକ ମହୋତ୍ସବର ଆୟୋଜନ ହେଲା । ଭାରତର ବିଭିନ୍ନ ପ୍ରାନ୍ତରୁ ପଣ୍ଡିତ ମଣ୍ଡଳୀ ନିମନ୍ତ୍ରିତ ହୋଇ ଆସିଲେ । ଭାଗବତ ଉପରେ ଯେତେ ପ୍ରକାର ଟୀକା ରଚିତ ହୋଇଥିଲା, ସେ ସମସ୍ତ ଟୀକାକୁ ଜଗନ୍ନାଥଙ୍କ ସମ୍ମୁଖ ଭାଗରେ ଉପସ୍ଥାପିତ କରାଗଲା । ବିଶେଷ ପୂଜା ଅର୍ଚ୍ଚନା ପରେ ଜଗନ୍ନାଥଙ୍କୁ ନିବେଦନ କରାଗଲା ତାଙ୍କର ପ୍ରିୟ ଗ୍ରନ୍ଥ ହୃଦୟରେ ଲଗାଇବା ପାଇଁ ।

ସନ୍ଦେହାକୁଳ ଚିତ୍ତରେ 'ଭାବାର୍ଥ ଦୀପିକା'କାର ମଧ୍ୟ ମନ୍ଦିରରେ ପ୍ରବେଶ କଲେ ।

'ଭାବାର୍ଥ ଦୀପିକା'କାର ଜଣେ ସାଧାରଣ ପଣ୍ଡିତ ନଥିଲେ । ସେ ଥିଲେ ଅଦ୍ୱିତୀୟ ଜ୍ଞାନାଧିକାରୀ ଆଚାର୍ଯ୍ୟ ଶ୍ରୀଧର ସ୍ୱାମୀ ।

ଓଡ଼ିଶାର ବାଲେଶ୍ୱର ଜିଲ୍ଲା ଅନ୍ତର୍ଗତ ସୁପ୍ରସିଦ୍ଧ କ୍ଷୀରଚୋରା ଗୋପୀନାଥଙ୍କ ଅବସ୍ଥିତି ସ୍ଥାନ ରେମୁଣାଠାରୁ ତିନିମାଇଲ ଦୂରରେ ସୋନ ଓ ବଳଙ୍ଗ ନଦୀ ଅନ୍ତର୍ଗତ ମରେଇ ଗ୍ରାମରେ ପ୍ରଖ୍ୟାତଯଶା ଶ୍ରୀଧର ସ୍ୱାମୀ ଜନ୍ମ ଗ୍ରହଣ କରିଥିଲେ । ୧୩୦୦ - ୧୪୦୦ ଖ୍ରୀଷ୍ଟାବ୍ଦର ପ୍ରଥମ ପାଦରେ ତାଙ୍କର ଜନ୍ମ ସମୟ ନିରୂପିତ ହୋଇଥାଏ ।

ପ୍ରତ୍ୟେକ ମହାପୁରୁଷଙ୍କ ସମ୍ପର୍କରେ ନାନା ପ୍ରକାର କିମ୍ବଦନ୍ତୀ ଶୁଣିବାକୁ ମିଳେ । ଏହି କିମ୍ବଦନ୍ତୀ ସବୁର ପ୍ରାମାଣିକ ସତ୍ୟତା କିଛି ନଥିଲେ ମଧ୍ୟ ଜନ ସମାଜରେ ପ୍ରଭାବ ପକାଇବାରେ ଏ ଗୁଡ଼ିକର ଯେ ଗୁରୁତ୍ୱ ରହିଛି, ଏହା ନିଃସନ୍ଦେହରେ କୁହାଯାଇପାରେ । ଗୋଟିଏ ପ୍ରଚଳିତ କିମ୍ବଦନ୍ତୀ ଅନୁସାରେ ଥରେ ଦକ୍ଷିଣ ଭାରତରେ କୌଣସି ଏକ ନଗରର ରାଜା ଓ ମନ୍ତ୍ରୀ ଭ୍ରମଣ କରୁଥିବା ସମୟରେ ଭଗବାନଙ୍କର କୃପା ଓ ପ୍ରଭାବ ସମ୍ବନ୍ଧରେ ଆଲୋଚନା କରୁଥିଲେ । ମନ୍ତ୍ରୀ କହୁଥିଲେ -''ଭଗବାନଙ୍କୁ ଉପାସନା କରି ତାଙ୍କର କୃପାବଳରେ ଅଯୋଗ୍ୟ ମଧ୍ୟ ଯୋଗ୍ୟ ହୋଇଯାଏ, କୁପାତ୍ର ମଧ୍ୟ ସତ୍ପାତ୍ର ହୋଇଯାଏ ଏବଂ ମୂର୍ଖ ମଧ୍ୟ ବିଦ୍ୱାନ୍ ହୋଇଯାଏ ।''

ସଂଯୋଗବଶତଃ କିମ୍ବା ଦୟାମୟ ଭଗବାନଙ୍କ ଇଚ୍ଛା କ୍ରମେ ରାଜା ଏହି ସମୟରେ ଦେଖିଲେ ଯେ ଗୋଟିଏ ବାଳକ ଏପରି ଏକ ପାତ୍ରରେ ତୈଳ ଧରି ଯାଉଛି, ଯାହାର ଉପଯୋଗ ସାମାନ୍ୟ ଜାଣିବା ଶୁଣିବା ବ୍ୟକ୍ତି ମଧ କରିବ ନାହିଁ । ରାଜା ମନ୍ତ୍ରୀଙ୍କୁ ପଚାରିଲେ - ''ଏହି ବାଳକ କ'ଣ କେବେ ବୁଦ୍ଧିମାନ୍ ହୋଇପାରେ ?''

ମନ୍ତ୍ରୀ ବଡ଼ ବିଶ୍ୱାସର ସହିତ କହିଲେ - ''ଭଗବାନଙ୍କ କୃପାରେ ଅବଶ୍ୟ ହୋଇପାରେ । ସଙ୍ଗେ ସଙ୍ଗେ ବାଳକକୁ ରାଜାଙ୍କ ନିକଟକୁ ଡକାଗଲା । ରାଜା ପଚାରି ବୁଝିଲେ ଯେ ସେହି ବାଳକ ଥିଲା ଗୋଟିଏ ବ୍ରାହ୍ମଣ ବାଳକ । ତାହାର ପିତା ମାତା ତାକୁ ଶିଶୁ ଅବସ୍ଥାରେ ଛାଡ଼ି ପରଲୋକ ଗମନ କରିଥିଲେ । କୌଣସି ଜଣେ ମହାତ୍ମା ତାକୁ ନୃସିଂହ ମନ୍ତ୍ର ପ୍ରଦାନ କରି ଭଗବାନଙ୍କ ଆରାଧନା କରିବାକୁ ଉପଦେଶ ଦେଇଥିଲେ । ସେ ମଧ ମହାତ୍ମାଙ୍କ ଉପଦେଶ ପାଳନ କରି ଭଗବାନଙ୍କ ଉପାସନାରେ ମନ ପ୍ରାଣ ଢାଳି ଦେଇଥିଲା । ସେହି ଅନାଥ ବାଳକର ଭକ୍ତିରେ ସନ୍ତୁଷ୍ଟ ହୋଇ ଅନାଥମାନଙ୍କର ଏକ ମାତ୍ର ନାଥ ତାହା ନିକଟରେ ପ୍ରକଟ ହୋଇଥିଲେ । ନୃସିଂହ ରୂପରେ ଦର୍ଶନ ଦେଇ ଭଗବାନ ତାକୁ ବର ଦେଇଥିଲେ -''ତୁମେ ବେଦ, ବେଦାଙ୍ଗ, ଦର୍ଶନଶାସ୍ତ୍ର ଆଦିର ସଂପୂର୍ଣ୍ଣ ଜ୍ଞାନ ଲାଭ କରିବ ଏବଂ ତୁମ ହୃଦୟରେ ମୋର ଭକ୍ତି ସର୍ବଦା ନିବାସ କରିବ ।''

ଏହି ବାଳକ ଆଉ କେହି ନଥିଲା, ସେ ଥିଲା ଚରିତ୍ର ନାୟକ ଆଚାର୍ଯ୍ୟ ଶ୍ରୀଧର ସ୍ୱାମୀ ।

ଶ୍ରୀଧର ସ୍ୱାମୀଙ୍କର ବିଦ୍ୱତା ସଂପର୍କରେ କୌଣସି ପ୍ରଶ୍ନ କରିବାର ନଥିଲା । ଭଗବାନଙ୍କ କୃପାରୁ ସେ ଯେଉଁ ବିଦ୍ୟା ଲାଭ କରିଥିଲେ କେବଳ ଅଧ୍ୟୟନ ଦ୍ୱାରା ସେପରି ବିଦ୍ୟା ଲାଭ କରିବା ସମ୍ଭବପର ନୁହେଁ । ସେଥିପାଇଁ ବଡ଼ବଡ଼ ବିଦ୍ୱାନଗଣ ତାଙ୍କୁ ସମ୍ମାନ କରୁଥିଲେ । ତାଙ୍କର ଧନର କୌଣସି ଅଭାବ ନଥିଲା । ସେ ବିବାହ କରିଥିଲେ, ରୂପବତୀ ଓ ଗୁଣବତୀ ପତ୍ନୀ ଲାଭ କରିଥିଲେ । *(କଲ୍ୟାଣ (ହିନ୍ଦି); ଭକ୍ତ ଚରିତାଙ୍କ; ଜାନୁୟାରୀ ୧୯୫୨) କିନ୍ତୁ ଭଗବାନଙ୍କ ଭକ୍ତ କେବେହେଲେ ବିଷୟ ପ୍ରତି ଆସକ୍ତ ହୁଅନ୍ତି ନାହିଁ । ଭଗବାନ ମଧ ତାଙ୍କର ଭକ୍ତଙ୍କୁ ବିଷୟାସକ୍ତରୁ ମୁକ୍ତ କରିବା ପାଇଁ ବାତାବରଣ ମାନ ସୃଷ୍ଟି କରିଥାନ୍ତି । ଗୃହସ୍ଥ ହୋଇ ମଧ ଶ୍ରୀଧର ସ୍ୱାମୀଙ୍କ ମନ ଗୃହକର୍ମରେ ଜଡ଼ିତ ହେଉନଥିଲା । ସମସ୍ତ ଜଞ୍ଜାଳରୁ ମୁକ୍ତ ହୋଇ ସେ କେବଳ ଭଗବାନଙ୍କର ଭଜନ କରିବା ପାଇଁ ବ୍ୟାକୁଳ ହେଉଥିଲେ । ତାଙ୍କର ପତ୍ନୀ ଗର୍ଭବତୀ ଥିଲେ ଏବଂ ପ୍ରଥମ ସନ୍ତାନଙ୍କୁ

ଜନ୍ମ ଦେଇ ପରଲୋକବାସୀ ହେଲେ । କିନ୍ତୁ ସ୍ତ୍ରୀଙ୍କର ମୃତ୍ୟୁରେ ସେ ଦୁଃଖିତ ହୋଇ ନଥିଲେ । ଏହାକୁ ସେ ପ୍ରଭୁଙ୍କର କୃପା ବୋଲି ମନେ କରିଥିଲେ । କିନ୍ତୁ ନବଜାତ ବାଳକର ପାଳନ ପୋଷଣ ପାଇଁ କ'ଣ କରାଯାଇ ପାରିବ, ସେଥିପାଇଁ ସେ ଚିନ୍ତିତ ହୋଇ ପଡ଼ିଲେ । ଶେଷରେ ସେ ଚିନ୍ତା କଲେ - "ମୋହ ବଶରୁ ମୁଁ ନିଜକୁ ଏହି ବାଳକର ପାଳନ ପୋଷଣକାରୀ ବୋଲି ମନେ କରୁଛି । ପ୍ରକୃତରେ ଜୀବ ନିଜର କର୍ମ ଅନୁସାରେ ଜନ୍ମ ଗ୍ରହଣ କରେ ଏବଂ କର୍ମଫଳ ଭୋଗ କରେ । ବିଶ୍ୱମ୍ଭର ଭଗବାନ ହିଁ ସମସ୍ତଙ୍କର ପାଳନ ଓ ରକ୍ଷଣ କରିଥାନ୍ତି ।"

ଏହା ଚିନ୍ତା କରି ଶ୍ରୀଧର ସ୍ୱାମୀ ଶିଶୁଟିକୁ ଭଗବାନଙ୍କ ଦୟା ଉପରେ ଛାଡ଼ି ଦେଇ ଭଜନ ନିମିତ୍ତ ଗୃହ ପରିତ୍ୟାଗ କରିବାକୁ ଉଦ୍ୟମ ହେଲେ, କିନ୍ତୁ ଶିଶୁଟିର ପାଳନ ପୋଷଣ ପାଇଁ ତାଙ୍କ ମନ ତଥାପି ବ୍ୟାକୁଳ ହେଉଥିଲା । ଲୀଳାମୟ ପ୍ରଭୁଙ୍କର ଅଦ୍ଭୁତ ଲୀଳା କ୍ରମେ ଠିକ୍ ସେହି ସମୟରେ ଘରର ଛାତରୁ ଗୋଟିଏ ପକ୍ଷୀର ଅଣ୍ଡାତଳେ ପଡ଼ିଗଲା ଏବଂ ସଙ୍ଗେ ସଙ୍ଗେ ଫାଟିଗଲା । ଅଣ୍ଡାଟି ଶିଶୁ ସୃଷ୍ଟି ପାଇଁ ଉପଯୁକ୍ତ ହୋଇଥିବାରୁ ସେଥିରୁ ଗୋଟିଏ ଶିଶୁ ପକ୍ଷୀ ବହିର୍ଗତ ହୋଇ ମୁହଁ ହଲାଇବାକୁ ଲାଗିଲା । ଶ୍ରୀଧର ସ୍ୱାମୀ ଏହା ଦେଖି ମନେ କଲେ, "ଶିଶୁ ପକ୍ଷୀଟି ନିଶ୍ଚୟ ମରିଯିବ । ଠିକ୍ ସେହି ସମୟରେ ଗୋଟିଏ ପୋକ ଉଡ଼ିଆସି ଫାଟି ଯାଇଥିବା ଅଣ୍ଡାଲାଳରେ ବସି ପଡ଼ିଲା ଏବଂ ସେଥିରେ ଲାଗିକରି ରହିଗଲା । ଶିଶୁ ପକ୍ଷୀଟି ଅବିଳମ୍ବେ ସେହି ପୋକଟିକୁ ଖାଇ ପକାଇଲା । ଭଗବାନଙ୍କର ଏହି ଲୀଳା ଦେଖି ଶ୍ରୀଧର ସ୍ୱାମୀଙ୍କ ହୃଦୟ ଅସୀମ ଉତ୍ସାହରେ ପୂର୍ଣ୍ଣ ହୋଇଗଲା । ସେ ନିଜର ନବଜାତ ସନ୍ତାନକୁ ପରିତ୍ୟାଗ କରି କପିଳାସ କ୍ଷେତ୍ରକୁ ଗମନ କଲେ ।
* (କଲ୍ୟାଣ (ହିନ୍ଦୀ); ଭକ୍ତ ଚରିତାଙ୍କ; ଜାନୁୟାରୀ ୧୯୫୨)

ପରବର୍ତ୍ତୀ କାଳରେ ଏହି ଶ୍ରୀଧର ସ୍ୱାମୀ ନିଜର ଜ୍ଞାନ, ବିଦ୍ୱତ୍ତା ଓ ସାଧନ ବଳରେ ପୁରୀ ଗୋବର୍ଦ୍ଧନ ମଠରେ ଦଶମ ଶଙ୍କରାଚାର୍ଯ୍ୟ ଭାବରେ ଅଧିଷ୍ଠିତ ହୋଇଥିଲେ । ବସ୍ତୁତଃ ବ୍ରହ୍ମଚାରୀ ସନ୍ନ୍ୟାସୀମାନେ ହିଁ ଶଙ୍କରାଚାର୍ଯ୍ୟଙ୍କ ପ୍ରତିଷ୍ଠିତ ମଠମାନଙ୍କର ପାରମ୍ପରିକ ମହନ୍ତ; ବିବାହିତ ମାନେ ନୁହଁନ୍ତି । ଏଣୁ ଶ୍ରୀଧର ସ୍ୱାମୀ ବିବାହ କରିଥିବା ଏବଂ ତାଙ୍କର ପୁତ୍ର ଥିବା କଥା କପୋଳ କଳ୍ପିତ ପରି ମନେ ହୁଏ । * (ଶମ୍ଭୁକ୍ଷେତ୍ର କପିଳାସ ଓ ଶ୍ରୀଧର ସ୍ୱାମୀ; ପୃ - ୩୮)

କପିଳାସ କ୍ଷେତ୍ର ଭଗବାନ ଶ୍ରୀ ଚନ୍ଦ୍ରଶେଖରଙ୍କ ମନ୍ଦିର ପାଇଁ ସୁପ୍ରସିଦ୍ଧ । ଓଡ଼ିଶାର ଗଜପତି ମହାରାଜା ପ୍ରତାପ ଭାନୁଦେବ କପିଳାସର ତତ୍ତ୍ୱାବଧାରକ ରୂପେ ପୁରୀ ଗୋବର୍ଦ୍ଧନ ମଠର ଶିଷ୍ୟ ଶ୍ରୀ ରାମକୃଷ୍ଣାନନ୍ଦ ସ୍ୱାମୀଙ୍କୁ ଏଠାକୁ

ଅଣାଇଥିଲେ । ରାମକୃଷ୍ଣାନନ୍ଦ କପିଳାସରେ ଅବସ୍ଥାନ କରି ଶ୍ରୀ ଚନ୍ଦ୍ରଶେଖରଙ୍କର ସେବା ପୂଜା ନିୟନ୍ତ୍ରଣ କରୁଥିଲେ । ଗୋବର୍ଦ୍ଧନ ମଠର ଆମ୍ନାୟରେ ମଧ୍ୟ ରାମକୃଷ୍ଣାନନ୍ଦଙ୍କର ନାମୋଲ୍ଲେଖ ପରିଲକ୍ଷିତ ହୁଏ । ରାମକୃଷ୍ଣାନନ୍ଦ ଶଙ୍କରାଚାର୍ଯ୍ୟଙ୍କର ପରମ୍ପରା ଅନୁସାରେ ଦଣ୍ଡୀ ସନ୍ନ୍ୟାସୀ ଥିବାରୁ ସେ କପିଳାସର ଯେଉଁ ମଠରେ ଅବସ୍ଥାନ କରୁଥିଲେ ସେହି ମଠର ନାମ ଦଣ୍ଡୀସ୍ୱାମୀ ମଠ ରଖାଯାଇଥିଲା । ଶ୍ରୀଧର ସ୍ୱାମୀ ଗୃହ ପରିତ୍ୟାଗ କରି କପିଳାସକୁ ଆସିବା ପରେ ଏହି ଦଣ୍ଡୀ ସ୍ୱାମୀ ମଠରେ ଅବସ୍ଥାନ କରିଥିଲେ ଏବଂ ରାମକୃଷ୍ଣାନନ୍ଦ ଠାରୁ ଦୀକ୍ଷା ଗ୍ରହଣ କରି ଶ୍ରୀ ନୃସିଂହଙ୍କ ଉପାସନା ଓ କଠୋର ତପଶ୍ଚର୍ଯ୍ୟା କରି ସିଦ୍ଧି ଲାଭ କରିଥିଲେ । ଏହି ପରିପ୍ରେକ୍ଷୀରେ ମଠର ଗୁରୁ କ୍ରମାନ୍ୱୟରେ ନିମ୍ନୋକ୍ତ ଉକ୍ତି ପ୍ରଣିଧାନ ଯୋଗ୍ୟ -

"ଶ୍ରୀ ରାମକୃଷ୍ଣାନନ୍ଦୋଽଭୂତ୍,
ଶିଷ୍ୟସ୍ତସ୍ୟ ମହା ଯତିଃ ।
ସ୍ୱର ବିଜ୍ଞାନ ନୈପୁଣ୍ୟତା
ପୁଣ୍ୟଂ ତେନ ମହଦ୍ ଯଶଃ
ତଦ୍ ବେତ୍ୟ ଦଦୌ ତସ୍ମୈ
ସ୍ୱାମୀ ବର୍ଯ୍ୟାୟ ନେତୃତାମ୍ ।
ପ୍ରତାପ ଭାନୁ ନୃପତିଃ
କପିଳାସ ଶିବାଳୟେ ।
ତତ୍ ଶିଷ୍ୟୋଽଭୂତ୍ ଶ୍ରୀଧର ସ୍ୱାମୀ ପାଦଃ ।

କପିଳାସରେ ଦଣ୍ଡୀ ସ୍ୱାମୀ ମଠାଧୀଶ ଶ୍ରୀ ରାମକୃଷ୍ଣନନ୍ଦଙ୍କ ଦେହାନ୍ତ ପରେ ଶ୍ରୀଧର ସ୍ୱାମୀ ନିଜେ ମଠାଧୀଶ ହୋଇ ନାନା ଶାସ୍ତ୍ର ଅଧ୍ୟୟନ ପୂର୍ବକ ଶ୍ରୀ ନୃସିଂହ ଓ ଶ୍ରୀ ଶିଖରେଶ୍ୱରଙ୍କ ଉପାସନାରେ ବ୍ରତୀ ହୋଇଥିଲେ । ଭଗବାନ ନୃସିଂହ ମନ୍ତ୍ର ପୁରଶ୍ଚରଣ କରି ନୃସିଂହ ଓ ମହାଦେବଙ୍କ ପ୍ରସାଦରୁ ସେ ଭାବାର୍ଥ ଦୀପିକା, ସୁବୋଧିନୀ, ଆତ୍ମପ୍ରକାଶ ପ୍ରଭୃତି ବିଶ୍ୱବିଖ୍ୟାତ ଟୀକାମାନ ପ୍ରଣୟନ କରି ପାରିଥିଲେ । ସେ ନୃସିଂହଙ୍କର ଉପାସକ ଥିବା ସମ୍ପର୍କରେ ଗୋଟିଏ କିମ୍ବଦନ୍ତୀ ପ୍ରଚଳିତ ଅଛି । ପ୍ରକୃତରେ ନୃସିଂହ ଥିଲେ ତାଙ୍କର ଗୃହଦେବତା । ତାଙ୍କର କେତେଜଣ ସହୋଦର ଥିଲେ । ପୈତୃକ ସମ୍ପତ୍ତି ବିଭାଗ ସମୟରେ ଭାତୃଗଣ ଶ୍ରୀ ନୃସିଂହଙ୍କ ମୂର୍ତ୍ତିଟି ଶ୍ରୀଧରଙ୍କ ପାଇଁ ରଖି ଅବଶିଷ୍ଟ ସମ୍ପତ୍ତି ନିଜ ନିଜ ଭିତରେ ବାଣ୍ଟି ନେଇଥିଲେ । ଏହା ଦେଖି ଶ୍ରୀଧରଙ୍କ ମନରେ ତୀବ୍ର ବୈରାଗ୍ୟ ଜାତ

ହୋଇଥିଲା ଏବଂ ସେ ନୃସିଂହ ଦେବଙ୍କୁ ସଙ୍ଗରେ ନେଇ ଗୃହ ପରିତ୍ୟାଗ ପୂର୍ବକ କପିଳାସ ଆସି ସନ୍ନ୍ୟାସ ଦୀକ୍ଷା ଗ୍ରହଣ କରିଥିଲେ ।

ଶ୍ରୀମଦ୍‌ଭାଗବତ୍ ଉପରେ ଟୀକା ରଚନା କରିବା ଅବସରରେ ସେ ମଧ୍ୟ ନୃସିଂହଙ୍କର ସ୍ତୁତି ନିମ୍ନ ଭାବେ କରିଛନ୍ତି -

"ବାଗୀଶା ଯସ୍ୟ ବଦନେ
ଲକ୍ଷ୍ମୀର୍ଯ୍ୟସ୍ୟ ଚ ବକ୍ଷସି,
ଯସ୍ୟାସ୍ତେ ହୃଦୟେ ସଂବିତ୍
ଓଁ ନୃସିଂହ ମହଂ ଭଜେ ।"

ଯେଉଁ ସବୁ ପ୍ରସିଦ୍ଧ ରଚନା ଦ୍ୱାରା ସେ ଜଣେ ଉତ୍କଳୀୟ ହୋଇ ମଧ୍ୟ ସମଗ୍ର ବିଶ୍ୱର ଖ୍ୟାତି ଅର୍ଜନ କରିଥିଲେ, ସେଗୁଡ଼ିକ ହେଉଛି -

୧. ଶ୍ରୀମଦ୍ ଭଗବଦ୍ ଗୀତାର ଟୀକା - ସୁବୋଧିନୀ
୨. ଶ୍ରୀମଦ୍ ଭାଗବତର ଟୀକା - ଭାବାର୍ଥ ଦୀପିକା
୩. ଶ୍ରୀ ବିଷ୍ଣୁ ପୁରାଣର ଟୀକା - ଆତ୍ମପ୍ରକାଶ
୪. ସନତ୍ ସୁଜାତୀୟର ଟୀକା - ବାଳବୋଧିନୀ
୫. ଗୀତା ସାର ଟୀକା - ବ୍ରହ୍ମ ସମ୍ବୋଧିନୀ
୬. ଦେବ ସ୍ତୁତି ଟୀକା - ଭାଗବତ ପୁରାଣ ବିଷୟକ
୭. ପଦାର୍ଥ ପ୍ରକାଶିକା - ପୁରାଣ ଟୀକା
୮. ବ୍ରଜ ବିହାର କାବ୍ୟ
୯. 'ପଦ୍ୟାବଳୀ'ର ଶ୍ଳୋକ ସଂଖ୍ୟା ୧୫,୨୮,୪୩ ।

ଏହା ଛଡ଼ା -

"ମୂକଂ କରୋତି ବାଚାଳଂ
ପଙ୍ଗୁ ଲଙ୍ଘୟତେ ଗିରିମ୍,
ଯତ୍ କୃପା ତମହଂ ବନ୍ଦେ
ପରମାନନ୍ଦ ମାଧବମ୍" ।

ଶ୍ଲୋକ ମଧ୍ୟ ଶ୍ରୀଧର ସ୍ୱାମୀକୃତ ଶ୍ଲୋକ, ଭାଗବତକାରଙ୍କର ନୁହେଁ । ଏହା ସମଗ୍ର ଭାରତରେ କୋଟି କଣ୍ଠେ ଉଚ୍ଚାରିତ ହୁଏ ଏବଂ ଗୀତା ମାହାତ୍ମ୍ୟ ପ୍ରଭୃତି ଅନେକ ପ୍ରଶସ୍ତିର ଅନ୍ତର୍ଭୁକ୍ତ ହୋଇଯାଇଛି । * ( ଶମ୍ଭୁକ୍ଷେତ୍ର କପିଳାସ ଓ ଶ୍ରୀଧର ସ୍ୱାମୀ; ପୃ - ୨୭)

ଶ୍ରୀମଦ୍ ଭଗବଦ୍ ଗୀତାର ସୁବୋଧିନୀ ଟୀକା କେବଳ ଭାରତରୁ ନୁହେଁ, ସମଗ୍ର ପୃଥିବୀର ପଣ୍ଡିତ ମାନଙ୍କର ଦୃଷ୍ଟି ଆକର୍ଷଣ କରି ପାରିଥିଲା । ଶ୍ରୀମଦ୍ ଭାଗବତ୍ ଗୀତା ପୃଥିବୀରେ ବହୁ ଭାଷାରେ ଅନୂଦିତ ହୋଇଅଛି । ଗୀତାର ଶଙ୍କର ଭାଷ୍ୟ, ରାମାନୁଜ ଭାଷ୍ୟ ଆଦି ବହୁ ପ୍ରାଚୀନ ଟୀକା ଥିଲେ ମଧ୍ୟ ଶ୍ରୀଧର ଟୀକା ବିଶେଷ ଆଦୃତ ଓ ଜନପ୍ରିୟ । ତାଙ୍କର ପଦାଙ୍କ ଅନୁସରଣ କରି ସନାତନ ଗୋସ୍ୱାମୀ, ଜୀବ ଗୋସ୍ୱାମୀ, ବିଶ୍ୱନାଥ ଚକ୍ରବର୍ତ୍ତୀ ଓ ବଳଦେବ ବିଦ୍ୟା ଭୂଷଣ ପ୍ରମୁଖ ମହାତ୍ମାଗଣ ପରବର୍ତ୍ତୀ କାଳରେ ବିସ୍ତୃତ ଟୀକାମାନ ପ୍ରଣୟନ କରିଅଛନ୍ତି ।

ପରବର୍ତ୍ତୀ କାଳରେ ଶ୍ରୀ ଚୈତନ୍ୟ ମହାପ୍ରଭୁ ମଧ୍ୟ ଶ୍ରୀଧର ସ୍ୱାମୀଙ୍କୁ ବହୁ ସମ୍ମାନ ପ୍ରଦର୍ଶନ କରି ଆଦର୍ଶ ରୂପେ ଗ୍ରହଣ କରିଥିଲେ । ସେ ପୁରୀରେ ଅବସ୍ଥାନ କରୁଥିବା ସମୟରେ ଜନୈକ ପଣ୍ଡିତାଭିମାନୀ ବଲ୍ଲଭାଚାର୍ଯ୍ୟ ନାମକ ବ୍ୟକ୍ତି ତାଙ୍କୁ ଭେଟି କହିଲେ - ''ମହାପ୍ରଭୁ ! ମୁଁ ଶ୍ରୀମଦ୍ ଭାଗବତର ଗୋଟିଏ ଟୀକା ଲେଖି ସେଥିରେ ଶ୍ରୀଧର ସ୍ୱାମୀଙ୍କର ମତ ଅନେକାଂଶରେ ଖଣ୍ଡନ କରିଅଛି । ଆପଣ ତାହା ପାଠ କଲେ ମୁଁ କୃତାର୍ଥ ହେବି ।'' ମାତ୍ର ଏହି ଅଭିମାନ ସୂଚକ ଉକ୍ତି ଚୈତନ୍ୟଙ୍କ ମନରେ ଆନନ୍ଦ ପରିବର୍ତ୍ତେ ଖେଦ ସୃଷ୍ଟି କଲା । ସେ ଟୀକା ଶୁଣିବା ଦୂରର କଥା, ବରଂ ଦୃଢ଼ ଭାବରେ କହିଲେ -

''ଶ୍ରୀଧର ସ୍ୱାମୀ ନିନ୍ଦି ନିଜ ଟୀକା କର

ଶ୍ରୀଧର ସ୍ୱାମୀ ନାହିଁ ମାନ ଏତ ଗର୍ବ ଧର ।

ଶ୍ରୀଧର ସ୍ୱାମୀ ପ୍ରସାଦେ ଭଗବତ ଜାନି

ଜଗଦ୍‌ଗୁରୁ ଶ୍ରୀଧର ସ୍ୱାମୀ ଗୁରୁ କରି ମାନି ।''

(ଚୈତନ୍ୟ ଚରିତାମୃତ, ଅନ୍ତ୍ୟଲୀଳା, '-୧୨୮ ।୧୨୯)

କପିଳାସରେ ଅବସ୍ଥାନ କାଳରେ ଶ୍ରୀଧର ସ୍ୱାମୀ ପୁରୀ ଗୋବର୍ଦ୍ଧନ ମଠର ସନ୍ନ୍ୟାସୀ ଶ୍ରୀ ରାମକୃଷ୍ଣ ନନ୍ଦଙ୍କ ଠାରୁ ସନ୍ନ୍ୟାସ ଦୀକ୍ଷା ଗ୍ରହଣ କରିଥିଲେ ଏବଂ ନିଜର ବିଦ୍ୱତ୍ତା ବଳରେ ସମସ୍ତଙ୍କର ଆଦରଣୀୟ ହୋଇପାରିଥିଲେ । ତେଣୁ ଯେତେବେଳେ

ଗୋବର୍ଦ୍ଧନ ମଠରେ ଶଙ୍କରାଚାର୍ଯ୍ୟ ପଦ ଖାଲି ପଡ଼ିଲା, ସେତେବେଳେ ଶ୍ରୀଧର ସ୍ୱାମୀଙ୍କୁ ଏହି ଗୁରୁ ଦାୟିତ୍ୱ ଅର୍ପଣ କରାଯାଇଥିଲା । ସେ ଗୋବର୍ଦ୍ଧନ ମଠରେ ଦଶମ ଶଙ୍କରାଚାର୍ଯ୍ୟ ହୋଇ ଭାରତୀୟ ହିନ୍ଦୁ ସମାଜର ନେତୃତ୍ୱ ନେଇଥିଲେ । ଏହି ସମୟରେ ତାଙ୍କର ଖ୍ୟାତି ଦୂର ଦୂରାନ୍ତରେ ପ୍ରଚାରିତ ହୋଇଥିଲା । ଦାର୍ଶନିକ ଦୃଷ୍ଟି କୋଣରୁ ସେ ଥିଲେ ଅଦ୍ୱୈତବାଦୀ । କିନ୍ତୁ ସେ ଦୃଢ଼ ଭାବରେ ପ୍ରଚାର କରିଥିଲେ ଯେ ଜ୍ଞାନ ପ୍ରାଧାନ୍ୟ ଦାର୍ଶନିକ ଦୃଷ୍ଟିକୋଣ ବ୍ୟାବହାରିକ ଦୃଷ୍ଟିରୁ ଭକ୍ତିର ଗୁରୁତ୍ୱ ସ୍ୱୀକାର କରିବାରେ କୌଣସି ବିରୁଦ୍ଧତା ନାହିଁ । ତେଣୁ ସେ 'ଭାବାର୍ଥ ଦୀପିକା' ଟୀକାରେ ଜ୍ଞାନର ଶ୍ରେଷ୍ଠତା ସ୍ୱୀକାର କରିବା ସଙ୍ଗେ ସଙ୍ଗେ ଭକ୍ତିର ଉପାଦେୟତାକୁ ଗ୍ରହଣକରି ଅଦ୍ୱୈତ ପରମ୍ପରାରେ ଜ୍ଞାନ ଭକ୍ତିର ଅପୂର୍ବ ସମନ୍ୱୟ ଆଣି ପାରିଥିଲେ । ସେଥିପାଇଁ ସେ ଭାରତର ବଡ଼ ବଡ଼ ପଣ୍ଡିତମାନଙ୍କର ଦୃଷ୍ଟି ଆର୍କଷଣ କରିଥିଲେ ଏବଂ ହିନ୍ଦୁ ସମାଜର 'ଆଚାର୍ଯ୍ୟ ପଦବୀରେ ଭୂଷିତ ହୋଇଥିଲେ । କିନ୍ତୁ ଶ୍ରୀକ୍ଷେତ୍ରବାସୀ ପଣ୍ଡିତମାନେ ତାଙ୍କର ଖ୍ୟାତି ଦେଖି ଅସହିଷ୍ଣୁ ହୋଇ ପଡ଼ିଲେ । ସେମାନେ ଭାଗବତ - ଟୀକାରେ ପ୍ରଦର୍ଶିତ ଜ୍ଞାନ ମିଶ୍ରିତ ଭକ୍ତିକୁ ସହଜରେ ଗ୍ରହଣ କରି ପାରିଲେ ନାହିଁ ।

ସେଥିପାଇଁ ଆଜି ଶ୍ରୀଧର ସ୍ୱାମୀ କଠୋର ପରୀକ୍ଷାର ସମ୍ମୁଖୀନ ହୋଇଛନ୍ତି । ଧୀର ପଦକ୍ଷେପରେ ଶ୍ରୀ ମନ୍ଦିରରେ ପ୍ରବେଶ ପୂର୍ବକ ଅଦ୍ୱୈତବାଦୀ ଜ୍ଞାନୀ ପୁରୁଷ ତଥା ପରମ ଭକ୍ତ ଶ୍ରୀଧର ସ୍ୱାମୀ ଶ୍ରୀ ଜଗନ୍ନାଥଙ୍କ ସମ୍ମୁଖରେ ଦଣ୍ଡାୟ ହେଲେ । ତାଙ୍କର ଅଲକ୍ଷ୍ୟରେ ତାଙ୍କ ନେତ୍ର ଯୁଗଳରୁ ଝରି ପଡ଼ିଲା ଦୁଇ ଟୋପା ଲୁହ । ସତରେ କ'ଣ ଜଗନ୍ନାଥ ତାଙ୍କୁ ଅପଦସ୍ତ କରିବେ ? ମହାନ୍ ଲକ୍ଷ୍ୟ ସାଧନ ପାଇଁ ସେ ଜୀବନ ବ୍ୟାପୀ ପ୍ରୟାସ କରିଛନ୍ତି ତାହା କଣ ବିଫଳ ହୋଇଯିବ ?

"ମହାପ୍ରଭୁ ! ତୁମେ ହିଁ ବୁଝିବ ମୋ ହୃଦୟର କାରୁଣ୍ୟ ।"

'ଜୟ ଜଗନ୍ନାଥ' ସ୍ୱରରେ ଶ୍ରୀମନ୍ଦିରର ଅଭ୍ୟନ୍ତର ପ୍ରକମ୍ପିତ ହେବାକୁ ଲାଗିଲା । ଭକ୍ତ ବାନ୍ଧବ ଜଗନ୍ନାଥ ପ୍ରେମୀ ଭକ୍ତ ଶ୍ରୀଧର ସ୍ୱାମୀଙ୍କର ମନୋବାଞ୍ଛା ପୂରଣ କରିବା ପାଇଁ ତତ୍ପର ହୋଇ ଉଠିଲେ ।

ଏହି ସମୟରେ ଦେଖାଗଲା, ଶ୍ରୀମଦ୍ ଭାଗବତ ଉପରେ ରଚିତ ଅନ୍ୟ ସମସ୍ତ ଟୀକା ମନ୍ଦିରର କୋଣରେ ନିକ୍ଷିପ୍ତ ହୋଇଥିବା ସ୍ଥଳେ ଶ୍ରୀଧର ସ୍ୱାମୀଙ୍କ ଟୀକା ଭାଗବତ (ଜଗନ୍ନାଥ)ଙ୍କ କ୍ରୋଡ଼ରେ ବିରାଜମାନ କରୁଅଛି ।

"ଶ୍ରୀଧର ସ୍ୱାମୀ କୃତେୟଂ ଟୀକା ଭଗବତଃ କ୍ରୋଡ଼େ ଲବ୍‌ଧାସନା ଆସୀତ୍ ।"

* (ଭାବାର୍ଥ ଦୀପିକାର ପ୍ରକାଶ ରାମତେଜ ଶାସ୍ତ୍ରୀ ପାଣ୍ଡେୟ (କାଶୀ) ଙ୍କ ସଂପାଦକୀୟ

ଦ୍ରଷ୍ଟବ୍ୟ)

ଏହା ଦେଖି ଈର୍ଷାନ୍ୱିତ ପଣ୍ଡିତଗଣ ଚକିତ ହୋଇଗଲେ । ଶ୍ରୀଧର ସ୍ୱାମୀଙ୍କ ଟୀକା ଯେ ଜଗନ୍ନାଥଙ୍କର ଏକାନ୍ତ ପ୍ରିୟ ତାହା ସର୍ବ ସମକ୍ଷରେ ପ୍ରମାଣିତ ହୋଇଗଲା । ଉପସ୍ଥିତ ଭକ୍ତଗଣ ଶ୍ରୀଧର ସ୍ୱାମୀଙ୍କ ଜୟଗାନରେ ଶତ ମୁଖ ହୋଇଉଠିଲେ ।

ବିଦ୍ୟାସ୍ଥଳୀ କାଶୀ ପୀଠରେ ମଧ୍ୟ ଶ୍ରୀଧର ସ୍ୱାମୀ ଅନୁରୂପ ପରୀକ୍ଷାର ସମ୍ମୁଖୀନ ହୋଇଥିଲେ । ସେ ଶ୍ରୀମଦ୍‌ଭାଗବଦ୍ ଗୀତାର ଯେଉଁ ସୁବୋଧିନୀ ଟୀକା ରଚନା କରିଥିଲେ ସେଥିରେ ଭକ୍ତିର ପ୍ରାଧାନ୍ୟ ପ୍ରକଟିତ ହୋଇଥିବାରୁ ସଂକୀର୍ଣ୍ଣଚେତା ଜ୍ଞାନ ପନ୍ଥୀ ସନ୍ନ୍ୟାସୀଗଣ ତାହା ସମର୍ଥନ କରିବାକୁ ସହଜରେ ସମ୍ମତ ହେଲେ ନାହିଁ । ତେଣୁ ଉକ୍ତ ଟୀକାର ମୂଲ୍ୟ ନିର୍ଣ୍ଣୟାର୍ଥେ ଏହାର ପ୍ରଥମ ପାଣ୍ଡୁଲିପି ବାରାଣସୀ ବିଶ୍ୱନାଥ ମନ୍ଦିରର ବିଗ୍ରହଙ୍କ ନିକଟରେ ରକ୍ଷିତ ହେଲା । ଭଗବାନ ବିଶ୍ୱନାଥ ସ୍ୱପ୍ନରେ ଆବିର୍ଭୂତ ହୋଇ ଆଦେଶ ଦେଲେ -

''ଅହଂ ବେତ୍ତି ଶୁକୋ ବେତ୍ତି
ବ୍ୟାସୋ ବେତ୍ତି ନ ବେତ୍ତିବା,
ଶ୍ରୀଧର ସକଳଂ ବେତ୍ତି
ଶ୍ରୀ ନୃସିଂହ ପ୍ରସାଦତଃ ।''

ଏହିପରି ମହନୀୟ ଅଧିକାରୀ ଥିଲେ ଆଚାର୍ଯ୍ୟ ଶ୍ରୀଧର ସ୍ୱାମୀ । ସେ ଓଡ଼ିଶାରେ ଭାଗବତର ଆଦର ବୃଦ୍ଧି କରିଥିଲେ ଏବଂ ପ୍ରେମ ଭକ୍ତିର ମହିମା ପ୍ରଚାର କରିଥିଲେ ।

ତାଙ୍କ ଠାରୁ ହିଁ ପରବର୍ତ୍ତୀ କାଳରେ ଅତି ବଡ଼ୀ ଜଗନ୍ନାଥ ଦାସ ଭାଗବତକୁ ଓଡ଼ିଆରେ ଅନୁବାଦ କରିବାକୁ ପ୍ରେରଣା ପାଇଥିଲେ ।

''ଶ୍ରୀଧର ନାମେ ବିପ୍ରବର । କଳି ଯୁଗରେ ଜନ୍ମ ତାର ।
ଶ୍ରୀମଦ୍ ଭାଗବତ ଯେ ପୁରାଣ । ଅଷ୍ଟାଦଶ ସସ୍ରଶ୍ଳୋକେଣ ।
ତା ଟୀକା ଚଉବିଂଶ ସସ୍ର । କରଇ ଶ୍ରୀଧର ପ୍ରକାଶ ।
ବିପ୍ର କୁଳରେ ଜନ୍ମ ହୋଇ । ଜଗନ୍ନାଥ ଯୋ ନାମ ବହି ।
ପ୍ରାକୃତ ବନ୍ଧେ ଭାଗବତ । କହିଲେ ସନ୍ଥ ଜନହିତ ।''
(ଓଡ଼ିଆ ଭାଗବତ, ଦ୍ୱାଦଶସ୍କନ୍ଧ)

ସ୍ୱାମୀ ଶ୍ରୀଜଗଦୀଶ୍ୱରାନନ୍ଦ (ଶ୍ରୀ ରାମକୃଷ୍ଣ ଧର୍ମ ଚକ୍ର, ବେଲୁର) ଶ୍ରୀମଦ୍ ଭାଗବଦ୍ ଗୀତା ଅନୁବାଦ କରି ପ୍ରକାଶ କରିବା ଅବସରରେ ଲେଖିଛନ୍ତି -

''ଗୀତାର ବହୁ ଭାଷ୍ୟ ଓ ଟୀକା ଅଧ୍ୟୟନାନ୍ତେ ନିଃସଂଶୟ ବୁଝିଯାଇଛି, ଶ୍ରୀଧର ସ୍ୱାମୀ କୃତ ସୁବୋଧିନୀ ଟୀକାର ସର୍ବାପେକ୍ଷା ସଂକ୍ଷିପ୍ତ ସରଳ ଓ ସାର ଗର୍ଭ ଏବଂ ଅଧିକାଂଶ ପାଠକ ପାଠିକାର ପକ୍ଷେ ଅତିଶୟ ଉପଯୋଗୀ । ଆଚାର୍ଯ୍ୟ ଶ୍ରୀଧର ସ୍ୱାମୀ ସ୍ୱୟଂ ସତ୍ୟଇ ବଲିୟାଛେନ, ପାଠ ମାତ୍ର ପ୍ରୟତ୍ନେଇ ଏଇ ଟୀକାର ଅର୍ଥ ବୋଝାଯାଏ । ସୁବୋଧିନୀ ଟୀକା ଏକଟି ଅନନ୍ୟ ବୈଶିଷ୍ଟ୍ୟ ଜ୍ଞାନ ଓ ଭକ୍ତିର ଅଭିନବ ସମନ୍ୱୟ ସାଧନ । ଏଇ ହେତୁ ମହାପ୍ରଭୁ ଚୈତନ୍ୟ ଦେବ ଏହାର ଭୂୟସୀ ପ୍ରଶଂସା କରିଲେନ୍, ଏବଂ ଭକ୍ତି ଓ ଜ୍ଞାନୀ ଉଭୟେ ଉକ୍ତଟୀକା ପାଠେ ଅନୁରକ୍ତ ।''

* * *

''ଆଚାର୍ଯ୍ୟ ଶ୍ରୀଧର ସ୍ୱାମୀ ଶ୍ରୀମଦ୍ ଭଗବଦ୍ ଗୀତା, ଶ୍ରୀମଦ୍ ଭଗବଦ ଓ ବିଷ୍ଣୁ ପୁରାଣର ଚିରଞ୍ଜୀବୀ ଟୀକାକାର । ତତ୍‌କୃତ ଟୀକାତ୍ରୟ ନିଖିଳ ଭାରତେ ସମାଦୃତ ଓ ସୁପଠିତ ।

* * *

ଏହା ଭକ୍ତି ମୂଳକ ଓ ସହଜବୋଧ ବଲିୟା ଭାରତେ ସମାଧିକ ସମାଦର ପାଇତେଛେ ।''

ବାସ୍ତବିକ ଉତ୍କଳର ବରପୁତ୍ର ଆଚାର୍ଯ୍ୟ ଶ୍ରୀଧର ସ୍ୱାମୀ ଭାରତୀୟ ଧର୍ମକାଶରେ ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କ ଓ ଅମ୍ଳାନ ଜ୍ୟୋତି ।

ନରସିଂହ ଚୌଧୁରୀ କଲେଜ, ଯାଜପୁର

# ଭକ୍ତ ଭାଗବତ ଶ୍ରୀପାଦ ଶ୍ରୀଧର ସ୍ୱାମୀ

• ଶ୍ରୀମତୀ ମନସ୍ପୃହା ଦେବୀ

(ସହଜେ ତ ଅଧ୍ୟାତ୍ମ - ବିଦ୍ୟମା, ବିଦ୍ୟାନଙ୍କ ଭିତରେ ଶ୍ରେଷ୍ଠ । ଭାଗବତ ମଧ ଜ୍ଞାନ ବା ବିଦ୍ୟାର ଶୀର୍ଷତମ ସୋପାନ ବୋଲି କୁହାଯାଏ । ଏହି ସଂସ୍କୃତ ଭାଗବତର ବିଭିନ୍ନ ବ୍ୟାଖ୍ୟକାରଙ୍କ ଭିତରେ ଶ୍ରୀଧର ସ୍ୱାମୀଙ୍କ ବ୍ୟାଖ୍ୟା ସର୍ବୋତ୍କୃଷ୍ଟ ବୋଲି ଧରାଯାଇଛି । ସ୍ୱାମୀଜୀ ସ୍ୱାଭାବିକ ଭାବରେ ମହାପ୍ରଭୁଙ୍କର ଜଣେ ପରମ ଭକ୍ତ । ତାଙ୍କ ସମ୍ବନ୍ଧରେ ଅହୋଗୁଣ କରିଛନ୍ତି ଏ ପ୍ରବନ୍ଧରେ ଶ୍ରୀମତୀ ମନସ୍ପୃହା ଦେବୀ ।)

ପରମହଂସମାନଙ୍କର ପ୍ରିୟ ଅମଳ ପୁରାଣ ଶ୍ରୀମଦ୍‌ଭାଗବତମ୍ ଭଗବତ୍ ତତ୍ତ୍ୱଜ୍ଞାନର ଏକ ଶ୍ରେଷ୍ଠ ପ୍ରକାଶକ ଅଟେ । ମହାମୁନି ବ୍ୟାସଦେବଙ୍କ ପ୍ରଣୀତ ଏହି ଶ୍ରୀମଦ୍ ଭାଗବତରେ ମୋକ୍ଷ ପର୍ଯ୍ୟନ୍ତ ଫଳର କାମନାରୁ ରହିତ ପରମ ଧର୍ମର ନିରୂପଣ କରାଯାଇଅଛି । ଏଥିରେ ଶୁଦ୍ଧାନ୍ତଃ କରଣ ସତ୍‌ପୁରୁଷଙ୍କ ଏକାନ୍ତ ଜ୍ଞାତବ୍ୟ - ବାସ୍ତବିକ୍ ପରମାତ୍ମାଙ୍କର ନିରୂପଣ କରାଯାଇଛି, ଯାହାକି ତ୍ରିତାପକୁ ଶାନ୍ତି କରି ପରମ କଲ୍ୟାଣ ପ୍ରଦାନ କରିଥାଏ । ଅନ୍ୟ କୌଣସି ସାଧନ କିମ୍ବା ଶାସ୍ତ୍ରରେ କି ପ୍ରୟୋଜନ ? ଯେଉଁ ସମୟରେ ସୁକୃତି ପୁରୁଷ ଶ୍ରୀମଦ୍ ଭାଗବତର ଶ୍ରବଣ ମାତ୍ର ଇଚ୍ଛା କରନ୍ତି, ଈଶ୍ୱର ସେହି ସମୟରେ ଅବିଳମ୍ବେ ତାଙ୍କର ହୃଦୟରେ ବନ୍ଦୀ ହୋଇଯାନ୍ତି । ରସର ମର୍ମଜ୍ଞ ଭକ୍ତଗଣ ! ଶ୍ରୀମଦ୍ ଭଗବତ ବେଦରୂପ କଳ୍ପବୃକ୍ଷର ପକ୍ୱଫଳ ଅଟେ । ଶ୍ରୀ ଶୁକଦେବଙ୍କ ପରି ଶୁକପକ୍ଷୀର ଚଞ୍ଚୁ ସମ୍ବନ୍ଧିତ ହୋଇ ଏହା ପରମାନନ୍ଦମୟୀ ସୁଧାରେ ପରିପୂର୍ଣ୍ଣ ହୋଇଅଛି । ଏଥିରେ ସାମାନ୍ୟ ମାତ୍ର ତ୍ୟଜ୍ୟ ଅଂଶ ନାହିଁ । ଏହା କେବଳ ମୂର୍ତ୍ତିମାନ ରସ ଅଟେ । ଯେ ପର୍ଯ୍ୟନ୍ତ ଶରୀରରେ ଚେତନା ଅଛି, ସେ ପର୍ଯ୍ୟନ୍ତ ଏହି ଦିବ୍ୟ ଭାଗବତ ରସକୁ ନିରନ୍ତର ବାରମ୍ବାର ପାନ କରି ଚାଲନ୍ତୁ । ଏହା ପୃଥିବୀର ସୁଲଭ ଅଟେ । ଶ୍ରୀମଦ୍ ଭାଗବତ ପରି ଗ୍ରନ୍ଥ ଆବିଷ୍କାର ପୂର୍ବକ ଏହି ଦର୍ଶନକୁ ସାକାର କରି ଶ୍ରୀପାଦ ଶ୍ରୀଧର ସ୍ୱାମୀ ଶ୍ରୀ କ୍ଷେତ୍ର ପୁରୀରେ ସର୍ବପ୍ରଥମେ ଶ୍ରୀମଦ୍ ଭାଗବତମ୍‌ର ପ୍ରାମାଣିକ ଟୀକା ଭାବାର୍ଥ ଦୀପିକା ରଚନା କରିଥିଲେ । ଏହା ଫଳରେ ଶ୍ରୀକ୍ଷେତ୍ର ପୁରୀରୁ ସମଗ୍ର ଭାରତରେ ଶ୍ରୀମଦ୍ ଭାଗବତ ପ୍ରଚାରିତ ଓ ପ୍ରସାରିତ ହୋଇଥିଲା । ଏହି କାରଣରୁ ପରମହଂସ ଆଚାର୍ଯ୍ୟଗଣ ଗ୍ରନ୍ଥ ଭାଗବତ ପରି ଶ୍ରୀପାଦ ଶ୍ରୀଧର ସ୍ୱାମୀଙ୍କୁ ସନାତନ ଧର୍ମର ପରମାଚାର୍ଯ୍ୟ ଭକ୍ତ ଭାଗବତ ରୂପରେ ସମ୍ମାନ ପ୍ରଦର୍ଶନ କରିଛନ୍ତି । ତେଣୁ ସଂକୀର୍ତ୍ତନର ପ୍ରତୀକ ଶ୍ରୀଚୈତନ୍ୟ ମହାପ୍ରଭୁ କହିଛନ୍ତି -

ଶ୍ରୀଧର ସ୍ୱାମୀ ପ୍ରସାଦେ ଭାଗବତ ଜାନି ।
ଜଗଦ୍ ଗୁରୁ ଶ୍ରୀଧର ସ୍ୱାମୀ ଗୁରୁ କରି ମାନି । (୧୩୩)

(ଶ୍ରୀଚୈତନ୍ୟ ଚରିତାମୃତ - ଅନ୍ତଲୀଳା - ସପ୍ତମ ଅଧ୍ୟାୟ)

ଭାରତସରକାରଙ୍କ ଦ୍ୱାରା ପ୍ରକାଶିତ ହେଉଥିବା GAZETTEER OF INDIA-ORISSA (PURI) **520P.**ରେ ଶ୍ରୀପାଦ ଶ୍ରୀଧର ସ୍ୱାମୀଙ୍କ ସମ୍ବନ୍ଧରେ ସମ୍ୟକ୍ ସୂଚନା କରି କୁହାଯାଇଛି SHRIDHR SWAMI of the 14th cnetury was born in the village of Maraigaon in the present Nilgiri Subdivision of the Balasore District in Orissa. For his vast learning and saintly character he was selected as the Mahanta of Gobardhan Pitha, a famous Sankarite monstery at Puri, where he wrote some notable works, chief among them being his Bhabartha Dipika Tika (ଭାବାର୍ଥ ଦୀପିକା ଟୀକା) on the Bhagabata Purana. This work is considered to be the most famous commentary on Bhagabata.

ଶ୍ରୀଚୈତନ୍ୟ ଦେବଙ୍କ ସମସାମୟିକ ରାୟ ରାମାନନ୍ଦଙ୍କ ବ୍ୟକ୍ତିଗତ ସଚିବ ଶ୍ରୀଚୈତନ୍ୟଙ୍କ ପୁରୁଷୋତ୍ତମ ଲୀଳାର ପ୍ରତ୍ୟକ୍ଷଦର୍ଶୀ ଭକ୍ତ କବି ୰ ମାଧବ ପଟ୍ଟନାୟକ (୧୫୩୫ଖ୍ରୀ:ଅ) ସ୍ୱରଚିତ 'ବୈଷ୍ଣବ ଲୀଳାମୃତ ରେ କହନ୍ତି -

ଏଥୁଅନ୍ତରେ ଶୁଣ ରସ । ଶ୍ରୀ ଭାଗବତ ଗୀତ ରସ । ୭୫ ।
ଶ୍ରୀଧର ନାମେ ବିପ୍ରବର । ମରେଇ ଗ୍ରାମେ ଜନ୍ମତାର । ୭୬ ।
ଭାବଗତ ଦୀପିକା ରଚତି । ଭକତି ମାର୍ଗେ ତାର ମତି । ୭୭ ।
ରେମୁଣା କଟକେଣ ରହି । ଗୋପୀନାଥ ମୂର୍ତ୍ତି ସେବଇ । ୭୮ ।
ପଢ଼ଇ ଗୋପାଳ ତାପିନୀ । ପଇପଳ ସୂତ୍ର ବଖାଣି । ୭୯ ।
ଭଗତି ମାର୍ଗେ ତାର ଭାବ । ବଶ କରଇ ଲୋକ ସର୍ବ । ୮୦ ।
ଶ୍ରୀକ୍ଷେତ୍ରୁ ସେହୁ ଦୀକ୍ଷା ନେଇ । ଅଦ୍ୱୈତମତରେ ଚଳଇ । ୮୧ ।
ଅଟେ ସେ ଶଙ୍କର ସନ୍ନ୍ୟାସୀ । ପୁରାଣ କରେ ଦିବା ନିଶି । ୮୨ ।
ମତି ତା ଭାଗତେ ଅର୍ଥେ । ଶାସ୍ତ୍ର କଲାଇଁ ନାନା ମତେ । ୮୩ ।
ଭଗତି ମାର୍ଗ କର୍ମ ଜ୍ଞାନ । ଏ ସର୍ବ ନୋହେଁ ପରା ଭିନ୍ନ । ୮୪ ।
ଜ୍ଞାନ ବ୍ୟତ୍ରକେ ଭକ୍ତି ଅଛି । ଭକ୍ତି ବିନେ ଜ୍ଞାନ କାହିଁଛି । ୮୫ ।

ଭାଗବତ ମୂର୍ତ୍ତିରେ ଭାବ । ଶ୍ରୀକୃଷ୍ଣ ଶରଣ ପଶିବ । ୮୬ ।
ଶ୍ରୀଧର କଲା ଭାଗବତ । ତାହା ଶୁଣିଲେ ସର୍ବଲୋକ । ୮୭ ।
କାଶୀ, ନବଦ୍ୱୀପ ଶ୍ରୀରଙ୍ଗ । ପଣ୍ଡିତ ମିଳି କଲେ ଅଙ୍ଗ । ୮୮ ।
ଜ୍ଞାନ ଭଗତିକୁ ମିଶାଇ । କିସ ପର୍ଯ୍ୟନ୍ତ ଏହା ତହିଁ । ୮୯ ।
ସନ୍ନ୍ୟାସୀ ଏ ଅର୍ଥ ବୁଝିଲେ । ଶ୍ରୀଧରେ ଧନ୍ୟ ଧନ୍ୟ କଲେ ଅଙ୍ଗ । ୯୦ ।
ଲେଖାଇ ନେଲେ ପୋଥି ଯେତେ । ଦୀପିକା ଭାବାର୍ଥ ସହିତେ । ୯୧ ।
ଭଗତି ଭାବ ସଞ୍ଚାରିଲା । ଜ୍ଞାନରେ ଜଳାଞ୍ଜଳି ଦେଲା । ୯୨ ।
ଭଗତି ମାର୍ଗେ ଯେ ଭ୍ରମଇ । ଅବଶ୍ୟ କୃଷ୍ଣ ସେ ଲଭଇ । ୯୩ ।
କୃଷ୍ଣ ବିହୁନେ ନର୍କେ ପଡ଼େ । ଭାଗବତର ଅର୍ଥ ବାଢ଼େ । ୯୪ ।
ନାମ କୀର୍ତ୍ତନ ମତି ଭୋଳେ । ରହି ନିଶି ଉଜାଗରେ । ୯୫ ।
ନୃସିଂହ ମନ୍ତ୍ରରାଜ ଜପି । ପ୍ରସାଦ ଲଭେ ଶିବ ସେବି । ୯୬ ।
ସ୍ୱାମୀ ରହଇ କପିଳାସେ । ମହାନ୍ତ ଅଟଇ ବିଶେଷେ । ୯୭ ।
ବ୍ରହ୍ମଚାରୀ ମଠ ଅଧୀଶ । ନାମ ଶ୍ରୀଧର ସ୍ୱାମୀ ପାଦ । ୯୮ ।
ମାଧବ ପୂଜା ତାର ମୂଳ । ଉମା ଧବରେ ମତି ଦୃଢ଼ । ୯୯ ।
ଶ୍ରୀଧର ଚରିତ ଦୁର୍ଲଭ । ଜାଣି ପ୍ରତାପ ଭାନୁଦେବ । ୧୦୦ ।
ଶ୍ରୀଧର କଲା ଦିବ୍ୟ ପୂଜା । ମାଲ୍ୟଧିକାର ଶ୍ରୀମୂର୍ତ୍ତି ସେବା । ୧୦୧ ।

(ବୈଷ୍ଣବ ଲୀଳାମୃତ - ଦ୍ୱିତୀୟ ଅଧ୍ୟାୟ)

ପୁରୁଷୋତ୍ତମ ଶ୍ରୀକ୍ଷେତ୍ର ପୁରୀର ଶଙ୍କରାନନ୍ଦ ମଠରେ ଶ୍ରୀପାଦ ଶ୍ରୀଧର ସ୍ୱାମୀ ମଠାଧୀଶ ଥିଲେ । ଶ୍ରୀ ପୁରୁଷୋତ୍ତମ କ୍ଷେତ ଓ ତତ୍ତ୍ୱର ଆଦି ଦେବତା ଶ୍ରୀ ନୃସିଂହ ଭଗବାନ ଶଙ୍କରାନନ୍ଦ ମଠର ଅଧିଷ୍ଠିତ ଦେବତା ଅଟନ୍ତି । ନୃସିଂହଙ୍କର ଏହି ବିଗ୍ରହ ଗୋବର୍ଦ୍ଧନ ମଠର ପ୍ରଥମ ପୀଠାମୀଶ୍ୱର ଜଗଦ୍‌ଗୁରୁ ଶ୍ରୀପାଦ ପଦ୍ମପାଦାଚାର୍ଯ୍ୟଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିଲେ । ଶ୍ରୀପାଦ ଶ୍ରୀଧର ସ୍ୱାମୀ ଏହି ପୁରୁଷୋତ୍ତମ ନୃସିଂହଙ୍କର ଉପାସକ ଥିଲେ । ଶ୍ରୀ ନୃସିଂହଙ୍କ ଅନୁଗ୍ରହରୁ ସେ ଭାବାର୍ଥ ଟୀକା ରଚନା କରି ଶ୍ରୀମଦ୍ ଭାଗବତର ପ୍ରଚାର ପ୍ରସାର କରାଇଥିଲେ । ତେଣୁ ଏହା ଯଥାର୍ଥରେ କୁହାଯାଇଛି -

'ବ୍ୟାସବୋତ୍ତି ଶୁକୋ ବେତ୍ତି ରାଜା ବେତ୍ତି ନବେତ୍ତିବା ।'

ଏତଦ୍‌ବ୍ୟତୀତ, ଗୋବର୍ଦ୍ଧନ ମଠର ଶଙ୍କରାଚାର୍ଯ୍ୟମାନଙ୍କର ନାମ ତାଲିକାରେ ଶ୍ରୀଧର ସ୍ୱାମୀଙ୍କ ସ୍ଥାନ ରହିଛି । ପ୍ରଥମ ଶଙ୍କରାଚାର୍ଯ୍ୟ ଶ୍ରୀପାଦ ପଦ୍ମପାଦଙ୍କ ଠାରୁ ଆରମ୍ଭ କରି ୧୪୫ ତମ ଶଙ୍କରାଚାର୍ଯ୍ୟ ଶ୍ରୀନିଶ୍ଚଳାନନ୍ଦ ସରସ୍ୱତୀଙ୍କ ମଧ୍ୟରୁ ମାତ୍ର ସର୍ବଶେଷ ୭ଜଣ ଶଙ୍କରାଚାର୍ଯ୍ୟଙ୍କର ସମୟ କାଳ

ନିରୂପଣ କରାଯାଇଛି । ୧୮୪୯ ଖ୍ରୀ:ଅ: ଏଥିରେ ସମୟକାଳ ଲିପିବଦ୍ଧ ହୋଇଛି । ଶ୍ରୀଧର ନାମ ଏହି ତାଲିକାରେ ବହୁବାର ଆସିଛି ଯା - ୧୦ମ, ୫୧ତମ, ୬୮ତମ, ୧୧୬ତମ ଶଙ୍କରାଚାର୍ଯ୍ୟ ଭାବରେ, ମାତ୍ର ଶ୍ରୀମଦ୍ ଭାଗବତ ପ୍ରଚାରକ ଶ୍ରୀପାଦ ଶ୍ରୀଧର ସ୍ୱାମୀ ଚତୁର୍ଦ୍ଦଶ ଶତାବ୍ଦୀର ବ୍ୟକ୍ତି ହୋଇଥିବାରୁ ସେ ଗୋବର୍ଦ୍ଧନ ମଠର ୧୧୬ ତମ ଶଙ୍କରାଚାର୍ଯ୍ୟ (ପୁରୁଷୋତ୍ତମ ଚେତନା -ପଦ୍ମଶ୍ରୀ ପଣ୍ଡିତ ସଦାଶିବ ରଥ ଶର୍ମା । ପୃ-୧୭୬) ଥିବାର ଆମ୍ଭେ ଆଶା କରୁଛୁ ।

ଶ୍ରୀପାଦ ଶ୍ରୀଧର ସ୍ୱାମୀ ସମ୍ପ୍ରତି ବାଲେଶ୍ୱର ଜିଲ୍ଲାର ମରେଇ ଗାଁରେ ଏକ ବ୍ରାହ୍ମଣ ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ସେ ଶ୍ରୀକ୍ଷେତ୍ରରୁ ଶଙ୍କରାଚାର୍ଯ୍ୟଙ୍କ ପରମ୍ପରାରେ ମହେଶ୍ୱରାନନ୍ଦ ସରସ୍ୱତୀଙ୍କ ଶିଷ୍ୟ ପରମାନନ୍ଦ ସରସ୍ୱତୀଙ୍କ ଠାରୁ ଅଦ୍ୱୈତ ମତରେ ଦୀକ୍ଷିତ ହୋଇ ଆବାଲ୍ୟ ବ୍ରହ୍ମଚାରୀ ଥିଲେ । ରେମୁଣାର ପ୍ରସିଦ୍ଧ ଗୋପୀନାଥ ମନ୍ଦିରର ସେ ସେବକ ଥିଲେ । ସେଠାରୁ ସେ କପିଳାସ ଯାଇ ଶଙ୍କରାଚାର୍ଯ୍ୟ ପରମ୍ପରାର ମଠ ବ୍ରହ୍ମଚାରୀ ମଠର ମଠାଧୀଶ ହେଲେ । ଅନନ୍ତର ସେ ଶ୍ରୀକ୍ଷେତ୍ରର ଶଙ୍କରାନନ୍ଦ ମଠର ମଠାଧୀଶ ରୂପେ ଅଭିଷିକ୍ତ ହେଲେ । ଏହି ସମୟରେ ସେ ଶ୍ରୀମଦ୍ ଭାଗବତର ଟୀକା ଭାବାର୍ଥ ଦୀପିକା ପ୍ରଣୟନ କରି ସମଗ୍ର ଭାରତରେ ଶ୍ରୀମଦ୍ଭାଗବତର ପ୍ରଚାର ପ୍ରସାର କରାଇଥିଲେ । ଗଙ୍ଗ ବଂଶୀୟ ରାଜା ପ୍ରତାପ ଭାନୁ ଦେବ ତୃତୀୟ (୧୩୫୨-୧୩୭୮ ଖ୍ରୀଅ) ଶ୍ରୀପାଦ ଶ୍ରୀଧର ସ୍ୱାମୀଙ୍କ ଶିଷ୍ୟତ୍ୱ ଗ୍ରହଣ କରିଥିଲେ ଏବଂ ତାଙ୍କୁ ଶ୍ରୀ ଜଗନ୍ନାଥଙ୍କ ମାଲ୍ୟାଧିକାର ସେବାଅର୍ପଣ କରିଥିଲେ । ଏହି ସମୟରେ ନୃସିଂହଙ୍କୁ ଉଭୟ ହରିହର ରୂପ ଉପାସନାର ପୁନଃ ଉଜ୍ଜୀବିତ ହୋଇଥିଲା । ପୂର୍ବରୁ ଶ୍ରୀମନ୍ଦିରରେ ଦୁର୍ଗା ଓ ନୃସିଂହ ଏବଂ ଲକ୍ଷ୍ମୀ ନୃସିଂହଙ୍କର ମିଳିତ ପୂଜାର ପ୍ରଚଳନ ଥିଲା (ଗୋବର୍ଦ୍ଧନ ମଠରେ ଥିବା ଶଙ୍କରାଚାର୍ଯ୍ୟଙ୍କ ନାମ ତାଲିକାରୁ ସଂଗୃହୀତ ।) ସୂର୍ଯ୍ୟବଂଶୀ ରାଜା କପିଳେନ୍ଦ୍ର ଦେବ ଦୁର୍ଗା ନୃସିଂହଙ୍କର ମିଳିତ ଏକ ରମଣୀୟ ମୂର୍ତ୍ତି ଶ୍ରୀକ୍ଷେତ୍ରରୁ ନେଇ ଶୈବ ପୀଠ କପିଳାସରେ ସ୍ଥାପନା କରିଥିଲେ । ଶ୍ରୀଧର ସ୍ୱାମୀଙ୍କ ସ୍ମୃତିରେ ଏହା କରାଯାଇଥିବା ଅନୁମିତ ହୁଏ । ବର୍ତ୍ତମାନ ଏହି ବିଗ୍ରହ କପିଳାସ ଶିଖରରେ ଅଧିଷ୍ଠିତ ହୋଇଛନ୍ତି । ପରିଶେଷରେ ଶ୍ରୀପାଦ ଶ୍ରୀଧର ସ୍ୱାମୀ ଗୋବର୍ଦ୍ଧନ ମଠରେ ଶଙ୍କରାଚାର୍ଯ୍ୟ ହୋଇଥିଲେ । ଜ୍ଞାନ, ଭକ୍ତି ଓ ବୈରାଗ୍ୟର ଅପୂର୍ବ ସମନ୍ୱୟହିଁ ଶ୍ରୀପାଦ ଶ୍ରୀଧର ସ୍ୱାମୀଙ୍କ ବୈଶିଷ୍ଟ୍ୟ ଅଟେ ।

ଶ୍ରୀଧର ସ୍ୱାମୀଙ୍କ ଆବିର୍ଭାବ ସମୟକୁ ମନୋଧର୍ମୀ ଆଚାର୍ଯ୍ୟ ବେଦ ଶାସ୍ତ୍ରମାନଙ୍କର ମନ ମୁତାବକ ବ୍ୟାଖ୍ୟା ପ୍ରଣୟନ ପୂର୍ବକ ନାନା ଅଧାର୍ମିକ ମତବାଦମାନ ପ୍ରତିଷ୍ଠା କରିଥିଲେ । ସେମାନେ ଆପଣାର ଇନ୍ଦ୍ରିୟ ଲାଳସା

ଚରିତାର୍ଥ ନିମନ୍ତେ ଜଗଦଗୁରୁଶଙ୍କରାଚାର୍ଯ୍ୟଙ୍କ ଆଦର୍ଶ ଓ ପରମ୍ପରାକୁ ବିରୋଧ କରିବାକୁ ଲାଗିଲେ । ଏହି ସମୟରେ ସନାତନ ଧର୍ମ ଗ୍ଳାନୀ ଦୂର କରି ପ୍ରକୃତ ଧର୍ମ ସଂସ୍ଥାପନ ନିମନ୍ତେ, ପୁରୁଷୋତ୍ତମ କ୍ଷେତ୍ର ଓ ତତ୍ତ୍ୱର ଆଦି ଦେବତା ନୃସିଂହଙ୍କ ଭକ୍ତ ଶ୍ରୀପାଦ ଶ୍ରୀଧର ସ୍ୱାମୀ ଆବିର୍ଭୂତ ହୋଇଥିଲେ । ସ୍ମାର୍ତ୍ତ ଓ ବୈଷ୍ଣବ ଉଭୟ ସମ୍ପ୍ରଦାୟ ସମେତ ସମସ୍ତ ସନାତନ ଧର୍ମୀଙ୍କର ମୁଖ୍ୟଉପାସ୍ୟ ଶ୍ରୀନୃସିଂହ ଓ ଶ୍ରୀ ଜଗନ୍ନାଥଙ୍କୁ ନିରପେକ୍ଷ ପୁରୁଷୋତ୍ତମ ଆଦି ପରମ୍ପରାକୁ କେନ୍ଦ୍ର କରି ଶ୍ରୀମଦ ଭାଗବତ ପ୍ରତି ସମସ୍ତଙ୍କୁ ଆକର୍ଷଣ କରାଇନେଲେ । ତାଙ୍କର ଏହି ସୂକ୍ଷ୍ମ ଭାବଧାରା ଭାବାର୍ଥଦୀପିକା ଟୀକାରେ ପ୍ରତିଫଳିତ । ଏହାର ପରିପ୍ରକାଶ ନିମନ୍ତେ ଭାବାର୍ଥଦୀପିକାର କେତୋଟି ଶ୍ଳୋକ ଏଠାରେ ଉଦ୍ଧୃତ ଯୋଗ୍ୟ ।

"ଦମ୍ଭନ୍ୟାସସମିଷେଣ ବଞ୍ଚିତଜନଂ ଭୋଗୈକ ଚିନ୍ତାତୁରଂ
ସମ୍ମୁହ୍ୟନ୍ତ ମହର୍ନିଶଂ ବିରଚିତୋ ଦ୍ୟୋଗକ୍ଳମୈରାକୁଳମ୍ ।
ଆଜ୍ଞା ଲଂଘନମଜ୍ଞ ଜନତା ସମ୍ମାନ ନା ସନ୍ଦଂ
ଦୀନାନାଥ ଦୟାନିଧାନ ପରମାନନ୍ଦ ପ୍ରଭୋ ପାହିମାମ୍ ।"

ହେ ପ୍ରଭୋ ! ମୁଁ ଦମ୍ଭ ପୂର୍ଣ୍ଣ ସନ୍ନ୍ୟାସୀର ବାହାନାରେ ଲୋକମାନଙ୍କୁ ଠକି ଚାଲିଛି । ଏକ ମାତ୍ର ଭୋଗ ଲାଳସାର ଚିନ୍ତାରେ ଆତୁର ହୋଇ ଦିନ ରାତି ନାନା ପ୍ରକାର ଉଦ୍ୟୋଗ ରଚନାର ଥକାରେ ବ୍ୟାକୁଳ ଏବଂ ଅସ୍ଥିର ହେଉଛି । ମୁଁ ଆପଣଙ୍କ ଆଜ୍ଞାର ଉଲଂଘନ କରୁଅଛି ଏବଂ ଅଜ୍ଞାନତା ବଶତଃ ଅଜ୍ଞାନୀ ଲୋକଙ୍କ ଦ୍ୱାରା ପ୍ରାପ୍ତ ସମ୍ମାନରେ ନିଜକୁ ଜଣେ ସନ୍ଥ ବୋଲି ଗର୍ବ କରୁଅଛି । ହେ ଦୀନନାଥ ! ହେ ଦୟାନିଧାନ ! ହେ ପରମାନନ୍ଦ ପ୍ରଭୋ ! ମୋତେ ରକ୍ଷା କରନ୍ତୁ ।

ମିଥ୍ୟା ତର୍କସୁ କର୍କଶେରିତମହାବାଦାନ୍ଧ କାରାନ୍ତର -
ଭ୍ରାମ୍ୟନ୍ମନ୍ଦମତେରମନ୍ଦମହିମଂ ସ୍ୱଜ୍ଞାନ ବର୍ତ୍ମାସ୍ଫୁଟମ୍ ।
ଶ୍ରୀମନ୍ମାଧବ ବାମନ ତ୍ରିନୟନ ଶ୍ରୀଶଙ୍କର ଶ୍ରୀପତେ
ଗୋବିନ୍ଦେତି ମୁଦା ବଦନ୍ ମଧୁପତେ ମୁକ୍ତଃ କଦା ସ୍ୟାମହମ୍ ।।

ହେ ଅନନ୍ତ ମହିମାଶାଳୀ ପ୍ରଭୋ ! ଯେଉଁ ମନ୍ଦ ମତି ପୁରୁଷ ମିଥ୍ୟାତର୍କ ଦ୍ୱାରା ପ୍ରେରିତ ହୋଇ ଅତ୍ୟନ୍ତ କର୍କଶ ବାଦ ବିବାଦର ଘୋର ଅନ୍ଧକାରରେ ଘୁରି ବୁଲୁଛନ୍ତି । ସେମାନଙ୍କ ନିମନ୍ତେ ଆପଣଙ୍କ ଜ୍ଞାନମାର୍ଗ ସ୍ପଷ୍ଟ ବୁଝିବା ଏବଂ ଗ୍ରହଣ କରିବା ସମ୍ଭବ ନୁହେଁ । ଏଥିପାଇଁ ମୋ ଜୀବନରେ ଏପରି ସୌଭାଗ୍ୟର ସମୟ

କେବେ ଆସିବ, ମୁଁ ଶ୍ରୀମନ୍ମାଧବ, ବାମନ, ତ୍ରିଲୋଚନ, ଶ୍ରୀଶଙ୍କର ଶ୍ରୀପତେ, ଗୋବିନ୍ଦ, ମଧୁପତେ - ଏହି ପ୍ରକାରେ ଆପଣଙ୍କୁ ଆନନ୍ଦରେ ଡାକି ଡାକି ମୁକ୍ତ ହୋଇଯିବି ।

ଯସ୍ମିନ୍ନୁଦ୍ୟଦ୍ ବିଲୟମପି ଯଦ୍ ଭାତି ବିଶ୍ୱଂ ଲୟାଦୌ
ଜୀବୋପେତଂ ଗୁରୁକରୁଣୟା କେବଳାତ୍ମାବବୋଧେ ।
ଅତ୍ୟନ୍ତାନ୍ତଂ ବ୍ରଜତି ସହସା ସିନ୍ଧୁ ବସ୍ସିନ୍ଧୁମଧ୍ୟେ
ମଧ୍ୟେଚିତ୍ତଂ ତ୍ରିଭୁବନ ଗୁରୁଂ ଭାବୟେତଂ ନୃସିଂହମ୍ ।।

ଜୀବଗଣଙ୍କ ସହିତ ଏହି ସମ୍ପୂର୍ଣ୍ଣ ବିଶ୍ୱ ତାହାଙ୍କଠାରୁ ଉଦୟ ହୋଇ ସୁଷୁପ୍ତି ଆଦି ଅବସ୍ଥାରେ ବିଲୟକୁ ପ୍ରାପ୍ତ ହୋଇ ଉଭେଇ ଯାଆନ୍ତି; ଗୁରୁଦେବଙ୍କ କରୁଣା ପ୍ରାପ୍ତ ଯେତେବେଳେ ଶୁଦ୍ଧ ଆତ୍ମଜ୍ଞାନ ଉଦୟ ହୋଇଥାଏ, ସେତେବେଳେ ସମୁଦ୍ରରେ ନଦୀ ପରି ସହସା ଯାହାଙ୍କ ଠାରେ ଆତ୍ୟନ୍ତିକ ପ୍ରଳୟକୁ ପ୍ରାପ୍ତ ହୁଅନ୍ତି, ସେହି ତ୍ରିଭୁବନ ଗୁରୁନୃସିଂହ ଭଗବାନଙ୍କୁ ମୁଁ ଆପଣା ହୃଦୟରେ ଭାବନା କରୁଅଛି ।

ଶ୍ରୀପାଦ ଶ୍ରୀଧର ସ୍ୱାମୀ ନୃସିଂହ ତାପିନୀ ଉପନିଷଦୋକ୍ତ ମନ୍ତ୍ରରାଜ ନୃସିଂହ ମନ୍ତ୍ର ସଦା ସର୍ବଦା ଜପ କରୁଥିଲେ -

ଓଁ ଉଗ୍ରଂବୀରଂ ମହାବିଷ୍ଣୁ ଜ୍ୱଳନ୍ତଂ ସର୍ବତୋମୁଖମ୍ ।
ନୃସିଂହଂ ଭୀଷ୍ମଂ ମୃତ୍ୟୋର୍ମୃତ୍ୟୁଂ ନମାମ୍ୟହମ୍ ।

ଶ୍ରୀ ନୃସିଂହ ଭଗବାନ ମୁଖ୍ୟ ଉପାସ୍ୟ ଥିଲେ ଭକ୍ତ ଭଗବତ ଶ୍ରୀପାଦ ଶ୍ରୀଧର ସ୍ୱାମୀଙ୍କର । ଉତ୍କଳୀୟ ନବାକ୍ଷରୀ ଭାଗବତ ବୃତ୍ତେ ଛନ୍ଦରେ ଶ୍ରୀମଦ୍‌ଭାଗବତ ପ୍ରଣେତା ଶ୍ରୀଚୈତନ୍ୟଙ୍କ ଅନ୍ତରଙ୍ଗ ପାର୍ଷଦ ଅତିବଡ଼ି ସ୍ୱାମୀ ଶ୍ରୀ ଜଗନ୍ନାଥ ଦାଶପୂର୍ଣ୍ଣ ପ୍ରାଣରେ ଶ୍ରୀଧରୀୟ ବ୍ୟାଖ୍ୟାକୁ ଗ୍ରହଣ କରି ମଙ୍ଗଳା ଚରଣରେ ଲେଖି ଯାଇଛନ୍ତି - "ନମଇଁ ନୃସିଂହ ଚରଣ । ଅନାଦି ପରମ କାରଣ ।" ଶ୍ରୀଧର ସ୍ୱାମୀଙ୍କ ପଦାଙ୍କ ଅନୁସରଣ କରି ଶ୍ରୀଚୈତନ୍ୟ ଓ ଶ୍ରୀଜଗନ୍ନାଥ ଦାଶ ଭାଗବତ ପାଠ ସମୟରେ କିପରି ଦିବ୍ୟ ଉନ୍ମାଦ ହେଉଥିଲେ ତାର ପ୍ରତ୍ୟକ୍ଷ୍ୟଦର୍ଶୀ ବିବରଣୀ ପ୍ରଦାନ କରିଛନ୍ତି ମାଧବ ପଟ୍ଟନାୟକ 'ବୈଷ୍ଣବ ଲୀଳାମୃତ'ରେ -

ବଟଗଣେଶ ମୂଳେ ବସେ । ଜଗନ୍ନାଥ ଦାସ ପ୍ରତକ୍ଷେ । ୩୬ ।
ରାହାସ ମଣ୍ଡପ ନିର୍ମାଣି । ରାଧାକୃଷ୍ଣ ମୂର୍ତ୍ତି ଥାପିଣି । ୩୭ ।
ଭାଗବତ ରଚନା କଲେ । ଭଗତେ ଶୁଣନ୍ତି ସଧୀରେ । ୩୮ ।

ଭାଗବତରେ ଭାବଯେତେ । ମଧୁର ସ୍ୱରେ ଗାଏ ନିତ୍ୟେ । ୩୯ ।

ଦିନେକ ସଞ୍ଜ ଅବକାଶେ । ଭଗତେ ରୁଣ୍ଡ ଯେ ବିଶେଷେ । ୪୦ ।

ଭାଗବତ ଅର୍ଥ ବଖାଣେ । ଆସି ମିଳିଲେ ଚଇତନ୍ୟେ । ୪୧ ।

ଭାଗବତ ଅର୍ଥ ଶୁଣିଲେ । ସ୍ୱାମୀର ଭାବ ସେ ବୁଝିଲେ । ୪୨ ।

ନୟନ ଅଶ୍ରୁ ଜରଜର । ଅଙ୍ଗେଣ ପୁଲକ ଅପାର । ୪୩ ।

ଜଗନ୍ନାଥର ଏତେ ଭାବ । ଚୈତନ୍ୟ କଲେତାହା ଠାବ । ୪୪ ।

ବୋଇଲେ ତୁ ଭଗତ ଶ୍ରେଷ୍ଠ । ଭଗତି ଭାବେ ମତି ପୁଷ୍ଟ । ୪୫ ।

ତୋ ଭାବ ମୁଁ କାହୁଁ ପାଇବି । ତୋହର ସଙ୍ଗ ନ ଛାଡ଼ିବି । ୪୬ ।

ଅଢ଼େଇ ପ୍ରହର ପର୍ଯ୍ୟନ୍ତେ । ଦୁହେଁ ରହିଲେ କୋଳାଗ୍ରତେ । ୪୭ ।

ଦୁହେଁ ଏକତ୍ର ଠାରେ ବସି । ପରସ୍ପରକୁ ପ୍ରଶଂସନ୍ତି । ୪୮ ।

ସ୍ୱାମୀ ତୁ ବୋଇଲା ଚୈତନ୍ୟ । ପ୍ରଭୁ ତୁ ବୋଇଲା ଆପଣ । ୪୯ ।

ସମୁଦ୍ରେ ନଦୀ ଯେ ମିଶିଲା । ଭାବ ତରଙ୍ଗ ଉଭାରିଲା । ୫୦ ।

(ବୈଷ୍ଣବ ଲୀଳାମୃତ - ଚତୁର୍ଥ ଅଧ୍ୟାୟ)

ଶ୍ରୀ ଚୈତନ୍ୟ ଶ୍ରୀ ଜଗନ୍ନାଥ ପୁରୀରେ ପଦାର୍ପଣ କଲା ସମୟକୁ ଶ୍ରୀମନ୍ଦିରେ କଳ୍ପବଟ ମୂଳ ଗଣେଶଙ୍କ ନିକଟରେ ଅତିବଡ଼ି ସ୍ୱାମୀ ଶ୍ରୀ ଜଗନ୍ନାଥ ଦାଶ ଏକ କ୍ଷୁଦ୍ର ମଣ୍ଡପରେ ରାଧାକୃଷ୍ଣଯୁଗଳ ମୂର୍ତ୍ତି ସ୍ଥାପନ କରି ଓଡ଼ିଆ ଭାଗବତ ରଚନା କରୁଥିଲେ ଏବଂ ଭକ୍ତ ମାନଙ୍କୁ ଶୁଣାଉଥିଲେ । ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଜଣେ ପ୍ରତ୍ୟେକ୍ଷ ଦାସ ଭାବରେ ସେ ପ୍ରେମ ଭକ୍ତିରେ ପାଗଳ ହେଉଥିଲେ ଏବଂ ତାଙ୍କ ଶରୀର ସର୍ବାଙ୍ଗରେ ସାତ୍ତ୍ୱିକ ବିକାରମାନ ପ୍ରକାଶ ପାଉଥିଲା । ଶ୍ରୀ ଚୈତନ୍ୟ ଏହା ଲକ୍ଷ୍ୟ କରି ଏତେ ମୁଗ୍‌ଧ ହେଲେ ଯେ ଦୁହେଁ ଅଢ଼େଇ ପ୍ରହର ପର୍ଯ୍ୟନ୍ତ କୋଳାଗ୍ରତ ଅବସ୍ଥାରେ ରହିଲେ । ସେ କହିଲେ, ତୁମର ଏ ପ୍ରେମ ଭାବ ମୁଁ କେଉଁଠି ପାଇବି ନାହିଁ; ତେଣୁ ତୁମର ସଙ୍ଗ ମୁଁ ଛାଡ଼ିବି ନାହିଁ । ଜଗନ୍ନାଥଙ୍କୁ ଚୈତନ୍ୟ ପ୍ରେମରେ ସ୍ୱାମୀ ଓ ଚୈତନ୍ୟଙ୍କ ଜଗନ୍ନାଥ - ପ୍ରଭୁ ବୋଲି ସମ୍ବୋଧନ କଲେ । ଏହି ସମୟରୁ ଉଭୟଙ୍କ ମଧ୍ୟରେ ଗଭୀର ଏକାତ୍ମ ଭାବ ଜାତ ହେଲା ।

ଥରେ ବଲ୍ଲଭ ଭଟ୍ଟ ନାମକ ଜଣେ ପଣ୍ଡିତ ତୀର୍ଥ ପର୍ଯ୍ୟଟନରେ ଆସି ଶ୍ରୀକ୍ଷେତ୍ର ପୁରୀରେ ପହଞ୍ଚିଲେ । ସେ ସ୍ୱାମୀ ଜଗନ୍ନାଥଙ୍କୁ ଭେଟି ଭାଗବତ ତତ୍ତ୍ୱ

ସମ୍ବନ୍ଧରେ ଜିଜ୍ଞାସା କରିଥିଲେ । ଏ ସମ୍ପର୍କରେ ବୈଷ୍ଣବ ଲୀଳାମୃତରେ କୁହାଯାଇଛି -

ଉତରୁ ଅଇଲା ବଲ୍ଲଭ । ଗୋପାଳେ ତାରଭକ୍ତିଭାବ । ୧୦୦ ।

ସ୍ୱାମୀ ବୁଲେଣି ତାର ଭେଟ । କରନ୍ତି ଭାଗବତ ପାଠ । ୧୦୧ ।

ଶ୍ରୀଜଗନ୍ନାଥେ ତାର ମତି । ଦର୍ଶନେ ସନ୍ତୋଷ ଲଭନ୍ତି । ୧୦୨ ।

ଗୋପୀଜନ ବଲ୍ଲଭ ଟିଏ । ରାଧାକୃଷ୍ଣ ମେଳ ବପୁଏ । ୧୦୩ ।

ବଲ୍ଲଭ ସନ୍ନ୍ୟାସୀ ବୁଝିଲେ । ଭଗତି ଅରପିଲି ବୋଲେ । ୧୦୪ ।

ମୋର ବିଶ୍ୱାସ ଗୋପୀଜନ । ବଲ୍ଲଭ ଜଗନ୍ନାଥ ଜାଣ । ୧୦୫ ।

ରଥକୁ ଆସି ମାସ ଦୁଇ । ରହିଲେ ବଲ୍ଲଭ ଗୋସାଇଁ । ୧୦୬ ।

କୀର୍ତ୍ତନ ଦେଖିଣ ପ୍ରଭୁର । ସନ୍ତୋଷ ଲଭଇ ଅପାର । ୧୦୭ ।

ଇଷ୍ଟ ଗୋଷ୍ଠୀରେ ଆସି ହେଲେ । ବହୁତ ତତ୍ତ୍ୱ ସମଝିଲେ । ୧୦୮ ।

ସେତେବେଳେ ବଲ୍ଲଭ ଭଟ୍ଟ ଶ୍ରୀମଦ୍ ଭାଗବତର ଏକ ମନ ମୁତାବକ ବ୍ୟାଖ୍ୟା ଉପସ୍ଥାପନ କରି ଶ୍ରୀପାଦ ଶ୍ରୀଧର ସ୍ୱାମୀଙ୍କୁ ବିରୋଧ କରିଥିଲେ । ଏଥିରେ ଅତିବଡ଼ି ଜଗନ୍ନାଥ ଅସନ୍ତୋଷ ପ୍ରକାଶ କରିବାରୁ ସେ ପୁନଶ୍ଚ ଏହାକୁ ଶ୍ରୀ ଚୈତନ୍ୟଙ୍କୁ ଦେଖାଇଲେ । ଶ୍ରୀଚୈତନ୍ୟ ଏହା ଶୁଣି ବିରକ୍ତ ହୋଇ ଉଠିଲେ ଏବଂ କହିଲେ -

ପ୍ରଭୁ ହାସି କହେ, - ସ୍ୱାମୀ ନା ମାନେ ଯେଇ ଜନ ।

ବେଶ୍ୟାର ଭିତର ତାରେ କରିଯେ ଗଣନ । ୧୧୫ ।

* * *

ଶ୍ରୀଧର ସ୍ୱାମୀ ନିନ୍ଦି ନିଜ ଟୀକାକର ।

ଶ୍ରୀଧର ସ୍ୱାମୀ ନାହିଁ ମାନ - ଏତ ଗର୍ବଧର । ୧୩୨ ।

ଶ୍ରୀଧର ସ୍ୱାମୀ ପ୍ରସାଦେ ଭାଗବତ ଜାନି ।

ଜଗଦ୍‌ଗୁରୁ ଶ୍ରୀଧରସ୍ୱାମୀ ଗୁରୁ କରି ମାନି । ୧୩୩ ।

(ଶ୍ରୀଚୈତନ୍ୟ ଚରିତାମୃତ - ଅନ୍ତ୍ୟଲୀଳା ସପ୍ତମ ଅଧ୍ୟାୟ)

ଭାଗବତର ପାଠକ ହୋଇ ଶ୍ରୀଧର ସ୍ୱାମୀଙ୍କୁ ଯେ ସ୍ୱୀକାର ନ କରେ, ମୁଁ ତାଙ୍କୁ ବେଶ୍ୟା ରୂପେ ଗଣନା କରିଥାଏ । ଶ୍ରୀଧର ସ୍ୱାମୀଙ୍କ ନିନ୍ଦା କରି ତୁମେ

ମନଇଚ୍ଛା ତୁମର ଟୀକା କରୁଅଛ, ଶ୍ରୀଧର ସ୍ୱାମୀଙ୍କୁ ଅମାନ୍ୟ କରି ତୁମର ମିଥ୍ୟା ଗର୍ବ ଅହଂକାର ଅଟେ । ଶ୍ରୀଧର ସ୍ୱାମୀଙ୍କ ପ୍ରସାଦରୁ ଶ୍ରୀମଦ୍ ଭାଗବତ ତତ୍ତ୍ୱ ବୁଝିବା ସମ୍ଭବପର ହୋଇପାରିଲା । ତେଣୁ ଜଗଦ୍‌ଗୁରୁ ଶ୍ରୀଧର ସ୍ୱାମୀଙ୍କୁ ମୁଁ ମୋର ଗୁରୁ ରୂପରେ ଜ୍ଞାନ କରେ ।

ପୁରୁଷୋତ୍ତମ ଶ୍ରୀ ଶ୍ରୀଜଗନ୍ନାଥଙ୍କର ଜୟ ହେଉ ।

ଅମଳ ପୁରାଣ ଶ୍ରୀମଦ୍ ଭାଗବତର ଜୟ ହେଉ ।

ଭକ୍ତ ଭାଗବତ ଶ୍ରୀପାଦ ଶ୍ରୀଧର ସ୍ୱାମୀଙ୍କର ଜୟ ହେଉ ।

•

- ସହାୟକ ଗ୍ରନ୍ଥ ସୂଚୀ -


୧ - ଶ୍ରୀମଦ୍ ଭାଗବତମ୍ - ଗୀତା ପ୍ରେସ୍

୨ - GAZETTEER OF INDIA - ORISSA

(PURI DISTRICT)

୩ - ଶ୍ରୀ ଚୈତନ୍ୟ ଚରିତାମୃତ - ଶ୍ରୀ କ୍ରିଷ୍ଣ ଦାସ କବିରାଜ

୪ - ବୈଷ୍ଣବ ଲୀଳାମୃତ - ଭକ୍ତ କବି ମାଧବ ପଟ୍ଟନାୟକ

ପ୍ରକାଶକ - ପ୍ରଦୀପ ପବ୍ଲିକେଶନ

ଆନନ୍ଦ ବୁକ୍ ସହିଲ, ସମ୍ବଲପୁର ।

୫ - ପୁରୁଷୋତ୍ତମ ଚେତନା - ପଦ୍ମଶ୍ରୀ ପଣ୍ଡିତ ସଦାଶିବ ରଥଶର୍ମା

୬ - ଅତିବଡ଼ି ଶ୍ରୀଜଗନ୍ନାଥ ଦାଶ କୃତ ଓଡ଼ିଆ ଶ୍ରୀମଦ୍ ଭାଗବତ

୭ - ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟଙ୍କ ନାମ ତାଲିକା -

ଗୋବର୍ଦ୍ଧନ ମଠରୁ ସଂଗୃହୀତ ।


•

ଗରଦପୁର, ଭଦ୍ରକ, ୭୫୬୧୦୦

# ଜଗଦ୍‌ଗୁରୁ ଶ୍ରୀଧର ସ୍ୱାମୀ ଓ ମୟୂରଗ୍ରାମ

• ଲକ୍ଷ୍ମୀ ନାରାୟଣ ମହାରଣା

ଜଗଦ୍‌ଗୁରୁ ଶ୍ରୀଧର ସ୍ୱାମୀ, ଆଧ୍ୟାତ୍ମିକ ଜଗତର ଜଣେ ବିଶ୍ୱ ବିଶ୍ରୁତ ଐତିହାସିକ ମହାପୁରୁଷ । ବହୁଳ ପ୍ରକୀର୍ତ୍ତିତ, କ୍ଷୀରଚୋରା ତୀର୍ଥର ପୃଷ୍ଠ - ଭୂମିରେ ଯେଉଁ ଭକ୍ତି ସିଦ୍ଧ - ଶୂରୀମାନଙ୍କର ଜୀବନ ଚରିତ, ଆମ୍ଭମାନଙ୍କର ନୟନ ଗୋଚର ହୁଏ; ତାହାଙ୍କ ମଧ୍ୟରେ ସେ ପ୍ରାଚୀନତମ । ଅନ୍ୟ ଦୁଇଜଣ ହେଲେ ଶ୍ରୀଳ ଶ୍ରୀପାଦ ମାଧବେନ୍ଦ୍ର ପୁରୀ ଗୋସ୍ୱାମୀ ଓ ପ୍ରଭୁ ଶ୍ୟାମାନନ୍ଦଙ୍କର ଶିଷ୍ୟ ଶ୍ରୀଳ ଶ୍ରୀପାଦ ରସିକାନନ୍ଦ ଦେବ ଗୋସ୍ୱାମୀ ।

ଶ୍ରୀ ଚୈତନ୍ୟ ମହାପ୍ରଭୁ ଶ୍ରୀଧର ଗୋସ୍ୱାମୀଙ୍କ ଜଗଦ୍‌ଗୁରୁ ବୋଲି ଆଖ୍ୟାୟିତ କରିଥିଲେ । ନିଜର ଗୁରୁ - ପଦ - ବାଚ୍ୟ ବୋଲି ସ୍ୱୀକାର କରିଥିଲେ । ଶ୍ରୀ ବଲ୍ଲଭାଚାର୍ଯ୍ୟ ଶ୍ରୀଧର - ସ୍ୱାମୀଙ୍କ ମତକୁ ଖଣ୍ଡନ କରି; ଭାଗବତର ଏକ ଭାଷ୍ୟ ରଚନା କରି, ଚୈତନ୍ୟ ଦେବଙ୍କ ମତାମତ ପାଇଁ ନିବେଦନ କଲେ । ମହାପ୍ରଭୁ, ଶ୍ରବଣ କରିବାକୁ ଅନିଚ୍ଛୁକ ହୋଇ କହିଥିଲେ, -

''ଶ୍ରୀଧର ସ୍ୱାମୀ ନିନ୍ଦି ନିଜ ଟୀକାକର

ଶ୍ରୀଧର ସ୍ୱାମୀ ନାହିଁ ମାନ ଏତ ଗର୍ବଧର;

ଶ୍ରୀଧର ସ୍ୱାମୀ ପ୍ରସାଦେ ଭାଗବତ ଜାନି

ଜଗଦ୍‌ଗୁରୁ ଶ୍ରୀଧର ସ୍ୱାମୀ ଗୁରୁ କରି ମାନି ।''

(ଚୈତନ୍ୟ ଚରିତାମୃତ ଅନ୍ତ୍ୟଲୀଳା - ୭ମ - ୧୨୮/୧୭୯)

ଭାରତର ବିଦ୍ୟାନଗରୀ ବାରଣସୀର ପଣ୍ଡିତଗଣ, ଶ୍ରୀଧର ସ୍ୱାମୀଙ୍କ ଟୀକାକୁ ସର୍ବଶ୍ରେଷ୍ଠ ବୋଲି ଗ୍ରହଣ କଲେ ନାହିଁ । ଭାଗବତର ଶ୍ଲୋକ ସଂଖ୍ୟା ଅଷ୍ଟାଦଶ ସହସ୍ର । ଶ୍ରୀଧର ସ୍ୱାମୀଙ୍କର ଟୀକା ବା ବ୍ୟାଖ୍ୟା ଅଷ୍ଟାଦଶ ସହସ୍ର । ନିଶ୍ଚିତ ଭାବରେ ଶ୍ରୀଧର ସ୍ୱାମୀ ସ୍ୱକୀୟ ଅନୁଭୂତି ଓ ଦିବ୍ୟଜ୍ଞାନ ଦ୍ୱାରା, ଏହାକୁ ଋଦ୍ଧିମନ୍ତ କରିଥିଲେ । ଅଧିକନ୍ତୁ ତାଙ୍କ ଟୀକାରେ ପ୍ରାଧାନ୍ୟ ଦିଆହୋଇଥିଲା । ଏହି ''ଅଧିକନ୍ତୁ'' ଥିଲା ବିବଦମାନ ବିଷୟ ବସ୍ତୁ । ତହୁଁ ସେମାନେ ସେହି ଟୀକାକୁ, କାଶୀ ବିଶ୍ୱେଶ୍ୱରଙ୍କ ନିକଟରେ,ଅନୁମୋଦନ ପାଇଁ, ମନ୍ଦିର ଗର୍ଭରେ ରଖି ଦେଇ ଆସିଲେ । ମହାପ୍ରଭୁ ସଦାଶିବ ସେହି ପଣ୍ଡିତମାନଙ୍କୁ ସପ୍ନାଦେଶରେ କହିଥିଲେ :-

"ଅହଂବେତ୍ତି, ଶୁକଂ ବେତ୍ତି, ବ୍ୟାସବେତ୍ତି ନ ବେତ୍ତିବା ସକଳଂ ଶ୍ରୀଧରଂ ବେତ୍ତି, ଶ୍ରୀ ନୃସିଂହ ପ୍ରସାଦତଃ।" ଶ୍ରୀଧର ସ୍ୱାମୀଙ୍କର ପାଣ୍ଡିତ୍ୟ ବିଷୟରେ ଅଧିକ ଲେଖିବା ବାହୁଲ୍ୟ ମାତ୍ର ! ତାହାଙ୍କ ରଚିତ ଗ୍ରନ୍ଥ ଗୁଡ଼ିକ ହେଲା, ସୁବୋଧିନୀ (ଶ୍ରୀମଦ୍ ଭାଗବତର ଟୀକା, ଆତ୍ମପ୍ରକାଶ ଶ୍ରୀ ବିଷ୍ଣୁ ପୁରାଣର ଟୀକା, ବାଲବୋଧିନୀ, ବ୍ରହ୍ମସମ୍ବୋଧିନୀ, ବ୍ରଜବିହାର କାବ୍ୟ; ଦେବ ସ୍ତୁତି ଟୀକା, ପଦାର୍ଥ - ପ୍ରକାଶିକା ଓ ପଦ୍ୟାବଳି ଇତ୍ୟାଦି ।)

ଉତ୍କଳର କପିଳାସ ତୀର୍ଥରେ, ସେ ନୃସିଂହ ମନ୍ତ୍ରରେଂ ସିଦ୍ଧି ଲାଭ କରି, ଉପର ଲିଖିତ ଗ୍ରନ୍ଥ ମାନଙ୍କର ରଚନାରେ ବ୍ରତୀ ହୋଇଥିଲେ । ନବଦ୍ୱୀପରେ ନିର୍ବିକଳ୍ପ ସମାଧିରେ ସିଦ୍ଧି ଲାଭ କରିଥିଲେ । ବାରାଣସୀରେ ତାଙ୍କ ପ୍ରଜ୍ଞାର ସର୍ବୋତ୍କୃଷ୍ଟତା ପରମ ଭାଗବତବେତ୍ତା, ଦେବ ଦେବ ମହାଦେବଙ୍କ ଦ୍ୱାରା ସ୍ୱୀକୃତ ହୋଇଥିଲା ଓ ଏହି ସିଦ୍ଧାନ୍ତକୁ ଶ୍ରୀଚୈତନ୍ୟ ମହାପ୍ରଭୁ ଗ୍ରହଣ କରି ନେଇଥିଲେ । କେଉଁ ମହାପୁରୁଷ ବା ଭକ୍ତିସିଦ୍ଧିଶ୍ୱରୀଙ୍କ କ୍ଷେତ୍ରରେ ଏହା ସମ୍ଭବପର ହୋଇଅଛି କି ? ଏଣୁ ଶ୍ରୀଧର ସ୍ୱାମୀ ହେଉଛନ୍ତି; ଜ୍ଞାନ; ଭକ୍ତି; ପାଣ୍ଡିତ୍ୟ ଓ କବିତ୍ୱରେ ଅଦ୍ୱିତୀୟ ।

ଏହି ଅଦ୍ୱିତୀୟ ପ୍ରତିଭାଧର କେଉଁ ସ୍ଥାନରେ ଜନ୍ମଗ୍ରହଣ କରିଥିଲେ, ଏହା ଆଜି ସୁଦ୍ଧା ଏକ ବିବଦମାନ ବିଷୟବସ୍ତୁ ହୋଇରହିଥିବା ଯେତିକି ଆଶ୍ଚର୍ଯ୍ୟର ବିଷୟ, ତାହାଠାରୁ ଅଧିକ କ୍ଷୋଭର ବିଷୟ ମଧ ।

ଶମ୍ଭୁକ୍ଷେତ୍ର କପିଳାସ ଓ ଶ୍ରୀଧର ସ୍ୱାମୀ ନାମକ ପୁସ୍ତକ, ସନ ୧୯୮୦ ମସିହାରେ ପ୍ରକାଶିତ ହୋଇଅଛି । ଏହାର ପ୍ରକାଶିକା ହୋଇଛନ୍ତି, ଶ୍ରୀମତୀ ପ୍ରତିଭା କୁମାରୀ ଦେବୀ ଓ ଏହାର ପ୍ରାପ୍ତିସ୍ଥାନ, ଦାଶରଥି ପୁସ୍ତକାଳୟ, କଟକ - ୨ । ଲେଖକ ଓ ସଂକଳକ - ବୃନ୍ଦ ହେଉଛନ୍ତି, ଶ୍ରୀ ଗୌରେନ୍ଦ୍ର ପ୍ରତାପ ସିଂହଦେବ, କବି ଭୂଷଣ, ରାଜକିଶୋର ପଟ୍ଟନାୟକ ଓ ଶ୍ରୀ ଶ୍ରୀ ଶୀଶେଶ ପ୍ରତାପ ସିଂହ ଦେବ ଏହି ପୁସ୍ତକରେ ଶ୍ରୀଧର ସ୍ୱାମୀଙ୍କ ସମ୍ବନ୍ଧରେ ଏକ ପ୍ରବନ୍ଧ ସନ୍ନିବେଶିତ ହୋଇଅଛି । ଏହି ପୁସ୍ତକର ଲେଖକମାନେ, ଶ୍ରୀଧର ସ୍ୱାମୀଙ୍କ ପ୍ରତିଭା ଉପରେ, ସବିଶେଷ ଆଲୋକପାତ କରି, ଏ ମହତ୍ତ କର୍ମ ସମ୍ପାଦନ କରି ଅଛନ୍ତି । ଏହା ନିଶ୍ଚିତ ଭାବରେ, ଅଭିନନ୍ଦନୀୟ ।

ଶ୍ରୀଧର ସ୍ୱାମୀଙ୍କର ଦିବ୍ୟ ଜନ୍ମ ଓ କର୍ମ, ତ୍ରୟୋଦଶ ଶତାବ୍ଦୀ ଓ ଚତୁର୍ଦ୍ଦଶ ଶତାବ୍ଦୀର ମଧ୍ୟ ଭାଗ ବୋଲି, ତହିଁରେ ଉଲ୍ଲିଖିତ ହୋଇଅଛି । ଏଥିରେ ମତଦ୍ୱୈଧ ନାହିଁ । ଶ୍ରୀଧର ସ୍ୱାମୀ, ଉତ୍ତର ଓଡ଼ିଶାର ଲୋକ ବୋଲି ନିଃସନ୍ଦେହରେ ମତପୋଷଣ କରିବା ସଙ୍ଗେ ସଙ୍ଗେ, ପୃଷ୍ଠା ସଂଖ୍ୟା, ୨୭, ୫ମ ପରିଚ୍ଛେଦରେ ଲେଖିଛନ୍ତି ଯେ, ଗୋଲୋକ ଚନ୍ଦ୍ର ମହାପାତ୍ରଙ୍କ "ବାଲେଶ୍ୱର" ପ୍ରବନ୍ଧ ଅନୁଯାୟୀ

ବାଲେଶ୍ୱର ଜିଲ୍ଲା ଅନ୍ତର୍ଗତ, ସୁପ୍ରସିଦ୍ଧ ଗୋପୀନାଥ ଜୀଉଙ୍କ ଅବସ୍ଥିତି ସ୍ଥାନ ରେମୁଣା ନିକଟବର୍ତ୍ତୀ ମଞ୍ଜାରି (ମଂଜାରି) ଗାଁରେ ପ୍ରଖ୍ୟାତ ଯଶା ଶ୍ରୀଧର ସ୍ୱାମୀ ଜନ୍ମ ଗ୍ରହଣ କରିଥିଲେ ।

ଏ ବିଷୟରେ ଏତିକି କହିଲେ ଯଥେଷ୍ଟ ହେବ ଯେ ରେମୁଣା ଏକ ଥାନା । ତହିଁରେ ଥିବା ରେଭେନ୍ୟୁ ମୌଜା ଓ ପଡାଗାଁ ମଧ୍ୟରୁ କାହାରି ଡାକନାମ ରେମୁଣା ନୁହେଁ । ରେମୁଣା କ୍ଷୀରଚୋରା ଗୋପୀନାଥ ମନ୍ଦିର ନିକଟରେ ଥିବା କୌଣସି ପଡ଼ାଗାଁଇ ନାମ ମଂଜାରି ନୁହେଁ । ରେମୁଣା ବଜାର ସାହାଜି ହାଟରୁ ମୋ' ପଡ଼ାଗାଁ ଖୁସାଲିଗଞ୍ଜ (ମୌଜେ, ପୁରୁଷୋତ୍ତମପୁର) ଦେଇ ସୋନ ନଈ ପାର୍ ହୋଇ ମରେଇଗାଁ ଯିବାକୁ ହୁଏ । ଏହି ମରେଇ ଗାଁ ନାମଟି, ମୟୂର ଗ୍ରାମର ଅପଭ୍ରଂଶ ମାତ୍ର ଓ ରେମୁଣା ଥାନାର ଅନ୍ତର୍ଭୁକ୍ତ । ଏହାର ପାଖାପାଖି ଗ୍ରାମ ଗୁଡ଼ିକ ହେଉଛି, ମନ୍ଦାରପୁର, ହାତିଆଗଣ୍ଡ, ପାଳସିହା, କାକବରେଇ ଇତ୍ୟାଦି । ଅତଏବ ରେମୁଣା ବୋଲି ପଡ଼ାଗାଁ ବା ମୌଜା ନଥିବା ସ୍ଥଳେ, ତାହାର ନିକଟବର୍ତ୍ତୀ ଏକ ଗାଁର ନାମ ମଂଜାରି ବୋଲି ଆସିଲା କେଉଁଠୁ ? ଏହା କପୋଳକଳ୍ପିତ ବୋଲି ମନେ କରିବା ଅଧିକ ଯୁକ୍ତି ଯୁକ୍ତ ।

କ୍ଷୀରଚୋରା ଗୋପୀନାଥ ମନ୍ଦିରକୁ ଯଦି, ରେମୁଣା ବୋଲି ଧରାଯାଏ, ତେବେ ଏତିକି କହିଲେ ଯଥେଷ୍ଟ ହେବ ଯେ, ମନ୍ଦିର ଯେଉଁ ସାହିରେ ଅବସ୍ଥିତ ତାହାକୁ ଗଉଡ଼ ଦାଣ୍ଡ କୁହାଯାଏ ଓ ତାହାର ନିକଟବର୍ତ୍ତୀ ଗ୍ରାମ ମାନଙ୍କର ନାମ, ବଙ୍ଗାଳି ସାହି, ମାଧିପୁର, ଶ୍ୟାମରାଇ-ପୁର, ରୁଦ୍ରପୁର, ଚୌଧୁରୀବାଗ, ମେଣ୍ଡା (ମେଣରା) କଅଁରାଳି ଇତ୍ୟାଦି । ଏ ସବୁ ମନ୍ଦିର ଠାରୁ ୩ ମାଇଲ୍ ମଧ୍ୟରେ ଅବସ୍ଥିତ ।

''ଶ୍ରୀଧର ସ୍ୱାମୀଙ୍କ ସଂବନ୍ଧେ, ନାନାବିଧ କିମ୍ବଦନ୍ତୀ ମାନ ପ୍ରଚଳିତ ଅଛି । କେହି କେହି କହନ୍ତି. ସେ ଗୁଜରାଟ ଦେଶୀୟ ବା ମହାରାଷ୍ଟ୍ରୀୟ ବ୍ରାହ୍ମଣ । କେହି କେହି ତାଙ୍କୁ ଭକ୍ତି କାବ୍ୟର ରଚୟିତାଙ୍କ ପିତା ବୋଲି କହିଥାଆନ୍ତି'' । କେଉଁ ତଥ୍ୟ ଉପରେ ଭିତ୍ତିକରି,ଏ କିମ୍ବଦନ୍ତୀ ପର୍ଯ୍ୟବେସିତ, ତାହାର ଯୁକ୍ତି ଯୁକ୍ତ ପ୍ରମାଣ ନମିଳିବା ପର୍ଯ୍ୟନ୍ତ; ଏହା ମଧ୍ୟ କପୋଳକଳ୍ପିତ; ଅତଏବ ଗ୍ରହଣ ଯୋଗ୍ୟ ନୁହେଁ ।

ଅନ୍ୟମତରେ ସେ ଅଦ୍ୱୈତ ମତାବଲମ୍ବୀ ସନ୍ନ୍ୟାସୀ ଓ ଏହି ମତାବଲମ୍ବୀ ହୋଇଥିବାରୁ, ସେ ପୁରୀର ଶଙ୍କରାଚାର୍ଯ୍ୟ ପ୍ରତିଷ୍ଠିତ; ଗୋବର୍ଦ୍ଧନ ପୀଠର ଅନ୍ୟତମ ସନ୍ନ୍ୟାସୀ ରୂପେ ନିଯୁକ୍ତ ହୋଇଥିଲେ ଓ ସେ ବ୍ରହ୍ମଚାରୀ ଥିଲେ । ବସ୍ତୁତଃ, ବ୍ରହ୍ମଚାରୀ ସନ୍ନ୍ୟାସୀ ମାନେ ହିଁ, ଶଙ୍କରାଚାର୍ଯ୍ୟଙ୍କ ପ୍ରତିଷ୍ଠିତ ମଠ ମାନଙ୍କର ପାରମ୍ପରିକ ମହନ୍ତ । ବିବାହିତ ମାନେ ନୁହନ୍ତି । ଏଣୁ ତାଙ୍କ ପୁତ୍ର ଥିବା କପୋଳକଳ୍ପିତ ।''

ଶ୍ରୀ ଚୈତନ୍ୟ ଦେବ, ବିବାହିତ ଥିଲେ, ଅଥଚ ସର୍ବଶ୍ରେଷ୍ଠ ବ୍ରହ୍ମଚାରୀ ଓ ସନ୍ନ୍ୟାସୀ ବୋଲି ମତ ପୋଷଣ କରିବା କଅଣ ଯୁକ୍ତି ହୀନତାର ଲକ୍ଷଣ ? ବୁଦ୍ଧଦେବ ବିବାହ କରିଥିଲେ ଓ ପୁତ୍ର ସନ୍ତାନ ଲାଭ କରିଥିଲେ । ସେ ଯଦି ସର୍ବଶ୍ରେଷ୍ଠ ବ୍ରହ୍ମଚାରୀ ନଥିଲେ, ତେବେ ବୌଦ୍ଧ ସନ୍ନ୍ୟାସୀ ମାନଙ୍କର ଗୁରୁହେଲେ କିପରି ? ସର୍ବସାଧାରଣଙ୍କର ଜ୍ଞାନ ଯେତିକି, ସେତିକି ପରିମାପକତାରେ ଏତିକି କୁହାଯାଇପାରେ ଯେ, " ସତ୍ ବା ପରମେଶ୍ୱର ବା ପରବ୍ରହ୍ମ ବା ପରମାତ୍ମା; ସେ ବି ସର୍ବବ୍ୟାପୀ ନିତ୍ୟ ଅପରିବର୍ତ୍ତନୀୟ, ତାହାଙ୍କ ଠାରେ ଯାହାର ମନପ୍ରାଣ ଚିତ୍ତ, କର୍ମ ଓ ବଚନ, ସବୁ କିଛି ନ୍ୟସ୍ତ ବା ସମର୍ପିତ, ସେ ହିଁ ପ୍ରକୃତ ସନ୍ନ୍ୟାସୀ । ସନ୍ନ୍ୟାସୀର ବ୍ରତ ବା ଭେକ ଧରିଲେ, କେହି ସନ୍ନ୍ୟାସୀ ହୁଏ ନାହିଁ ।

ସର୍ବବ୍ୟାପୀ ଉପାଧିଶୂନ୍ୟ ସତ୍ତା, ଯାହାକି ଜ୍ୟୋତିର ଜ୍ୟୋତି ସ୍ୱରୂପ, କି ଜଡ଼ କି ଚେତନ; ସର୍ବତ୍ର ଓ ସମସ୍ତ ଦୃଶ୍ୟମାନ ଜଗତର ବାହାରେ ଓ ଭିତରେ ବିଦ୍ୟମାନ, ଯାହାକି କାହାରି ଚକ୍ଷୁ କିମ୍ବା ଯନ୍ତ୍ରର ଗୋଚରୀଭୂତ ନୁହେଁ, ଯାହା କେବଳ ଧ୍ୟାନ ନେତ୍ରରେ ଦୃଶ୍ୟମାନ । ଯାହାର ଦର୍ଶନରେ ଯୋଗୀ ବା ଭକ୍ତମାନେ ବ୍ରହ୍ମାନନ୍ଦରେ ପୁଲକିତ ହୁଅନ୍ତି, ସେହି ପରମାନନ୍ଦ ଅବସ୍ଥାରେ "ସର୍ବ ବାସୁଦେବମିତି" ଭାବରେ, ସର୍ବତ୍ର ମମତା ଦର୍ଶନ କରି ଯେ ସମଦର୍ଶୀ ହୋଇପାରେ, ସେ ବ୍ରହ୍ମରେ ବିଚରଣ କରୁଥିବାରୁ, ପ୍ରକୃତ ବ୍ରହ୍ମଚାରୀ ଅଟନ୍ତି । ଭେକଧାରୀ ଅବିବାହିତ ବ୍ୟକ୍ତି, ଏହି ଅବସ୍ଥା ପ୍ରାପ୍ତ ହୋଇ ନଥିଲେ, ବ୍ରହ୍ମଚର୍ଯ୍ୟ ଦୀକ୍ଷାନେଇ ମଧ୍ୟ ପ୍ରକୃତ ବ୍ରହ୍ମଚାରୀ ନୁହନ୍ତି ।

ଶ୍ରୀଧର ସ୍ୱାମୀ, ଶଙ୍କର ପନ୍ଥୀ ଥାଇ ଗୋବର୍ଦ୍ଧନ ପୀଠର ସନ୍ନ୍ୟାସୀ ହୋଇପାରନ୍ତି, ମାତ୍ର ସେ ଶଙ୍କରାଚାର୍ଯ୍ୟଙ୍କ ଗାଦିରେ ଗୁରୁଭାବରେ ଆସୀନ ନଥିଲେ । ଏ କ୍ଷେତ୍ରରେ ପରମ୍ପରାକ୍ରମେ, ସେ ଅବିବାହିତ ବ୍ରହ୍ମଚାରୀ ହୋଇଥିବା ନିହାତି ଆବଶ୍ୟକ ଥିଲା । ତାହାଙ୍କୁ କଅଣ ସେ ସମୟରେ ପୁରୀକ୍ଷେତ୍ରରେ ଶଙ୍କରାଚାର୍ଯ୍ୟ କୁହାଯାଉଥିଲା ? ମୋଟେ ନୁହେଁ ।

ନବମ ଶତାବ୍ଦୀର ବିଶିଷ୍ଟ ସନ୍ନ୍ୟାସୀ, ଶ୍ରୀ ରଙ୍ଗନାଥ ମନ୍ଦିରର ନିର୍ମାତା, ମହାକାଳ ବିଧ୍ୱଂସୀ । ସନ୍ଥ ତିରୁମଙ୍ଗାଇ କଅଣ, ତାମିଲ୍‌ନାଡୁ ବା ସମଗ୍ର ଦାକ୍ଷିଣାତ୍ୟର ପ୍ରଧାନ ବୈଷ୍ଣବ ଧର୍ମର ପ୍ରବର୍ତ୍ତକ ଥାଇ, ସ୍ତ୍ରୀଙ୍କୁ ପରିତ୍ୟାଗ - ପୂର୍ବକ, ସନ୍ନ୍ୟାସୀ ବୋଲାଇ ନଥିଲେ ? ସନ୍ନ୍ୟାସୀମାନଙ୍କର ଗୁରୁ ନଥିଲେ ? ତତ୍ତୁଲ୍ୟ (ତତ୍+ତୁଲ୍ୟ), ଭକ୍ତି - ସିଦ୍ଧି - ଶୂରୀ ଓ ଅଦ୍ୱିତୀୟ ବ୍ରହ୍ମଚାରୀ ଓ ସନ୍ନ୍ୟାସୀ, ସଂସାରରେ କ୍ୱଚିତ୍ ଜନ୍ମଗ୍ରହଣ କରିଥାଆନ୍ତି । ଏହିପରି ଭୂରିଭୂରି ଦୃଷ୍ଟାନ୍ତ ଦିଆଯାଇ ପାରେ ।

ତା'ଛଡ଼ା ସେ ବିଶିଷ୍ଟ ଅଦ୍ୱୈତବାଦୀ ହୋଇ ରହିଲେ, କେଉଁଠି ? ସେ ଅଦ୍ୱୈତବାଦ ଖଣ୍ଡନ କରି, ଶ୍ରୀମଦ୍‌ଭାଗବତର ଭାଷ୍ୟ ଲେଖିଥିଲେ ବୋଲି ଶଙ୍କର ପନ୍ଥୀ ଅଦ୍ୱୈତବାଦୀ ଗଣ, ଏହାକୁ ଗ୍ରହଣ କରୁନଥିଲେ ।, କାଶୀ ବିଶ୍ୱେଶ୍ୱରଙ୍କର ସ୍ୱପ୍ନାଦେଶ ନ ହେବା ପର୍ଯ୍ୟନ୍ତ । ଏଣୁ ସେ ଯଦି ପ୍ରକୃତ ଶଙ୍କର - ପନ୍ଥୀ ସନ୍ନ୍ୟାସୀ; ତେବେ ତାହାଙ୍କର ମୌଳିକ ଚରିତ୍ରରେ ପରିବର୍ତ୍ତନ ହେଲା କାହିଁକି; ବା କେଉଁ ଘଟଣାରୁ ?

ଏହି ପୁସ୍ତକର ୪୯ ପୃଷ୍ଠାରେ ଲିଖିତ ଅଛି ଯେ "ତାଙ୍କର କେତେ ଜଣ ସହୋଦର ଥିଲେ । ପୈତୃକ ସମ୍ପତ୍ତି ବିଭାଗ ସମୟରେ, ଭ୍ରାତୃଗଣ; ଶ୍ରୀ ନୃସିଂହ ମୂର୍ତ୍ତିଟିକୁ; ଶ୍ରୀଧରଙ୍କ ପାଇଁ ରଖି; ଅବଶିଷ୍ଟ ସମ୍ପତ୍ତି ନିଜ ନିଜ ମଧ୍ୟରେ ବାଣ୍ଟି ନେଇଥିଲେ । ଏଥିରେ ଶ୍ରୀଧରଙ୍କ ମନରେ ତୀବ୍ର ବୈରାଗ୍ୟ ଜାତ ହେଲା ଓ ସେ ନୃସିଂହ ଦେବଙ୍କୁ ସଙ୍ଗରେ ନେଇ ଗୃହତ୍ୟାଗ କରି ସନ୍ନ୍ୟାସ ହେଲେ ।"

ସନ ୧୯୫୧ ମସିହାରେ, ବନ୍ୟା ସମୟରେ ଲେଖକ, ବାଲେଶ୍ୱରରେ ମ୍ୟାଜିଷ୍ଟ୍ରେଟ ଓ ଦଶ ଆଇନ୍ ହାକିମ (ରେଷ୍ଟ୍‌ସ୍‌ଟ୍ ଅଫିସ୍‌ର) ଥିବାବେଳେ; ଏହି ଅଞ୍ଚଳରେ ରିଲିଫ୍ ବାଣ୍ଟୁଥିବା ବେଳେ, ଶ୍ରୀଧର ସ୍ୱାମୀଙ୍କର ବଂଶଧର ମାନଙ୍କ ସଙ୍ଗରେ ଆଳାପ ଆଲୋଚନା ହୋଇଥିଲା । ସେହି ବୟୋବୃଦ୍ଧ ବ୍ୟକ୍ତିମାନଙ୍କର ନାମ ଟିପି ରଖିବାର ଆବଶ୍ୟକତା ମୁଁ ସେତେବେଳେ ଉପଲବ୍ଧି କରି ପାରିନଥିଲି ନୂଆ ଚାକିରୀ, ପୁଣି ସେତେବେଳେକୁ ମୋ ବୟସ ମାତ୍ର ୨୫/୨୬ ବର୍ଷ । ଲୋକମୁଖରେ ପ୍ରଚଳିତ କିମ୍ବଦନ୍ତୀରୁ ଜାଣିଲି ଯେ; ଶ୍ରୀଧର ସ୍ୱାମୀ ଯୌବନରେ ପତ୍ନୀଙ୍କୁ ହରାଇ; ସନ୍ତାନମାନଙ୍କୁ ଦୁଃଖରେ ଲାଳନ ପାଳନ କରୁଥିଲେ ।

ଦିନେ ପିଲାମାନଙ୍କୁ ଖୁଆଉଥିଲା ବେଳେ, ଏକ ଝିଟିପିଟି ଅଣ୍ଡା; ତଳେ ଖସି ପଡ଼ି ଫାଟିଗଲା ଓ ତାହା ଭିତରୁ ଗୋଟିଏ ଛୁଆ ବାହାର ହୋଇ; ଧୀରସ୍ଥିର ଭାବରେ ପଡ଼ି ରହିଲା । ଶ୍ରୀଧର ଭାବିଲେ; ଏ ଛୁଆ ବଞ୍ଚିବ କିପରି ? ତା' ମା ତ ଡରରେ ତଳକୁ ଓହ୍ଲାଇବ ନାହିଁ ! ଏହି ସମୟରେ ଗୋଟିଏ ମାଛି ଆସି; ସେହି ଛୁଆର ମୁହଁ ପାଖରେ ପଡ଼ିଥିବା ଭାତ ଉପରେ ବସି ପଡ଼ିଲା । ଛୁଆଟି ହଠାତ୍ ଧାଇଁ ଯାଇ, ମାଛିଟିକୁ ମୁହଁରେ ଧରି ପକାଇଲା ।

ଶ୍ରୀଧର ସ୍ୱାମୀଙ୍କର ଜ୍ଞାନଚକ୍ଷୁ ଉନ୍ମିଳିତ ହେଲା । ସେ ହୃଦୟଙ୍ଗମ କଲେ ପରମେଶ୍ୱର ସମସ୍ତଙ୍କର ପାଳନକର୍ତ୍ତା ତେଣୁ ସେ ମଧ୍ୟ ମୋର ଏହି ପିଲାମାନଙ୍କୁ ପାଳନ କରିବେ । ମଣିଷ ଅହଂଭାବର ବଶବର୍ତ୍ତୀ ହୋଇ ଭାବୁଛି, "ମୁଁ ପିଲାଙ୍କୁ ପାଳୁଛି ପରିବାର ଚଳାଉଛି" । ଏଣୁ ମୁଁ ସେହି ପରମେଶ୍ୱରଙ୍କୁ ନ ଭଜିବି କାହିଁକି ? ଭ୍ରାତୃପୀଡ଼ନ ଜନିତ ଚିତ୍ତ ପ୍ରତିକ୍ରିୟାଶୀଳ ହୋଇଥାଏ । ଜ୍ଞାନ ମିଶ୍ରିତ ତୀବ୍ର ବୈରାଗ୍ୟ ଜାତ ହେଲେ ତାହା ଚିରସ୍ଥାୟୀ ହୁଏ । ଏହା ପରେ ସେ ସନ୍ନ୍ୟାସ ବ୍ରତ ଅବଲମ୍ବନ

କରି ଗୃହତ୍ୟାଗ କଲେ । ଏହି କିମ୍ବଦନ୍ତୀଟି ଅଧିକ ଯୁକ୍ତିଯୁକ୍ତ ବୋଲି ମନେ ହୁଏ ।

କଥାରେ ଅଛି, ଆବୁ ବଥାଏ ନା ବଥ ବଥାଏ ? ବଥ ଓ ଆବୁ ସମାନ ପରି ଦିଶେ । କିନ୍ତୁ ଆବୁରେ ବେଦନା ନଥାଏ । ବଥରେ ଦରଦ ଥାଏ । ସେହିପରି ଜନ୍ମମାଟିର ଭାଇ ଭଉଣୀ ମାନଙ୍କର, ପୂର୍ବପୁରୁଷ ମାନଙ୍କ ପ୍ରତି ମମତ୍ୱ ବୋଧ ଥାଏ ଦରଦ ରହେ । ବିରହରେ ଝୁରିବା ରୀତି ଥାଏ । ଏଣୁ ଏହି ମୟୂର ଗ୍ରାମ ବା ମରେଇ ଗାଁରେ, ପ୍ରତିବର୍ଷ ମାଘ ସପ୍ତମୀ ଦିନ, ତାହାଙ୍କର ଜୟନ୍ତୀ ବା ସ୍ମୃତିଚର୍ଯ୍ୟା ପାଳନ କରାଯାଉଥିବା, ନିତାନ୍ତ ସ୍ୱାଭାବିକ । ଅନ୍ୟ ଯେଉଁଠାରେ ସେ ଯେତେ ପ୍ରକୀର୍ତ୍ତିତ ହୁଅନ୍ତି ନା କାହିଁକି, ସେଥିରେ ଦରଦୀ ହୃଦୟରେ ସ୍ପନ୍ଦନ କାହିଁକି ବା ଆସିବ ?

ଆଉ ଗୋଟିଏ ବିଷୟ ପ୍ରଣିଧାନର ଯୋଗ୍ୟ । ଏପରି କେଉଁ ମନୁଷ୍ୟ, କେଉଁ ସମାଜରେ କେଉଁ ସ୍ଥାନରେ ଜନ୍ମି ଅଛି ଯେ କି, କେଉଁ ଏକ ଖ୍ୟାତନାମା ବ୍ୟକ୍ତିର ବଂଶଧର ବୋଲି, ମିଛଟାରେ ନିଜକୁ ପରିଚୟ ଦେଉଅଛି, ଦେଇଅଛି, ବା ଦେଇଥିଲା ? ଏହି ଜ୍ଞାନ ପିତା ପୁତ୍ର ପରଂପରାକ୍ରମେ ତଳକୁ ତଳକୁ ଗଡ଼ି ଆସୁଥାଏ ଯେପରି ମୁଁ ଅମୁକ୍ ଗୋତ୍ର ବୋଲି ଆମେ କହିଥାଉଁ । ଶ୍ରୀଧର ସ୍ୱାମୀଙ୍କ ବଂଶଧର ମାନେ ଅଦ୍ୟାବଧି ଜୀବିତ । ଏହି ନିରାଟ ସତ୍ୟକୁ ବେପ୍ରମାଣ ନକରି, କିପରି କୁହାଯାଇ ପାରେ ଯେ ତାଙ୍କ ପୁତ୍ର କନ୍ୟା ଥିବା କପୋଳକଳ୍ପିତ ?

କବିବର ରାଧାନାଥ ରାୟ, ଉଷା କାବ୍ୟରେ, ମରେଇ ଗାଁ ଓ ତାର ଆଖପାଖ ଗ୍ରାମ ଗୁଡ଼ିକର ଅବସ୍ଥିତି, ନିମ୍ନମତେ ଏହିପରି ବର୍ଣ୍ଣନା କରଅଛନ୍ତି ।

"ଶାଲ୍ମଳୀ ଶଇଳୁଁ ତିନିସ୍ଥାନେ ତିନିତଟିନୀ ଝରେ ଲଂଘି ନାନା ବନ ଜନପଦ ମିଶେ ବଙ୍ଗସାଗରେ । ଉତ୍ତରେ ବଳଙ୍ଗ, ମଧ୍ୟେ ଗଙ୍ଗାହାର, ସୋଣ ଦକ୍ଷିଣେ ଜଳ ବେଣି ବର୍ଣ୍ଣେ, କୁରଙ୍ଗୀ ନୟନ ନୀଳିମା କିଣେ । ଏହି ବର୍ଣ୍ଣନା ନିଦାଘ ସମୟରେ ଯଥାର୍ଥ । ମାତ୍ର ବର୍ଷାଋତୁରେ ଏହି ଦୁର୍ଗମ ସ୍ଥାନ ଗୁଡ଼ିକର ବର୍ଣ୍ଣନା, ଏହିପରି ହେବା ସ୍ୱାଭାବିକ, ଯାହାକି ମୁଁ ବନ୍ୟା ସମୟରେ ରିଲିଫ୍ ବଣ୍ଟନ ସମୟରେ ଦେଖିଥିଲି ।

"କର୍ଦ୍ଦମାକ୍ତ ମାକ୍ତ ତିନି ତଟିନୀର ସ୍ରୋତ

ହୋଇ ଏକକାର ଘଟାଏ ବ୍ୟୁତ୍ପାତ ।

ଜଳ ଆସ୍ତରଣେ ପାଟଳ ଆହବେ,

ଦିଶେ ଉଦୟାସ୍ତ ବର୍ଣ୍ଣ ବଇଭବେ ।"

ଏହି ତିନି ନଦୀର ମଧ୍ୟବର୍ତ୍ତୀ ଦୁର୍ଗମ ଅଞ୍ଚଳରେ ମୟୂର ଗ୍ରାମ (ମରେଇଗାଁ)

ଓ ତତ୍‌ସଂଲଗ୍ନ ଗ୍ରାମ ଗୁଡ଼ିକ ଅବସ୍ଥିତ । ସ୍ୱନାମ ଧନ୍ୟ ଲେଖକ ଓ ବୈୟାକରଣିକ ଶ୍ରୀମାନ୍ ଚନ୍ଦ୍ରମୋହନ ମହାରଣା ତତ୍‌କାଳୀନ "ମୁକୁର" ପତ୍ରିକାରେ ଓ ଡକ୍ଟର ହରେକୃଷ୍ଣ ମହତାବ ଓଡ଼ିଶା ଇତିହାସ ପୁସ୍ତକରେ, ଶ୍ରୀଧର ସ୍ୱାମୀଙ୍କ ଜନ୍ମସ୍ଥାନ ଯେ ମରେଇ ଗାଁ, ଲେଖିଥିଲେ, ତାହା ଯଥାର୍ଥ ସତ୍ୟ । ଶମ୍ଭୁକ୍ଷେତ୍ର କପିଳାସ ପୁସ୍ତକର ଲେଖକ ମହୋଦୟ ଗଣ, ଯଦି ନିଃସନ୍ଦେହ ଯେ ଶ୍ରୀଧର ସ୍ୱାମୀଙ୍କ ଜନ୍ମସ୍ଥାନ ଉତ୍ତର ଓଡ଼ିଶା, ତେବେ ଆମ୍ଭେ ସ୍ଥାନୀୟ ଅଧିବାସୀଙ୍କର ସନ୍ଦେହର ଅବକାଶ ନାହିଁ ଯେ, ସେ ମରେଇଗାଁ ରେ ଜନ୍ମଗ୍ରହଣ କରିଥିଲେ ।

ଉପସଂହାରରେ, ଶ୍ରୀଧର ସ୍ୱାମୀଙ୍କର ସ୍ୱକୀୟ ଅନୁଭୂତିରୁ ସମ୍ଭୂତ, କେତେ ଗୁଡ଼ିଏ ମୂଳ ସିଦ୍ଧାନ୍ତକୁ ସଂକ୍ଷେପରେ ଲେଖିବାର ପ୍ରୟୋଜନୀୟତାକୁ ଏଡାଇ ପାରିଲି ନାହିଁ । ଏକଦା ଶ୍ରୀଧର ସ୍ୱାମୀ ଭାବିଲେ ଲୀଳା - ପୁରୁଷୋତ୍ତମ ଶ୍ରୀକୃଷ୍ଣ ମଦନମୋହନ ଦେବ ଦେବ ମହାଦେବ, ମଦନ ବିଧ୍ୱଂସୀ । ସେ ଯାହା ହେଉ, ମୋ ପକ୍ଷରେ ସ୍ମର ବା କାମକୁ, ଜୟ କରିବା ସମ୍ଭବ ହୋଇଅଛି । ମହାପ୍ରଭୁ କୌଣସି ସ୍ଥିତପ୍ରଜ୍ଞ ଭକ୍ତର ଅହଂଭାବକୁ ଭଲ ପାଆନ୍ତି ନାହିଁ । ଅହଂଭାବ ବା ମୁଁ କର୍ତ୍ତା" ଏହି ଭାବ "ତତ୍‌ତ୍ୱଂଅସି" ଏହି ଶରଣାଗତିର ପ୍ରତିକୂଳ, ଯାହାକି ଜୀବାତ୍ମା ଓ ପରମାତ୍ମାଙ୍କ ମଧରେ ପ୍ରଧାନ ଅନ୍ତରାୟ ।

ଦିନେ ବର୍ଷଣ ମୁଖର ରାତିରେ, ଶ୍ରୀଧର ସ୍ୱାମୀ ନାମ୍ ଜପରେ ନିମଗ୍ନ ଥିଲେ । ଭିଜି ଭିଜି, ଜୈନିକ ଅପରୂପା ସୁନ୍ଦରୀ, ତାହାଙ୍କ କୁଟୀରରେ ଉପସ୍ଥିତ ହୋଇ କହିଲେ, "ଗୋସେଇଁ, ଆପଣଙ୍କ କୁଟୀରରେ, ମୋତେ ଟିକିଏ ଆଶ୍ରୟ ଦେବେ କି ? ଶ୍ରୀଧର ସ୍ୱାମୀ, ସ୍ୱୀକୃତ ହୁଅନ୍ତେ, ସେ ଅପରୂପା କୁଟୀର ମଧ୍ୟରେ ପ୍ରବେଶ କଲେ ।ଏହାପରେ, ଶ୍ରୀଧର ସ୍ୱାମୀଙ୍କ ମନରେ, ଅନ୍ତର୍ଦ୍ୱନ୍ଦ୍ୱ ଆରମ୍ଭ ହୋଇଗଲା । ଭିତରକୁ ଯିବି କି ନାହିଁ । ଶେଷରେ ସେ ନିଜକୁ ଆୟତ୍ତ କରିପାରି ନଥିଲେ । ସେ ବାରଣ୍ଡାରୁ ଭିତରକୁ ପ୍ରବେଶ କରନ୍ତେ, ମୋହିନୀ କନ୍ୟା, ହସି ହସି କହିଲେ, "ଶ୍ରୀଧର, ଭିତରକୁ ଆସିଲ କାହିଁକି ? କେଉଁ ଉଦ୍ଦେଶ୍ୟରେ ? ତୁମେ ପରାକାମଜୟୀ ? ଏହା କହି, ସେ ମଦନମୋହନ ପୁରୁଷୋତ୍ତମ ଶ୍ରୀକୃଷ୍ଣଙ୍କ ରୂପରେ ପରିବର୍ତ୍ତିତ ହେଲେ । ତାହାଙ୍କର ପ୍ରତ୍ୟେକ୍ଷ ଦର୍ଶନ ପାଇ ଶ୍ରୀଧର ସ୍ୱାମୀ ପୂର୍ଣ୍ଣ ମନସ୍କାମ ହେଲେ । ଏଣୁ ସେ ଶ୍ରୀକୃଷ୍ଣଙ୍କର ବିଷୟରେ; ଯାହା ସବୁ ଲେଖିଛନ୍ତି, ତାହା ତାଙ୍କର ପ୍ରତ୍ୟାକ୍ଷାନୁଭୂତି, ଯାହାକି ଅନ୍ୟ କାହାରି ନଥିଲା ଓ ଯାହାକୁ ପରବର୍ତ୍ତୀ ସମୟରେ ଶ୍ରୀକୃଷ୍ଣଙ୍କର ଅବତାର ଶ୍ରୀ ଚୈତନ୍ୟ ମହାପ୍ରଭୁ ଗ୍ରହଣ କରି ନେଇଥିଲେ ।

ତାହାଙ୍କ ପ୍ରବର୍ତ୍ତିତ ସିଦ୍ଧାନ୍ତ ହେଉଛି, "ମାୟାବାଦୀ ଗଣ ନିର୍ବିଶେଷ ବ୍ରହ୍ମଙ୍କୁ ଚରମ ତତ୍ତ୍ୱ ବୋଲି କହନ୍ତି ସତ୍ୟ, ମାତ୍ର ତାଙ୍କ ମତରେ, ଶ୍ରୀକୃଷ୍ଣହିଁ ବ୍ରହ୍ମର ପୂର୍ଣ୍ଣତମ

ପରିପ୍ରକାଶ ବା ଘନୀଭୂତ - ବ୍ରହ୍ମ ବା ସଚ୍ଚିଦାନନ୍ଦ ବିଗ୍ରହ । ତେଣୁ ଏହି ବିଗ୍ରହଙ୍କର ସନାତନତ୍ୱ ଓ ଅପରିମେୟତ୍ୱ ।

ସେ ନାନା ଶ୍ଳୋକ ମାନଙ୍କରେ ବର୍ଣ୍ଣନା କରିଯାଇ ଅଛନ୍ତି । "କୃଷ୍ଣସ୍ତୁ ଭଗବାନ୍ ସ୍ୱୟଂ'' ଏହା ତାଙ୍କର ସର୍ବଶ୍ରେଷ୍ଠ ସିଦ୍ଧାନ୍ତ, ଯାହାକି ସମସ୍ତେ ଗ୍ରହଣ କରି ନେଇଛନ୍ତି । ଶ୍ରୀମଦ୍‌ଭାଗବତର ୧ମ ସ୍କନ୍ଧରେ ସେ ଲେଖିଛନ୍ତି - ମକରନ୍ଦାୟ, ଭକ୍ତ ଜନ ମାନସ ନିବସାୟ ଶ୍ରୀ କୃଷ୍ଣାୟ'' ।

ବାଗୀଶା ଯସ୍ୟ ବଚନେ; ଲକ୍ଷ୍ମୀ ଯସ୍ୟଚ ବକ୍ଷସି

ଯସ୍ୟାସ୍ତେ ହୃଦୟେ ସଂବିତ୍, ତଂ ନୃସିଂହ ମହଂ ଭଜେ ।

ବିଶ୍ୱସର୍ଗା ବିସଗାଦି ନବଲକ୍ଷଣ ଲକ୍ଷିତଂ

ଶ୍ରୀ କୃଷ୍ଣାଖ୍ୟଂ ପରଂଧାମ, ଜଗଦ୍ଧାମ ନମାମି ତତ୍ ।

ରେମୁଣା, ବାଲେଶ୍ୱର ।

# ଅମ୍ଳାନ ପ୍ରତିଭା

• ଶ୍ରୀ ଶଶିଭୂଷଣ ପତି

ମଗଧ ରାଜ୍ୟରୁ ବିତାଡ଼ିତ ରାଜକୁମାର ମହାମନା ''ଯଯାତି'' ଯେକି ଶ୍ରୀଶ୍ରୀ ବିରଜାଦେବୀଙ୍କର ଅପାର କରୁଣାଲାଭ କରି, ଯଯାତି କେଶରୀନାମରେ ପରିଚିତ, ଉତ୍କଳର ରାଜକନ୍ୟା ଲଳିତା ଓ ରାଜସିଂହାସନ ଲାଭ କରିବାକୁ ସମର୍ଥ ହୋଇଥିଲେ ।

ରାଜା ଯଯାତି ନିଜର ପରାକ୍ରମବଳରେ, ଉତ୍କଳ ରାଜ୍ୟକୁ ଗଙ୍ଗାଠାରୁ ଗୋଦାବରୀ ନଦୀ ପର୍ଯ୍ୟନ୍ତ ବିସ୍ତାର କରିଥିଲେ । ରାଜ୍ୟ ମଧ୍ୟରେ କୃଷି, ବାଣିଜ୍ୟ ଓ ଶିକ୍ଷା ପଦ୍ଧତିର ବିକାଶ ସାଧନ ସଙ୍ଗେ ସଙ୍ଗେ, କେତେକ ଦେବ ମନ୍ଦିର ଓ ଯାଜପୁର ନଗରୀ ମଧ୍ୟ ପ୍ରତିଷ୍ଠା କରାଇଥିଲେ ।

ପୁରାଣ ମାନଙ୍କରୁ ଜଣାଯାଏ, ତ୍ରେତାଯୁଗରେ ମର୍ଯ୍ୟାଦା ପୁରୁଷୋତ୍ତମ ଶ୍ରୀ ରାମଚନ୍ଦ୍ରଙ୍କର ଅଶ୍ୱମେଧ ଯଜ୍ଞ । ଦ୍ୱାପର ଯୁଗରେ ଯୁଧିଷ୍ଠିରଙ୍କର ଅଶ୍ୱମେଧ ଯଜ୍ଞ । ମାତ୍ର କଳିଯୁଗରେ ଯଯାତିଙ୍କର ଦଶାଶ୍ୱମେଧ ଯଜ୍ଞ, ସର୍ବଶ୍ରେଷ୍ଠ ବୋଲି ମନେହୁଏ । ଏଭଳି ସୌଭାଗ୍ୟ ଚକ୍ରବର୍ତ୍ତୀ ରାଜା କିମ୍ବା ସମ୍ରାଟ ମାନେ ପାଇଥାନ୍ତି । ପ୍ରବଦ ଅଛି ପୂର୍ବକାଳରେ ଉତ୍କଳ ଭୁଖଣ୍ଡରେ ବିଶୁଦ୍ଧ ବ୍ରାହ୍ମଣ କିମ୍ବା ଅନ୍ୟ ବର୍ଣ୍ଣର ଲୋକ ନଥିଲେ । ସେଥିଯୋଗୁଁ ରାଜା ସୁଦୂର କନ୍ୟାକୁବ୍ଜରୁ ଦଶହଜାର ବ୍ରାହ୍ମଣ ଓ ଅନ୍ୟବର୍ଣ୍ଣଙ୍କୁ ଅଣାଇ ଯାଜପୁର ନଗରୀର ବୈତରଣୀ ନଦୀକୂଳରେ ''ଦଶାଶ୍ୱମେଧ ଯଜ୍ଞ'' କରାଇଥିଲେ । ଯାହାକି ଯଜ୍ଞ କୁଣ୍ଡ ଗୁଡ଼ିକ ଅଦ୍ୟାବଧି ପଥିକର ଦୃଷ୍ଟି ପଥାରୂଢ଼ ହୁଏ ଏଥିପାଇଁ ପ୍ରାଚୀନ ବୈଦିକ କର୍ମକାଣ୍ଡ ମାନଙ୍କରେ ''ପାଣିପଦ୍ୟାର୍ଘ୍ୟ ନିୟମ ଲିପିବଦ୍ଧ ହେବା ଓ ତାହା ବୈଦୀକ କର୍ମ ପ୍ରଚଳନ କରାଯାଉଛି ।

ଯଥା :- କନୌଜଦେଶେ ସ୍ୱୟମାହୂତାଯେ,

ଦଶାଶ୍ୱମେଧି ଯଃ ପୁରା ବିଧାତାଃ

ସ୍ୱର୍ଣୈସ୍ଥିତଂ ମର୍ତ୍ତ୍ୟୈସ୍ଥିତାଯ୍ୟ ବିପ୍ରାଃ

ତେଭ୍ୟୋ ଦ୍ୱିଜେଭ୍ୟୋ ବିନିବେଦୟାର୍ଘ୍ୟ

ଦଶସହସ୍ର ବ୍ରାହ୍ମଣେଭ୍ୟୋ ଅର୍ଘ୍ୟ ନିବେଦୟାମି ।।

ଯଜ୍ଞକାର୍ଯ୍ୟ ସମାପନ କରି ବ୍ରାହ୍ମଣମାନେସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ ସମୟରେ ରାଜା ସେମାନଙ୍କୁ ଯଥା ଯୋଗ୍ୟ ଦକ୍ଷିଣା ପ୍ରଦାନ କରନ୍ତେ ବ୍ରାହ୍ମଣଙ୍କୁ ଗୋଟିଏ ଅଶ୍ୱ ଓ ଶିରସ୍ତ୍ରାଣ ମାନ ପ୍ରଦାନ କରି ବିଦାୟ ଦେଲେ ।

ବିଦାୟୀ ବ୍ରାହ୍ମଣମାନେ ସ୍ୱଗୃହରେ ପ୍ରବେଶାନ୍ତେନିଜ ନିଜର ଶିରସ୍ତ୍ରାଣ ମାନ ଖୋଲିବାରୁ ସେଥିରେ ସ୍ୱର୍ଣ୍ଣମୁଦ୍ରାମାନ ଥିବାର ଦେଖାଗଲା । ପରିବାର ବର୍ଗ ଯାଜ୍ଞିକ ବ୍ରାହ୍ମଣମାନଙ୍କୁ ଘୃଣାକରି ସାମାଜିକ ବାସନ୍ଦ ବ୍ୟବସ୍ଥା ଗ୍ରହଣ କଲେ । ଯେ ହେତୁ, ସେ ଦେଶରେ ତତ୍କାଳୀନ ସମାଜରେ ଦକ୍ଷିଣା କରିବା ସେମାନଙ୍କର ନୀତି ବିରୁଦ୍ଧ ଥିଲା ।

ବ୍ରାହ୍ମଣମାନେ ନିରୂପାୟ ହୋଇ ଉତ୍କଳକୁ ପୁନଃ ପ୍ରତ୍ୟାବର୍ତ୍ତନ କରି ମହାରାଜା ଯଯାତିଙ୍କ ନିକଟରେ ସେମାନଙ୍କର ମନୋଭାବ ବ୍ୟକ୍ତ କଲେ ତତ୍କାଳୀନ ଉତ୍କଳ ଅଧୀନରେ ଛତିଶ ଗୋଟି ଗଡ଼ଜାତ ବା କରଦ ରାଜ୍ୟ ଥିଲା । ରାଜାମାନେ ସନାତନ ଧର୍ମ ଓ ବୈଦିକ ଧର୍ମର ପୃଷ୍ଠପୋଷକ ଥିବାରୁ ନିଜ ନିଜର ରାଜ୍ୟରେ ବ୍ରାହ୍ମଣ ଶାସନ ମାନ ବସାଇ, ବ୍ରାହ୍ମଣମାନଙ୍କୁ ନିଷ୍କର ବୃତ୍ତି ପ୍ରଦାନ କରିଥିଲେ । ଏଇଭଳି ଭାବରେ କାନ୍ୟ ଶାଖା ଗୋଷ୍ଠୀ ବ୍ରାହ୍ମଣମାନେ ବିଭିନ୍ନ ପ୍ରାନ୍ତର ଓ ପୁର ପଲ୍ଲୀମାନଙ୍କରେ ବସବାସ କରିବାକୁ ଲାଗିଲେ ।

ଏହି ଶାଖା ଗୋଷ୍ଠୀ ଆମ୍ଭର ପୂର୍ବ ପୁରୁଷମାନେ ବାଲେଶ୍ୱର ଜିଲ୍ଲାର ରେମୁଣା ଥାନା ଅନ୍ତର୍ଗତ ରୁଦ୍ରପୁର, ମରେଇଗାଁ, ଫୁଲାଡ଼ି, ଗୁଡ଼ୁଦା ପ୍ରଭୃତି ଗ୍ରାମମାନଙ୍କରେ ବସବାସ କରି ଆସୁଛନ୍ତି । ତନ୍ମଧ୍ୟରୁ ଶ୍ରୀଶ୍ରୀ କ୍ଷୀରଚୋରା ଗୋପୀନାଥଙ୍କ ମନ୍ଦିର ନିକଟରୁ ପ୍ରାୟ ତିନି କିଲୋମିଟର ଉତ୍ତରରେ ମରେଇଗାଁ ବା ମୟୂର ଗ୍ରାମ ଅବସ୍ଥିତ ।

ମୟୂର ଗ୍ରାମର ଅପଭ୍ରଂଶନାମ ମରେଇଗାଁ ବୋଲି ଶୁଣିବାକୁ ମିଳେ । କିଛି କାଳ ପୂର୍ବେ ଗ୍ରାମ ଚତୁଃପାର୍ଶ୍ୱ ବେଷ୍ଟନକରି ବହିଯାଉଥିବା ନଦୀଦ୍ୱୟ (ଗଙ୍ଗାହାର ଓ ଶୋଣ) ଓ ତାର ତୀର ପ୍ରଦେଶ ଗୁଳ୍ମ, ଲତାକୀର୍ଣ୍ଣ ବନାନୀ, କଳାପି କୂଳର କେଳିବନୋଦରେ ମୁଖରିତ ହୋଇ ଉଠୁଥିଲା ତେଣୁ ଏହି ଗ୍ରାମରେ ନାମକରଣ ମୟୂର ଗ୍ରାମ ରଖାଯାଇଥିଲା ବୋଲି ପୁରୁଣା ଲୋକମାନଙ୍କ ଠାରୁ ଶୁଣା ଯାଉଥିଲା ।

ପଙ୍କରୁ ପଙ୍କଜର ଉଦ୍ଭବ ଓ ନିମ୍ବବୃକ୍ଷର ଚନ୍ଦନର ଶୀତଳ ସୁଗନ୍ଧ ସୁରଭିତ ହେଲା ଭଳି, ଶ୍ରୀମଦ୍‌ଭଗବତ ଗୀତାର ସୁବୋଧିନୀ ଟୀକାକାର ପ୍ରଖ୍ୟାତ ଯଶା ପଣ୍ଡିତ ଶ୍ରୀଧର ସ୍ୱାମୀ, ଏହି ଗ୍ରାମର ପତିବଂଶରେ ଜନ୍ମଗ୍ରହଣ କରି ଏହି ମାଟିକୁ

ପବିତ୍ର ଓ ଗୌରବାନ୍ୱିତ କରି ଯାଇଛନ୍ତି । ମହାତ୍ମା ଶିବାନନ୍ଦ ସ୍ୱାମୀ ପ୍ରତିବର୍ଷ ଏହି ଗ୍ରାମରେ ପଦାର୍ପଣ କରି ଗ୍ରାମର ଧୂଳି ମୁଣ୍ଡରେ ବୋଳି ହୋଇ ଶ୍ରୀଧରଙ୍କର ଶ୍ରାଦ୍ଧାଦି ଅନୁଷ୍ଠାନ କରନ୍ତି ଓ ଗ୍ରାମବାସୀମାନଙ୍କୁ ସେଥିରେ ଅନୁପ୍ରାଣିତ କରାନ୍ତି । ଉପଦେଶ ଦିଅନ୍ତି ଶ୍ରୀଧରଙ୍କ ପରମାରାଧ ଲକ୍ଷ୍ମୀ ନୃସିଂହ ବିଗ୍ରହ ପ୍ରତିଷ୍ଠା ନିମନ୍ତେ ମନ୍ଦିରଟିଏ ତୋଳାଇ ତାଙ୍କର ସ୍ମୃତିରକ୍ଷା କରିବାକୁ ।

ସ୍ୱାମୀଜୀଙ୍କର ଉପଦେଶକ୍ରମେ କେତେକ ଉତ୍ସାହୀ ଯୁବକମାନଙ୍କ ଉଦ୍ୟମରେ ବହୁଝଡ଼ଝଞ୍ଜା ଅତିକ୍ରମ କରି ଗଢ଼ି ଉଠିଲା କେତେକ ଅନୁଷ୍ଠାନ ।

ସେଥିମଧ୍ୟରୁ ଶ୍ରୀଧର ସ୍ୱାମୀ ନି:ପ୍ରା, ଉ:ପ୍ରା ଓ ମଧ୍ୟ ଇଂରାଜୀ ବିଦ୍ୟାଳୟ ଶ୍ରୀଧର ସ୍ୱାମୀ ପାଠାଗାର ଓ ଶ୍ରୀଧର ସ୍ୱାମୀ ସ୍ମୃତି ପରିଷଦ ।

ଶ୍ରୀଧର ସ୍ୱାମୀ ପାଠାଗାର ୧୯୫୭ ମସିହାରେ ପ୍ରତିଷ୍ଠା କରାଯାଇଥିଲା । ବିଭିନ୍ନ ପତ୍ର ପତ୍ରିକା : ବହି ପତ୍ରରେ ସମୃଦ୍ଧ, ଏହି ଅନୁଷ୍ଠାନଟି ୧୯୭୩ ମସିହା ପ୍ରଳୟଙ୍କରୀ ବନ୍ୟାରେ ନଷ୍ଟ ହୋଇଯାଇଛି । ୧୯୮୦ ମସିହାରେ ଶ୍ରୀଧର ସ୍ୱାମୀ ସ୍ମୃତି ପରିଷଦ ନାମରେ ଏକ ଅନୁଷ୍ଠାନ ଗଢ଼ାଯାଇ ସ୍ୱାମୀଜୀଙ୍କ ଜୟନ୍ତୀ ଉତ୍ସବ ପ୍ରତିବର୍ଷ ପାଳନ କରାଯିବା ସଙ୍ଗେ ସଙ୍ଗେ ମଧ୍ୟ ଇଂରାଜୀ ଓ ହାଇସ୍କୁଲ୍ ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ଗୀତା ପ୍ରଚାର ଓ ତାହାର ପ୍ରସାର ଉଦ୍ଦେଶ୍ୟରେ ପ୍ରତିଯୋଗିତା କରାଯାଇଛି ।

ରେମୁଣା ପ୍ରସ୍ତାବିତ ଚନ୍ଦ୍ରମୋହନ ମହାବିଦ୍ୟାଳୟର ପୂର୍ବତନ ଅଧ୍ୟାପକ ଶ୍ରୀଯୁକ୍ତ ଭାଗବତ ପ୍ରସାଦ ଦାସ ଶ୍ରୀଧର ସ୍ୱାମୀ ସ୍ମରଣିକା ପ୍ରକାଶ ପାଇଁ ବହୁକଥା ସଂଗ୍ରହ କରିବାରେ ଲାଗିଛନ୍ତି । ନିକଟ ଭବିଷ୍ୟତରେ ଈଶ୍ୱରଙ୍କ କରୁଣାରୁ ତା ସଫଳ ହେବାର ଆଶା ।

ବାଲେଶ୍ୱର ଉପଜିଲ୍ଲାପାଳ ଶ୍ରୀଯୁକ୍ତ ବିଜୟାନନ୍ଦ ଦାସ, ଓ.ଏ.ଏସ୍. ସ୍ମୃତିପୀଠ ନିର୍ମାଣ ଓ ସମାଜ ପ୍ରତିନିଧି ଶ୍ରୀଯୁକ୍ତ ମିହିର କୁମାର ଆଚାର୍ଯ୍ୟ ସ୍ମରଣିକା ପ୍ରକାଶ ଦାୟିତ୍ୱ ଗ୍ରହଣ କରିବାରୁ ଆମ ଅନୁଷ୍ଠାନ ସେମାନଙ୍କ ନିକଟରେ ଚିରକୃତଜ୍ଞ ।

ସଂକ୍ଷିପ୍ତ ଜୀବନୀ

ଓଁ ଶ୍ରୀ ଶ୍ରୀ ଲକ୍ଷ୍ମୀ ନୃସିଂହାୟ ନମଃ

ଶ୍ରୀମଦ୍ ଜଗତ୍‌ଗୁରୁ, ଶଙ୍କରାଚାର୍ଯ୍ୟ ଶ୍ରୀଧର ସ୍ୱାମୀ ପାଦେଭ୍ୟୋ ନମଃ । ସ୍ୱାମୀ ଶିବାନନ୍ଦ କହନ୍ତି - ପୂଣ୍ୟ ଶ୍ଳୋକ ଶ୍ରୀଧର ସ୍ୱାମୀ ୧୩୦୦ ଖ୍ରୀଷ୍ଟାବ୍ଦରୁ ୧୪୦୦ ଖ୍ରୀଷ୍ଟାବ୍ଦର ପ୍ରଥମ ପାଦରେ ମୟୂରଗ୍ରାମ (ମରେଇଗାଁ) ପତିବଂଶରେ

ଜନ୍ମ ଗ୍ରହଣ କରିଥିଲେ । ଏହାଙ୍କର ନାମ ଶ୍ରୀଧର ପତି ଥିଲା । ସେ ସଂସ୍କୃତ ଶାସ୍ତ୍ରରେ ଜଣେ ଅସାଧାରଣ ପଣ୍ଡିତ ଥିଲେ । ବେଦ ଓ ଉପନିଷେଦରେ ମଧ୍ୟ ତାଙ୍କର ଗଭୀର ଜ୍ଞାନ ଥିଲା । ସେ କଙ୍କଣ (ଆଧୁନିକ କଙ୍କାଳି) ଗ୍ରାମଠାରେ ଗୋଟିଏ ସଂସ୍କୃତ ବିଦ୍ୟାଳୟ ପ୍ରତିଷ୍ଠା କରି ସେଥିରେ ଛାତ୍ରମାନଙ୍କୁ ଶିକ୍ଷା ପ୍ରଦାନ କରୁଥିଲେ ।

ପ୍ରତ୍ୟହ ସନ୍ଧ୍ୟାସମୟରେ ସେ ଘରକୁ ଫେରୁଥିବା ବାଟରେ ବଡ଼ପାଳ ଗ୍ରାମ ପଶ୍ଚିମ ପଟରେ ଥିବା ଜଙ୍ଗଲ ମଧ୍ୟରେ ଗୋଟିଏ ନିମ୍ବ ବୃକ୍ଷମୂଳରେ ସନ୍ଧ୍ୟାକର୍ମ କରୁକରୁ ସାଧନାରେ ସିଦ୍ଧି ଲାଭ କରିଥିବାରୁ ଅଦ୍ୟାବଧି ସେହି ଜଙ୍ଗଲ "ମହାନିମା" ନାମିତ ହୋଇଅଛି ।

ଥରେ ରେମୁଣା ଚଣ୍ଡିହାଟ (କ୍ଷୀରଚୋରା ଗୋପୀନାଥଙ୍କ ମନ୍ଦିର ନିକଟରେ) କୁ ଯାଇ ବୁଲୁବୁଲୁ ଦେଖିଲେ ଜନୈକ କୈବର୍ତ୍ତ ନିକିତିରେ ପଥର ବଟକରା ପକାଇ ମତ୍ସ୍ୟ ଓଜନ କରୁଛି । ସେହି ପଥର ଖଣ୍ଡଉପରେ ଚକ୍ରାଙ୍କିତ ଚିହ୍ନ ଥିବାର ଦେଖି ଶ୍ରୀଧର ପଥର ଖଣ୍ଡି ନେବାପାଇଁ କୈବର୍ତ୍ତ ନିକଟରେ ନିଜର ଇଚ୍ଛା ପ୍ରକାଶ କଲେ । କୈବର୍ତ୍ତ ଅତ୍ୟନ୍ତ ଭକ୍ତି ପୂତ ଭାବରେ ଶ୍ରୀଧରଙ୍କୁ ପଥର ଖଣ୍ଡି ଅର୍ପଣ କଲା ।

ପରଦିନ ପ୍ରଭାତରୁ ନିତ୍ୟକର୍ମ ସମାପନକରି ଶ୍ରୀଧର ଶାଳଗ୍ରାମ ଶିଳା ପ୍ରତିଷ୍ଠା ଓ ଷୋଡ଼ଶ ଉପଚାର ପୂଜାକର୍ମ ଯଥାରୀତି ଶେଷକଲେ । ଅର୍ଦ୍ଧରାତ୍ର ସମୟରେ ଶ୍ରୀଧରଙ୍କୁ ସ୍ୱପ୍ନାଦେଶ ହେଲା "ମୋର ବିଗ୍ରହକୁ ଶୀଘ୍ର କୈବର୍ତ୍ତହସ୍ତରେ ଅର୍ପଣ କର, ନହେଲେ ତୁମର ଭୀଷଣ ଅମଙ୍ଗଳ ହେବ" ସ୍ୱପ୍ନାଦେଶ ପାଇ ଶ୍ରୀଧରଙ୍କ ସହସା ନିଦ୍ରାଭଗ୍ନହେଲା ସେ ଗଭୀର ଭାବରେ ଚିନ୍ତା କରିବାକୁ ଲାଗିଲେ ଏବଂ ଯେତେ ବିପଦ ଆସିଲେ ମଧ୍ୟ, ବିଗ୍ରହ ପରିତ୍ୟାଗ କରିବେ ନାହିଁ ବୋଲି କୃତସଂକଳ୍ପ ହେଲେ ।

ଦିନେ ଗଭୀର ରାତ୍ରିରେ ତାଙ୍କ ଜ୍ୟେଷ୍ଠ ପୁତ୍ରର ଅକାଳ ବିୟୋଗ ଘଟିଲା । ପରିବାର ମଧ୍ୟରେ ଶୋକର ଲହରୀ ଖେଳିଲା, ମାତ୍ର ଶ୍ରୀଧର ଅତ୍ୟନ୍ତ ଧୈର୍ଯ୍ୟର ସହିତ ମୃତପୁତ୍ରର ଶବସତ୍କାର ଓ ଶୌଚକ୍ରିୟା ସମାପନ କଲେ ।

ପୁନର୍ବାର ସ୍ୱପ୍ନାଦେଶ ହେଲା, ତଥାପି ଶ୍ରୀଧର ନିଜ ପ୍ରତିଜ୍ଞାରେ ଅଟଳ ରହିଲେ, ସତକୁ ସତ ନିଜେ ଗଭୀର ଅନ୍ଧକାର ରାତ୍ରିରେ ତାଙ୍କ ପତ୍ନୀଙ୍କ ମଧ୍ୟ ଅକାଳ ବିୟୋଗ ଘଟିଲା । ସେଥିରେ ମଧ୍ୟ ଅଚଳ ଅଟଳ ଶ୍ରୀଧର ନିଜପତ୍ନୀର ଶବସତ୍କାର ଓ ଅନ୍ତ୍ୟେଷ୍ଟିକ୍ରିୟା ଶେଷକଲେ । ତାହାର କିଛିଦିନପରେ ରାଜସ୍ୱ ବାକିରେ ନିଜର ପୈତୃକ ସତ୍ତ୍ୱ ନିଲାମ ହୋଇଗଲା ।

କ୍ରମଶଃ ତାଙ୍କର ଅପବାଦ ଶତମୁଖୀ ହୋଇ ଉଠିଲା, ସର୍ବସ୍ୱହରା ଶ୍ରୀଧର ଲୋକାପବାଦ ସହ୍ୟ ନକରିପାରି, ଛଅବର୍ଷର ଶିଶୁପୁତ୍ର ବୈକୁଣ୍ଠ ଓ ଶାଳଗ୍ରାମ ଶିଳାକୁ ଧରି, ବାଲେଶ୍ୱର ସହର ନିକଟବର୍ତ୍ତୀ ବେଲଦା ଗ୍ରାମର ଶ୍ୱଶୁରଘର ଠାରେ ଅବସ୍ଥାନ କଲେ ।

ଥରେ କୋଠା ଉପରେ ଶୟନରତ ଶ୍ରୀଧରଙ୍କୁ ତାଙ୍କ ଶ୍ୱଶୁର ଭୋଜନ ପାଇଁ ଡାକିବାକୁ ଯାଇ, ଦେଖନ୍ତିତ ଶଯ୍ୟାର ଚତୁଃପାର୍ଶ୍ୱରେ ଅସଂଖ୍ୟ ନୃସିଂହମୂର୍ତ୍ତି ଦଣ୍ଡାୟମାନ । ଶ୍ୱଶୁର ଭୟ ବିହ୍ୱଳରେ ଚିତ୍‌କାର କରି ମୂର୍ଚ୍ଛା ଗଲେ । ଚିତ୍କାର ଶୁଣି ପଡୋଶୀମାନେ ଆସି କିଛି ଦେଖିବାକୁ ପାଇ ନଥିଲେ ।

ଦିନକର କଥା ଶ୍ରୀଧର ପୋଥି ଲେଖୁ ଲେଖୁ ଚିନ୍ତା କରୁଥାନ୍ତି ଶିଶୁପୁତ୍ର ବୈକୁଣ୍ଠର ଉପନୟନ କାର୍ଯ୍ୟ ସମ୍ପନ୍ନ କରି ବାନପ୍ରସ୍ଥ କରିବେ । ଏହି ସମୟରେ ଗୋଟିଏ ଝିଟିପିଟି ଡିମ୍ବ ଚାଳରୁ ଖସିପଡ଼ି ଭାଙ୍ଗିଗଲା । ଶାବକଟି ଲାଳରେ ଜଡ଼ବଡ଼ୁ ହେଉଥାଏ ଏହି ସମୟରେ ମଶାଟିଏ ଉଡ଼ିଆସି ସେହି ଲାଳରେ ଲାଖିଗହିଲା ଶାବକଟି ମଶାଟିକୁ ଖାଇବାକୁ ଲାଗିଲା ଏହି ଘଟଣା ଶ୍ରୀଧରଙ୍କ ମନରେ ରେଖାପାତ କଲା, ସେ ବାରମ୍ବାର ଚିନ୍ତା କରିବାକୁ ଲାଗିଲେ । ଯେଉଁ ଈଶ୍ୱର ଜନ୍ମ ପୂର୍ବରୁ ଜୀବପାଇଁ ଆହାର ଯୋଗାଡ଼ କରି ରଖିଛନ୍ତି ମୁଁ ପୁଣି କିଏ ? ବୈକୁଣ୍ଠର ଉପନୟନ କରିବି । ଏହି ସିଦ୍ଧାନ୍ତ ଗ୍ରହଣ କରି ବାନପ୍ରସ୍ଥ ଗମନ କଲେ । ସନ୍ଧ୍ୟା ଆଗତ ପ୍ରାୟ ପଥରେ ଯାଉଁ ଯାଉଁ, ଶ୍ରୀଧର ସୁବର୍ଣ୍ଣରେଖା ନଦୀକୂଳରେ ଉପସ୍ଥିତ ହୁଅନ୍ତି, ଜନୈକ ସାଧୁଙ୍କ ସହିତ ସାକ୍ଷାତ୍ ହୁଏ ନୃସିଂହଙ୍କର ପ୍ରକୃତ ମନ୍ତ୍ର ଜାଣି ନଥିବାରୁ ତୁମର ବହୁତ ଅମଙ୍ଗଳ ହୋଇଥିବାରୁ ସାଧୁ ପ୍ରକାଶ କରନ୍ତି ଶ୍ରୀଧରଙ୍କୁ ନୃସିଂହ ମନ୍ତ୍ର ଓ ପରଶ ମଣି ପ୍ରଦାନ କରି ସାଧୁ ଅର୍ନ୍ତଧାନ ହୁଅନ୍ତି । ସାଧୁ ଯେ ସ୍ୱୟଂ ନୃସିଂହ ଦେବ ! ଏଥିରେ ସନ୍ଦେହର ଅବକାଶ ରହିଲା ନାହିଁ । ଯାହାଙ୍କୁ ପାଇବା ପାଇଁ ସେ ସଂସାରର ସବୁକିଛି ଶ୍ରମ ଜଳାଞ୍ଜଳି ଦେଇଥିଲେ ଏତେ ନିକଟରେ ତାଙ୍କୁ ପାଇ ମଧ୍ୟ ଚିହ୍ନି ନପାରି ଅନୁତପ୍ତ ହେବାକୁ ଲାଗିଲେ ।

ସନ୍ଧ୍ୟାକର୍ମ କରିବାକୁ ଯାଉଛନ୍ତି ଜଣେ ଭିକ୍ଷୁ ବ୍ରାହ୍ମଣ ଶ୍ରୀଧରଙ୍କ, ନିକଟରୁ କିଛି ଭିକ୍ଷା ଚାହିଁଲେ, ମାତ୍ର ସର୍ବହରା ଶ୍ରୀଧରଙ୍କର କଣ ଅଛିଯେ ଦେବେ । ଏହି ଚିନ୍ତା କରୁକରୁ ପରଶ ମଣି କଥା ମନରେ ପଡ଼ିଲା, ସେକାଳ ବିଳମ୍ବ ନକରି ପରଶମଣି ଖଣ୍ଡି ବ୍ରାହ୍ମଣଙ୍କୁ ପ୍ରଦାନ କରି, ତାହାକୁ କିପରି ଲୁହାଖଣ୍ଡରେ ଲଗାଇଦେଲେ, ସୁନାରେ ପରିଣତ ହୁଏ, ତାହାର ମର୍ମ ବୁଝାଇଦେଲେ ।

ବ୍ରାହ୍ମଣ ମଣିଟି ପାଇ କିଛି ଦୂର ଅଗ୍ରସର ହୋଇ ଭାବିବାକୁ ଲାଗିଲେ ଯେଉଁ ଲୋକନିକଟରେ ଏଭଳି ଧନ ଥାଇ ମଧ୍ୟ ତୁଚ୍ଛ ! ତାହାଙ୍କ ନିକଟରେ ଯାଠାରୁ ଆହୁରି ମୂଲ୍ୟବାନ ଧନ ନିଶ୍ଚୟ ଥିବ । ମୁଁ କଣ କରିବି ଏ ଧନରେ, ମୋର କଣ ଲୋଡ଼ା ଏହା ଭାବି ବ୍ରାହ୍ମଣ ଶ୍ରୀଧରଙ୍କ ନିକଟରେ ଉପସ୍ଥିତହୋଇ, ମଣିଟି ଫେରାଇ ଦେଇ କହିଲେ ''ମହାଭାଗ'' ଏଧନରେ ମୋର ପ୍ରୟୋଜନ ନାହିଁ । ଆପଣଙ୍କ ନିକଟରେ ଯେଉଁ ଅମୂଲ୍ୟ ଧନ ଅଛି, ତା ମୋର ଆବଶ୍ୟକ । ଶ୍ରୀଧର ବ୍ରାହ୍ମଣଙ୍କର ମନୋଭାବ ଜାଣିପାରି, ପରଶମଣିଟି ନଦୀଗର୍ଭକୁ ଫିଙ୍ଗିଦେବା ପାଇଁ ଉପଦେଶ ଦେଲେ । ବ୍ରାହ୍ମଣ ମଣିଟି ଫିଙ୍ଗିଦେଇ ଶ୍ରୀଧରଙ୍କର ପଦାଙ୍କ ଅନୁସରଣ କଲେ ।

ଶ୍ରୀଧର କିଛି ଦିନପରେ କାଶୀଧାମରେ ପଦାର୍ପଣ କଲେ, ତତ୍କାଳୀନ କାଶୀର ରାଜା ଜୟଚନ୍ଦ୍ର ! ଶ୍ରୀମଦ୍‌ଭାଗବତ ଗୀତାର ଦୁର୍ବୋଧ ଟୀକାକୁ, ସୁବୋଧ ପ୍ରଣୟନ ନିମନ୍ତେ ଏକ ପଣ୍ଡିତ ସମ୍ମିଳନୀକୁ ଆହ୍ୱାନ କରିଥାନ୍ତି । ବିଭିନ୍ନ ଦେଶ ବିଦେଶରୁ ବହୁ ପଣ୍ଡିତବର୍ଗ ସେଥିରେ ଯୋଗ ଦେଇଥାନ୍ତି । ଶ୍ରୀଧର ମଧ୍ୟ ଏହି ସମ୍ମିଳନୀରେ ଯୋଗଦେଇ ଟୀକା ରଚନା କରିବାରେ ମନୋନିବେଶକଲେ ।

ଯଥା ସମୟରେ ପଣ୍ଡିମାନେ ସ୍ୱ-ସ୍ୱ ରଚିତ ଟୀକା ଗୁଡ଼ିକ ଉପସ୍ଥାପିତ କଲେ । ରାଜା ଜଣେ ପଣ୍ଡିତ ଥିଲେ ମଧ୍ୟ, ସମସ୍ତ ଟୀକା ଅଧ୍ୟୟନ କରି ତାହାର ମାନ ନିର୍ଦ୍ଧାରଣ କରିବାକୁ ଅକ୍ଷମତା ପ୍ରକାଶ କରିବାରୁ ପଣ୍ଡିତ ମଣ୍ଡଳୀ ମଧ୍ୟରେ ସ୍ୱ - ସ୍ୱ ଟୀକାର ପ୍ରାଧାନ୍ୟ ନେଇ ବାଦାନୁବାଦ ଆରମ୍ଭ ହେଲା । ପରିଶେଷରେ ରାଜା ! ସମସ୍ତଟୀକା ବିଶ୍ୱେଶ୍ୱରଙ୍କ ନିକଟରେ ଉପସ୍ଥାପିତ କରାଯିବ ଓ ଯେଉଁ ଟୀକା ବିଶ୍ୱେଶ୍ୱରଙ୍କ ଦ୍ୱାରା ଗୃହୀତ ହେବ, ତାହାହିଁ ସର୍ବଶ୍ରେଷ ଟୀକାବୋଲି ଘୋଷଣା କରାଯିବାକୁ ଜଣାଇ ଦେଲେ । ତଦନୁସାରେ ସମସ୍ତ ଟୀକା ଗୁଡ଼ିକୁ ମନ୍ଦିର ମଧ୍ୟରେ ରଖାଇ, ତାଲା ପକାଇ, ସେଥିରେ ଜଉମୁଦ ଦିଆଗଲା ଓ ଚତୁର୍ଦ୍ଦଶ ପ୍ରହରୀ ବେଷ୍ଟିତ କରାଗଲା ।

ପରଦିନ ପ୍ରଭାତରେ ରାଜା ପାରିଷଦବର୍ଗଙ୍କ ସହ ମନ୍ଦିର କବାଟ ଖୋଲି ଦେଖିଲେ ଶ୍ରୀଧରଙ୍କ ରଚିତ ଟୀକାଖଣ୍ଡି, ବିଶ୍ୱେଶ୍ୱରଙ୍କ ନାଭି କମଳରେ ସ୍ଥାନ ପାଇଛି ରାଜା ଟୀକା ଖଣ୍ଡି ଗ୍ରହଣ କରି ଦେଖିଲେ, ସେହିଦିନ ଠାରୁ ଶ୍ରୀଧର କାଶୀଧାମରେ ଜଣେ ବିଶିଷ୍ଟ ପଣ୍ଡିତ ଭାବରେ ପରିଚିତ ଓ ସମ୍ମାନୀତ ହେବାକୁ ଲାଗିଲେ । ମାତ୍ର ଶ୍ରୀଧର ନିଜର ଯଶ ପ୍ରଚାର ଭୟରେ କାଶିନଗରୀ ପରିତ୍ୟାଗ କରି ପୁରୁଷୋତ୍ତମରେ ପଦାର୍ପଣ କଲେ । ଏହି ସମୟରୁ ମଧ୍ୟ ଆମ ସମାଜରେ ଗୀତା ଜୟନ୍ତୀ'' ପାଳିତ ହୋଇ ଆସୁଛି ।

ସେ ଜଗନ୍ନାଥଙ୍କ ଦର୍ଶନ ପୂର୍ବକ ଗୋବର୍ଦ୍ଧନ ମଠରେ ଅବସ୍ଥାନ କରୁଥିଲେ । ଶ୍ରୀ ଶ୍ରୀ ରାମକୃଷ୍ଣନନ୍ଦଙ୍କ ଶିଷ୍ୟତ୍ୱ ଗ୍ରହଣ କରିଥିଲେ ଗୁରୁଙ୍କ ପରଲୋକାନ୍ତ ଶଙ୍କରାଚାର୍ଯ୍ୟଙ୍କ ପରମ୍ପରାକ୍ରମେ । ଶ୍ରୀଧର ପତି ! ଦଣ୍ଡୀ ୧୦୮ ଶଙ୍କରାଚାର୍ଯ୍ୟ ଶ୍ରୀମଦ୍ ଶ୍ରୀଧର ସ୍ୱାମୀ, ୧୦ମ ଶଙ୍କରାଚାର୍ଯ୍ୟରୂପେ ଅଭିଷିକ୍ତ ହେଲେ ।

ଯୁକ୍ତି ଉଠେ, ଗୋବର୍ଦ୍ଧନ ମଠର ବ୍ରହ୍ମଚାରୀମାନେହିଁ ପରମ୍ପରାକ୍ରମେ ଶଙ୍କରାଚାର୍ଯ୍ୟ ରୂପେ ଅଭିଷକ୍ତ ହୁଅନ୍ତି । ତେଣୁ ଶ୍ରୀଧରଙ୍କର ବଂଶଥିବା କଥା ମନଗଢ଼ା କପୋଳ କଳ୍ପିତ ଇତ୍ୟାଦି ।

କେତେକ ଯୁକ୍ତି କରନ୍ତି, ଶଙ୍କରାଚାର୍ଯ୍ୟମଠରେ ବ୍ରହ୍ମଚାରୀମାନଙ୍କ ମଧ୍ୟରେ ଶଙ୍କରାଚାର୍ଯ୍ୟ ହେବାପାଇଁ କେହି ଯୋଗ୍ୟ ନଥିବେ । ଶ୍ରୀଧର ପ୍ରଥମରୁ ବ୍ରହ୍ମଚାରୀ କିମ୍ବା କୈପୀନଧାରୀ ସନ୍ନ୍ୟାସୀ ନଥିଲେ କିମ୍ବା ତାଙ୍କର ସ୍ୱାମୀ ପଦବୀ ନ ଥିଲା । ଜନ୍ମସ୍ଥାନରୁ କାଶୀଧାମ ଓ କାଶୀଧାମରୁ ଗୋବର୍ଦ୍ଧନ ମଠରେ ଅବସ୍ଥାନ ପର୍ଯ୍ୟନ୍ତ ତାଙ୍କୁ ଅନ୍ୟୁନ ୭୦ ରୁ ୭୫ ବର୍ଷ ପର୍ଯ୍ୟନ୍ତ ହୋଇଥିବ । ସେ ପର୍ଯ୍ୟନ୍ତ ସେ ସନ୍ନ୍ୟାସୀ ନଥିଲେ ।

ତତ୍କାଳୀନ ଉତ୍କଳରେ ଗଙ୍ଗବଂଶର ଶ୍ରେଷ୍ଠ ଓ ଶେଷ ଅପୁତ୍ରିକ ରାଜା ପ୍ରତାପବୀର ନିଶଙ୍କ ଭାନୁ ୧୪୦୫ ଖ୍ରୀଷ୍ଟାବ୍ଦରୁ ୧୪୩୫ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜୁତି କରୁଥିଲେ ଏବଂ ସୂର୍ଯ୍ୟବଂଶର ଅନାଥ କପିଳେନ୍ଦ୍ର ଦେବଙ୍କୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରି ତାଙ୍କୁ ସିଂହାସନ ଓ ରାଜ୍ୟଭାର ଅର୍ପଣ କରିଥିଲେ ।

ରାଜା ଢେଙ୍କାନାଳର ଶୈବକ୍ଷେତ୍ର କପିଳାସ ଠାରେ ଶ୍ରୀ ଶ୍ରୀ ଶିଖରେଶ୍ୱରଙ୍କ ସେବାପୂଜାର ତତ୍ତ୍ୱବଧାରକ ରୂପେ ଶ୍ରୀଧର ସ୍ୱାମୀଙ୍କୁ ଏଠାକୁ ଅଣାଇଁ ଥିଲେ । ଶ୍ରୀଧର ସ୍ୱାମୀ ବ୍ରହ୍ମଚାରୀ ମଠରେ ଅବସ୍ଥାନ ପୂର୍ବକ, ଶ୍ରୀ ନୃସିଂହଙ୍କ ଉପାସନା ଓ କଠୋର ତପଶ୍ଚର୍ଯ୍ୟାରେ ସିଦ୍ଧିଲାଭ କରିଥିଲେ ।

ରାଜ ଅନୁଗ୍ରହ ଓ କପିଳାସର ମନୋରମ ପରିବେଶ, ଶ୍ରୀଧରଙ୍କ ସାଧନାକୁ ଦୃଢ଼ୀଭୂତ କରିଥିଲା । ସେ ଏହି ସୁଯୋଗରେ ଭାଗବତ ଭାବାର୍ଥ ଦୀପିକା ଇତ୍ୟାଦି ୧୪ଟି ଗ୍ରନ୍ଥର ଟୀକା ରଚନା କରିବାକୁ ସମର୍ଥ ହୋଇଥିଲେ ।

ମହର୍ଷି ଦେବବ୍ୟାସ ପ୍ରଣୀତ ସଂସ୍କୃତ ଶ୍ରୀମଦ୍ଭାଗବତ ଅଠର ହଜାର ଶ୍ଳୋକ ରଚନା କରିଥିଲେ ହେଁ, ତାହା ଅତ୍ୟନ୍ତ ଦୁର୍ବୋଧ ଥିବାରୁ, ଶ୍ରୀଧର ସ୍ୱାମୀ ତାହାକୁ ଚବିଶ ହଜାର ଶ୍ଳୋକ ରଚନାକରି, ଉତ୍କଳରେ ଭାଗବତର ଆଦର ବଢ଼ାଇଥିଲେ । ଯାହାଦ୍ୱାରା ଅତିବଡ଼ି ଜଗନ୍ନାଥ ଦାସ ଓଡ଼ିଆରେ ଭାଗବତ ରଚନା କରିବାକୁ ପ୍ରେରଣା ପାଇଥିଲେ ।

ଅଦ୍ୟାବଧି କପିଳାସ ଠାରେ ସ୍ୱାମୀଜୀଙ୍କର ସମାଧିମନ୍ଦିର ଭଗ୍ନାବସ୍ଥାରେ ଅଛି । ଉତ୍କଳ ଭୂଖଣ୍ଡରେ ମୁଦ୍ରଣ ଶିଳ୍ପ ନଥିବାରୁ, ସ୍ୱାମୀଜୀଙ୍କ ପ୍ରଣୀତ ଗ୍ରନ୍ଥମାନ ସୁଦୂର କାଶୀନଗରୀରୁ ହିନ୍ଦୀଭାଷାରେ ମୁଦ୍ରିତ ହେଉଥିଲା ।ଏଇଥିପାଇଁ କେବଳ ତାଙ୍କୁ ବେଙ୍ଗଲ, ଗୁଜୁରାଟି ବୋଲି ପରିଚିତ କରୁଛନ୍ତି ।

କବି ଭୂଷଣ ରାଜକିଶୋର ପଟ୍ଟନାୟକ ଏବଂ ଢେଙ୍କାନାଳ ରାଜପରିବାରର କେତେକ ବିଶିଷ୍ଟ ବ୍ୟକ୍ତି ବହୁଶ୍ରମ ଓ ଅର୍ଥତ୍ୟାଗ କରି ୧୯୮୦ ମସିହାରେ ବହୁତଥ୍ୟ ସମ୍ବଳିତ'' ଶମ୍ଭୁକ୍ଷେତ୍ର କପିଳାସ ଓ ଶ୍ରୀଧର ସ୍ୱାମୀ'' ନାମକ ଖଣ୍ଡିଏ ପୁସ୍ତକ ପ୍ରକାଶ କରି, ଶ୍ରୀଧରଙ୍କୁ ଲୋକ ଲୋଚନକୁ ଆଣି ପାରିଥିବାରୁ ଆମ୍ଭେ ତଥା ଆମ୍ଭର ଅନୁଷ୍ଠାନ ସେମାନଙ୍କ ନିକଟରେ ଚିରକୃତଜ୍ଞ ।

ଏହି ଅଞ୍ଚଳର ଶିକ୍ଷା,ଦୀକ୍ଷା, ସଭ୍ୟତା ସୀମିତ ଅବସ୍ଥାରେ ଥିବାରୁ ପ୍ରବନ୍ଧ ବର୍ଣ୍ଣିତ ମହାତ୍ମାଙ୍କର ଜୀବନ ଇତିହାସ ଓ କୃତି ସମ୍ବନ୍ଧେ, ବିଶେଷ ତଥ୍ୟ ସଂଗ୍ରହ କରିବାକୁ ଆମ୍ଭେମାନେ ସକ୍ଷମ ହୋଇପାରିନାହୁଁ । ମୁଁ ମୋର ପୂଜ୍ୟପିତା ସ୍ୱର୍ଗୀୟ ପିତା, କୃଷ୍ଣପତିଙ୍କ ଠାରୁ କନୌଜ ଗୋଷ୍ଠୀ ବ୍ରାହ୍ମଣମାନଙ୍କ ପରିଚୟ ଓ ସନ୍ଥ ଶିବାନନ୍ଦଙ୍କ ଠାରୁ ଶ୍ରୀଧର ସ୍ୱାମୀଙ୍କ ବିଷୟରେ ଯାହା ଶୁଣିଥିଲି, ତାହାହିଁ ଏ ପ୍ରବନ୍ଧରେ ଆଲୋଚନା କରିଛି ମାତ୍ର ।

•

ମୟୂରଗ୍ରାମ, ରେମୁଣା, ବାଲେଶ୍ୱର ।

# ନରତ୍ୱଂ ଦୁର୍ଲଭଂ ଲୋକେ

* ଅଧ୍ୟାପକ କରୁଣାକର ଦାସ (ସଂସ୍କୃତ ବିଭାଗ)

*The best portion of a good man's Life is his Little, nameless, unremembered acts of kindness and of Love.*
*(Willaim Wordsworth)*

ସ୍ୱର୍ଣ୍ଣପ୍ରସବିନୀ, ପବିତ୍ର ଜାହ୍ନବୀ ବାରି ବିଧୌତ ପରିପୂତ, ଆର୍ଯ୍ୟଭୂମି ଭାରତ । ଯାହା ଯୁଗେ ଯୁଗେ ବହୁ ରତବାକ୍ ସିଦ୍ଧ ସନ୍ଥ, ତ୍ୟାଗପୂତ, ଆତ୍ମାଙ୍କୁ ଜୀବନ୍ୟାସ କରାଇ ଚିରଧନ୍ୟା, ଯେଉଁ ପୁଣ୍ୟାତ୍ମା ମାନଙ୍କର ଚରିତ ଏବଂ ଚରିତ୍ର କାଳଜୟୀ ତଥା ଜ୍ଞାନର କଷଟିପଥରେ ଅସକୃତ ପରୀକ୍ଷିତ, ଯେଉଁ ମାନଙ୍କ ଗୁଣାବଳୀ ଗାନ କରିବାକୁ ବିଶ୍ୱ ସାହିତ୍ୟ ଶତଃ ମୁଖରିତ, ଇତିହାସ ଅବସନ୍ନ ତଥା ଗବେଷକ ମଣ୍ଡଳୀ ବିବଦମାନ, ଧନ୍ୟ ସେହି ପୁଣ୍ୟପ୍ରାଣ ମହାପୁରୁଷଗଣ । ଯେଉଁମାନେ ଭାରତୀୟ ବିଜୟ କେତନକୁ ସ୍ୱୀୟ ଜ୍ଞାନ ଦଣ୍ଡର ସାହଚର୍ଯ୍ୟରେ ଚିର ଉଡ୍ଡୀୟମାନ କରାଇ କ୍ଷମା, ଦୟା, ଅନସୂୟା, ଦାକ୍ଷିଣ୍ୟ, ତିତିକ୍ଷା ଏବଂ ଆର୍ଜବର ମୂର୍ତ୍ତିମାନ୍ ପ୍ରତୀକରୂପେ ଯୁଗଯୁଗକୁ ପରିପୂଜ୍ୟମାନ ହେଉଅଛନ୍ତି । ସେମାନଙ୍କ ଚରିତ ଏବଂ ଚରିତ୍ରର ସର୍ବୋତ୍କୃଷ୍ଟ ପ୍ରବାଦ ଦେବାକୁ ଯାଇ ସାହିତ୍ୟ କହେ :-

"ନରତ୍ୱଂ ଦୁର୍ଲଭଂ ଲୋକେ ।"

ତଥାକଥିତ ପୁଣ୍ୟାତ୍ମା ମାନଙ୍କର ଚରିତ୍ର ଏବଂ ଚରିତ୍ର ଅଧ୍ୟୟନ କଲେ , ଶ୍ରୀଧର ସ୍ୱାମୀଙ୍କର ମାହାତ୍ମ୍ୟ ପାଠକ ମାନଙ୍କର ନୟନ ଗୋଚର ହୋଇଥାଏ । ସେ ଥିଲେ, ସୁସଂସ୍କୃତ ବିଦ୍ୱତ୍ ପ୍ରବର ତଥା ଭାରତୀୟ - ସଂସ୍କୃତିର ଜୀବନ୍ତ - ପ୍ରତୀକ । ଯାହାଙ୍କର ମାହାତ୍ମ୍ୟ ବ୍ୟକ୍ତ କରିବାକୁ ଯାଇ ଲଳିତ କବି ଲକ୍ଷ୍ମୀ ନାରାୟଣ ମହାରଣା ରଚନା କଲେ : - "ଧର୍ମ ଓ ସଂସ୍କୃତିର ଜୈତ୍ର ପତାକା ।

ଜ୍ଞାନ ଓ ପାଣ୍ଡିତ୍ୟର ଗୌରବ ଟୀକା ।

ଭାରତୀ ବରପୁତ୍ର ସ୍ୱାମୀ ଶ୍ରୀଧର ।

ରେମୁଣା ଗଉରବ ତୁଙ୍ଗ ଶିଖର ।।"

(କ୍ଷୀରଚୋରା ରସିକ ବିନୋଦ)

ଏତାଦୃଶ ମହାତ୍ମାଙ୍କର ଜନ୍ମ ଆଜକୁ ବହୁବର୍ଷ ପୂର୍ବେ ଉତ୍କଳର ତଥା ବିଶ୍ୱ ପ୍ରସିଦ୍ଧ ପୁଣ୍ୟପୀଠ କ୍ଷୀରଚୋରା ଗୋପୀନାଥଙ୍କର ଲୀଳାସ୍ଥଳୀ ରେମୁଣାର ଅନତି ଦୂରବର୍ତ୍ତୀ - ଗ୍ରାମ ମୟୂରଗ୍ରାମରେ ଏବଂ ପରବର୍ତ୍ତୀ ଜୀବନକାଳରେ ସେ ଐହିକ ସଂସାର ପ୍ରତି ବୀତସ୍ପୃହ ହୋଇ ସନ୍ନ୍ୟାସବ୍ରତକୁ ଶ୍ରେୟମାର୍ଗ ମନେକରି ନବଦ୍ୱୀପକୁ ଯାତ୍ରା କରିଥିଲେ। ଯାହାର ପ୍ରମାଣ ଲଳିତ କବିଙ୍କ କାବ୍ୟରୁ ନିମ୍ନୋକ୍ତ ମତେ ମିଳିଥାଏ । ଯଥା :-

''ଅନ୍ତର ତଳ ହେଲା ବୈରାଗ୍ୟେ ଝଳି

ଶ୍ରୀଧର ଗଲେ ଯେବେ ସନ୍ନ୍ୟାସେ ଚଳି ।

ମୟୂର, ଗ୍ରାମ ତେଜି ଭକ୍ତ - ଚିତ୍ତରେ ।

ରହିଲେ ଯାଇ ଦୂର ନବଦ୍ୱୀପରେ ।।

(କ୍ଷୀରଚୋରା ରସିକବିନୋଦ)

(ଉତ୍କଳର ପୁଣ୍ୟପୀଠ ରେମୁଣାସ୍ଥ କ୍ଷୀରଚୋରା ଗୋପୀନାଥଙ୍କ ଲୀଳାସ୍ଥଳୀର ଅନତିଦୂରରେ ଶ୍ରୀଧର ସ୍ୱାମୀ ମୟୂର ଗ୍ରାମରେ (ମେରେଇଗାଁ) ଜନ୍ମ ହୋଇଥିଲେ । ଏହାର ନିର୍ଭୁଲ ପ୍ରମାଣ ପାଇଁ ଶ୍ରୀ କୃଷ୍ଣ ଦାସ ବିରଚିତ ଶ୍ରୀ ଶ୍ୟାମାନନ୍ଦ ପ୍ରକାଶ ଗ୍ରନ୍ଥ ଦ୍ରଷ୍ଟବ୍ୟ)

ଶ୍ରୀଧର ସ୍ୱାମୀଙ୍କର ସାଂସାରିକ ସୌଖ୍ୟ, ସ୍ୱାଛନ୍ଦ୍ୟ ପ୍ରତି ବିରାଗତା ଆସିବାର କାରଣ ପ୍ରଚ୍ଛନ୍ନରେ ଏକ ଗୂଢ଼ ତତ୍ତ୍ୱ ନିହିତ, ଯାହାର ପ୍ରମାଣ ଆମେ ଶ୍ରୀ ଲାଲଦାସ ବାବାଜୀଙ୍କ ବିରଚିତ ''ଶ୍ରୀ ଶ୍ରୀ ଭକ୍ତମାଳା'' ଗ୍ରନ୍ଥରୁ ପାଇଥାଉଁ । ଯଥା :

ମହାଭାଗବତୋତ୍ତମ ପଣ୍ଡିତ ଗମ୍ଭୀର ।

ବୈରାଗ୍ୟ ଜନ୍ମିଲା ଗୃହେମତି ନହେ ସ୍ଥିର ।।

ଗୃହେ ଏକ ସ୍ତ୍ରୀ ମାତ୍ର ପୂର୍ଣ୍ଣ ଗର୍ଭବତୀ ।

ତେଜୀୟା ଯାଇତେ ବେଳେ ହୋଇଲ ଦୃଢ଼ମତି ।।

ହେନକାଳେ ନାରୀପୁତ୍ର ପ୍ରସବ ହୋଇୟା ।

କାଳପ୍ରାପ୍ତ ହୈଲା ତାର ବାଳକ ରାଖିୟା ।।

ସାଧୁଉତ୍‌କଣ୍ଠାତେ ଗୃହେ ରହିତେନା ପାରେ ।

ଚିନ୍ତୟେ ବାଳକ ଏହି କେବା ରକ୍ଷା କରେ ।।''

ଭାବିତେ ଭାବିତେ ଦୈବେ ଏକ ଜେଠଡ଼ିମ୍ବ ।

ଚାଳେ ହୋଇତେ ପଡ଼ିଗେଲା ବିନା ଅବଲମ୍ବ ।।'

ଭାଙ୍ଗିୟା ଭିତର ହୈତେ ବାଛା ନକଶିୟା ।

ଖାଇଲ ସମ୍ମୁଖେ ଏକ ମକ୍ଷିକା ଧରିୟା ।।

ସାଧୁ ତାହା ଦେଖି ମନେ ବିଚାର କରିଲା ।

ସେହି ଶିଶୁ ରକ୍ଷିବେ ଯେ ଇହାରେ ରକ୍ଷିଲା ।

ଏତେକ ଭାବିୟା ତେଜି ତା ଗମନ କରିଲା ।

ଅନାଥ ବାଳକ ଗ୍ରାମ୍ୟ ଲୋକେତେ ପାଳିଲା ।

ସ୍ୱାମୀଙ୍କର ଗୁରୁଥିଲେ ଶ୍ରୀମାନ୍ ପରମାନନ୍ଦ ପୁରୀ । ଯାହାଙ୍କର ଅପାର କୃପାରୁ ଶ୍ରୀଧର ସ୍ୱାମୀଙ୍କ ଅନ୍ତର ମଧ୍ୟରେ ନୃସିଂହଙ୍କ ପ୍ରତି ଅଶେଷ ଭକ୍ତିଭାବ ଜାତ ହୋଇଥିଲା । ଫଳତଃ ସେ ସାଂସାରିକ ମୋହ, ମାତ୍ସର୍ଯ୍ୟ ପ୍ରତି ବୀତସ୍ପୃହ ହୋଇ ସନ୍ନ୍ୟାସବ୍ରତକୁ ଶ୍ରେୟ ମାର୍ଗ ମନେକରି ତପସ୍ୟା କରିବାକୁ ଉଦ୍ୟତ ହେଲେ । ତଥା - କାଳେ ତାଙ୍କର ଧର୍ମ ପତ୍ନୀ ଗର୍ଭବତୀ ଥାନ୍ତି । ଗର୍ଭବତୀ ସ୍ତ୍ରୀକୁ ପରିତ୍ୟାଗ କରି ସନ୍ନ୍ୟାସୀ ବ୍ରତ ପାଳନ କରିବାକୁ ସେ ଅସମୀଚୀନ ବୋଲି ମନେ କରୁଥିଲେ । କାଳକ୍ରମେ ସ୍ତ୍ରୀ ଏକ ପୁତ୍ର ସନ୍ତାନ ଜନ୍ମ କରି ତତ୍‌କ୍ଷଣାତ୍ ଇହଲୀଳା ସମ୍ବରଣ କଲେ । ଫଳତଃ ସ୍ୱାମୀଙ୍କର ଉଦ୍‌ବେଗ ଦ୍ୱିଗୁଣ ବଢ଼ିଗଲା । ସଦ୍ୟଜାତ ସନ୍ତାନଟିର ଭାବି ପାଳୟିତା ନିମିତ୍ତ ସାଧୁଚିତ୍ତ ସତତଃ ଉଦ୍‌ବିଗ୍ନ ହେଲା । ମାତ୍ର ବିଧିର ବିଧାନ ବିଚିତ୍ର । ପ୍ରାଣୀର ଅନ୍ତର ମଧ୍ୟରେ ମହାଦର୍ଶନର ସ୍ରୋତ କେତେବେଳେ ପ୍ରବାହିତ ହୋଇତାକୁ ପ୍ରବଳ ବେଗରେ ପରମାତ୍ମାଙ୍କର ସାମୀପ୍ୟ ଲାଭ ନିମିତ୍ତ ପ୍ରେରଣା କରାଇବ, ତାହା ସେହି ଅଦୃଷ୍ଟ ପରମପୁରୁଷଙ୍କୁ ହିଁ ଜଣା । ସ୍ୱାମୀଙ୍କର ଏତାଦୃଶ ମାନସିକ ବିଭ୍ରାନ୍ତି ସମୟରେ ତାଙ୍କ ସମ୍ମୁଖରେ ଏକ ଝିଟିପିଟି ଅଣ୍ଡା ଚାଳରୁ ଭୂମିସାତ୍ ହେଲା ଏବଂ ତତ୍‌କ୍ଷଣାତ୍ ବିନା ଅବଲମ୍ବନରେ ଅଣ୍ଡା ମଧ୍ୟରୁ ଛୋଟ ଝିଟିପିଟି ଟିଏ ବାହାରି ଆଶି ମାଛିକୁ ଖାଇଲା । ଏହା ଦେଖି ଝିଟିପିଟିର ରକ୍ଷକ ମଦୀୟ ଆତ୍ମଜର ଭାବି ରକ୍ଷକ ବୋଲି ସ୍ଥିର କଲା । ତତ୍‌କ୍ଷଣାତ୍ ସନ୍ୟାସ ବ୍ରତ ଅବଲମ୍ବର ପୂର୍ବକ ସ୍ୱ ନିବାସରୁ ବାହାରି ଆସିଥିଲେ । ପରବର୍ତ୍ତୀକାଳରେ ସେହି ଶିଶୁଟି ଗ୍ରାମବାସୀଙ୍କ ଦ୍ୱାରା ପରିପାଳିତ ହୋଇ ରାମଲୀଳା ସାହିତ୍ୟ ଗ୍ରନ୍ଥ ରଚନା କରିଥିଲେ । ଏହାର ପ୍ରମାଣ ମଧ୍ୟ ଶ୍ରୀ ଶ୍ରୀ ଭକ୍ତ ମାଳା ଗ୍ରନ୍ଥରେ ମିଳିଥାଏ ।

ଯଥା :-

"ଏତେକ ଭାବିୟା ତେଜି ଗମନ କରିଲା,

ଅନାଥବାଳକ ଗ୍ରାମ୍ୟେ ଭୋକେତେ ପାଳିଲା ।

ସେହି ଶିଶୁ କାଳେ ମହା ପଣ୍ଡିତ ହୋଇଲା,

ଭଟୀନାମେ ରାମଲୀଳା ସାହିତ୍ୟ ବର୍ଣ୍ଣିଲା ।"

**ଶ୍ରୀଧର ସ୍ୱାମୀଙ୍କର ସମୟ :**

ସିଦ୍ଧ ପୁରୁଷଙ୍କର ଗୁଣାବଳୀ ଆଲୋଚନା ସମୟରେ ତଦୀୟ ସମୟ ନିରୂପଣ କରିବା ବିଧେୟ । ଏଥିପାଇଁ ନିମ୍ନୋକ୍ତ ପ୍ରମାଣ ଗ୍ରହଣ କରାଯାଇ ପାରେ ।

(କ) ଶ୍ରୀଧର ସ୍ୱାମୀଙ୍କର ସର୍ବଶ୍ରେଷ୍ଠ କୃତି ଶ୍ରୀମଦ୍ ଭାଗବତର ଭାବାର୍ଥ ଦୀପିକା ଟୀକାର ପ୍ରଣୟନ ନିମିତ୍ତ ସେ ଚିତ୍ ସୁଖାଚାର୍ଯ୍ୟଙ୍କ ବିରଚିତ ଭାଗବତ ବ୍ୟାଖ୍ୟାର ଅନୁସରଣ କରିଅଛନ୍ତି । ଚିତ୍ ସୁଖଙ୍କର ସମୟ ୧୨୨୦-୧୨୮୪ ଖ୍ରୀ:ଅ: ବୋଲି ବିଦ୍ୱାନ୍‌ମାନଙ୍କର ମତ । ତେଣୁ ସ୍ୱାମୀଙ୍କର ସମୟ ୧୨୦୦ ଖ୍ରୀ:ଅ:ର ପରବର୍ତ୍ତୀ କାଳ ।

(ଖ) ଶ୍ରୀଧର ସ୍ୱାମୀ ନିଜ ଭାଗବତ ଟୀକାରେ ବୋପ ଦେବଙ୍କୁ ସଙ୍କେତ କରିଅଛନ୍ତି ଏବଂ ତାଙ୍କର ମତବାଦକୁ ମଧ ଖଣ୍ଡନ କରି ଅଛନ୍ତି । ତେଣୁ ସେ ୧୩୦୦ ଖ୍ରୀ:ଅ:ର ପୂର୍ବବର୍ତ୍ତୀ ହୋଇ ନ ପାରନ୍ତି । ଏ କଥାକୁ ଶ୍ରୀ. ଏସ୍.କେ.ଦେ. ତାଙ୍କର ବଙ୍ଗଳା ସାହିତ୍ୟର ଇତିହାସର ସତର ପୃଷ୍ଠାରେ ବ୍ୟକ୍ତ କରିଅଛନ୍ତି ।

(ଗ) ଶ୍ରୀଧର ସ୍ୱାମୀଙ୍କ କେତେକ ପଦ୍ୟକୁ ନାମ ନିର୍ଦ୍ଦେଶ ପୂର୍ବକ ଶ୍ରୀରୂପ ଗୋସ୍ୱାମୀ ସୂକ୍ତି ସଂଗ୍ରହ ଗ୍ରନ୍ଥରେ ଉଦ୍ଧୃତ କରିଅଛନ୍ତି । ଫଳତଃ ଶ୍ରୀଧରସ୍ୱାମୀଙ୍କର ସମୟ ଷୋଡ଼ଷ ଶତାବ୍ଦୀର ବହୁ ପୂର୍ବବର୍ତ୍ତୀ ସମୟ ହୋଇପାରେ ।

(ଘ) ଶ୍ରୀଧର ସ୍ୱାମୀ ବିଷ୍ଣୁପୁରାଣକୁ ଆଧାର କରି "ସ୍ୱ-ପ୍ରକାଶ" ନାମକ ବ୍ୟାଖ୍ୟା ରଚନା କରିଥିଲେ । ଏଥି ନିମିତ୍ତ ଉପଲବ୍ଧ ହସ୍ତଲେଖା ଟୀକାମାନଙ୍କ ମଧ୍ୟରୁ ପ୍ରାଚୀନତମ ହସ୍ତଲେଖାର ସମୟ ୧୫୧୧ ଖ୍ରୀ:ଅ: ହୋଇପାରେ । ଫଳତଃ ସ୍ୱାମୀଙ୍କ ସମୟ ନିର୍ଦ୍ଧାରଣ ପାଇଁ ଉତ୍ତର କାଳ ୧୫୦୦ ଖ୍ରୀ:ଅ: ହୋଇପାରେ ।

(ଙ) ବିଷ୍ଣୁ ପୁରୀ ନିଜର ଭକ୍ତି ରତ୍ନାବଳୀ ଗ୍ରନ୍ଥର ସ୍ୱରଚିତ ବ୍ୟାଖ୍ୟା "କ୍ରାନ୍ତିମାଳା" ରେ ଶ୍ରୀଧର ସ୍ୱାମୀଙ୍କର ଭାଗବତ - ତାତ୍ପର୍ଯ୍ୟକୁ ପୂର୍ଣ୍ଣ ଭାବରେ ସ୍ୱୀକାର କରି ଅଛନ୍ତି । ଏହି ଗ୍ରନ୍ଥରେ ଶ୍ରୀଧର ସ୍ୱାମୀଙ୍କ ପ୍ରଚୁର ପ୍ରାଧାନ୍ୟ ଆରୋପ

କରିବାକୁ ଯାଇ ସେ ବ୍ୟକ୍ତ କଲେ ;

''ଅତ୍ର ଶ୍ରୀଧର ସତ୍ତମୋକ୍ତି ଲିଖନେ ନ୍ୟୂନାଧିକ୍ୟ ଯତ୍ତ୍ୱଭୂତ୍

ଚତ୍କ୍ଷନ୍ତୁ ''ସୁଧୟୋଽତସ୍ୱର ଚନାଲୁବ୍ଧସ୍ୟ ମେଚାଳମ୍

(ଭକ୍ତିରତ୍ନାବଳୀ)

ଏହି ଗ୍ରନ୍ଥଟିର ପ୍ରଣୟନ କାଳ ଶଳସଂବତ୍ ୧୫୫୫ (୧୬୩୩) ଖ୍ରୀ:ଅ ଅଟେ, ଏହାର ଉଲ୍ଲେଖ ମଧ୍ୟ ଗ୍ରନ୍ଥଟିରୁ ମିଳିଥାଏ । ଯଥା :-

''ମହାଯଜ୍ଞ - ଶର - ପ୍ରାଣ - ଶଶାଙ୍କ - ଗଣିତେ ଶକେ ।

ଫାଲ୍‌ଗୁନେ ଶୁକ୍ଳପକ୍ଷସ୍ୟ ଦ୍ୱିତୀୟାୟାଂ ସୁମଂଗଳେ'' (୧୩/୧୬)

ଫଳତଃ ଶ୍ରୀଧର ସ୍ୱାମୀଙ୍କର ସମୟ ଷୋଡ଼ ଶତାବ୍ଦୀର ବହୁ ପୂର୍ବବର୍ତ୍ତୀ ସମୟ ବୋଲି ସ୍ଥିର କରାଯାଇପାରେ । ଏହିପରି ଭାବରେ ସ୍ୱାମୀଙ୍କର ସମୟକୁ ବୋପଦେବ ତଥା ବିଷ୍ଣୁ ପୁରୀଙ୍କ ସମୟ ସୀମା ମଧ୍ୟରେ ଧାର୍ଯ୍ୟ କରାଗଲେ ତାଙ୍କର ଆବିର୍ଭାବ କାଳ ୧୩୦୦ - ୧୩୫୦ ଖ୍ରୀ:ଅ: ଅର୍ଥାତ୍ ଚତୁର୍ଦ୍ଦଶ ଶତାବ୍ଦୀର ମଧ୍ୟ ଭାଗ ବୋଲି ସ୍ୱୀକାର କରାଯାଇପାରେ ।

(ଚ) ଅଧିକନ୍ତୁ ଭଣ୍ଡାରକର ପ୍ରାଚ୍ୟ ଗବେଷଣା ପ୍ରତିଷ୍ଠାନର ଡିରେକ୍ଟର ପି:କେ: ଗୋଡ଼େ, ଏସ୍. ଏ ମହାଶୟ ଶ୍ରୀଧର ସ୍ୱାମୀଙ୍କ ଆବିର୍ଭାବ କାଳ ୧୩୫୦ - ୧୪୫୦ ଖ୍ରୀ:ଅ: ମଧ୍ୟରେ ନିର୍ଣ୍ଣୟ କରିଅଛନ୍ତି । ସର୍ବୋପରି ଶ୍ରୀଧର ସ୍ୱାମୀଙ୍କର ସମୟ ଶ୍ରୀଚୈତନ୍ୟଦେବ ଏବଂ ମହାରାଜ ପ୍ରତାପରୁଦ୍ର ଦେବଙ୍କ ବହୁ ପୂର୍ବବର୍ତ୍ତୀ କାଳ ବୋଲି ସର୍ବସମ୍ମତି କ୍ରମେ ସ୍ୱୀକାର କରାହୋଇପାରେ ।

## ସିଦ୍ଧପୁରୁଷ ଶ୍ରୀଧର ସ୍ୱାମୀ :-

''ଧ୍ୟାନ ଧାରଣା ନିର୍ବିକଳ୍ପ ସମାଧି

ଆୟତ୍ତ କଲେ ସର୍ବ ବୈଷ୍ଣବ ସିଦ୍ଧି (ଲଳିତ କବି)

ଶ୍ରୀଧର ସ୍ୱାମୀ ଥିଲେ ଜଣେ ସିଦ୍ଧପୁରୁଷ । ଏହାର ପ୍ରମାଣ ଆମ୍ଭେ ନିମ୍ନୋକ୍ତ ଘଟଣାଟିରୁ ପାଇଥାଉ ।

ଏକଦା ନବଦ୍ୱୀପରେ ନିର୍ବିକଳ୍ପ ସମାଧିରେ ଆସୀନ ହୋଇ ବୃନ୍ଦାବନ ପରିକ୍ରମଣ କାଳରେ ଶ୍ୟାମକୁଣ୍ଡ ସମୀପସ୍ଥ ମଧୁମାଳତୀ ଲତାକୁ ଏକ ମେଷ ଭକ୍ଷଣ କରୁଥିବାର ସେ ଅବଲୋକନ କଲେ ଏବଂ ତହିଁରେ ବ୍ୟସ୍ତତା ପ୍ରକାଶ କରି ସେ ହାଁ ହାଁ ବୋଲି ଚିତ୍କାର କରି ଉଠିଲେ । ଫଳତଃ ତାଙ୍କର ଧ୍ୟାନଭଗ୍ନ

ହୋଇଥିଲା ଏବଂ ଶିଷ୍ୟମାନେ ଜିଜ୍ଞାସା କଲାରୁ ସେ ସ୍ୱ ଅବଲୋକିତ ସମସ୍ତ ଘଟଣାବଳୀ ବ୍ୟକ୍ତ କଲେ, ସେତେବେଳେ ସମ୍ବାଦ ପ୍ରେରଣ ନିମିତ୍ତ ବର୍ତ୍ତମାନ ଭଳି ସୁବିଧା ନଥାଇ ଘୋଡ଼ା ଡାକ ଏକାନ୍ତ ମାଧ୍ୟମ ଥିଲା । ତାହାକୁ ଆଧାର କରି ଘଟଣାଟିର ସତ୍ୟାସତ୍ୟ ଜାଣିବା ପାଇଁ ସ୍ଥିର କରାଗଲା ଏବଂ ଏକମାସ ପରେ ଘଟିତ ଘଟଣାଟିର ଅନୁରୂପ ପ୍ରମାଣ ମଧ୍ୟ ମିଳିଥିଲା । ଅଧିକନ୍ତୁ ସେ ପରଂବ୍ରହ୍ମ ନୃସିଂହଙ୍କୁ ସାକ୍ଷାତ କରିଥିବାର ପ୍ରମାଣ ମଧ୍ୟ ଶ୍ରୀ ଶ୍ରୀ ଭକ୍ତମାଳା ଗ୍ରନ୍ଥରୁ ମିଳିଥାଏ । ଯଥା :-

"ଶ୍ରୀଳ ଶ୍ରୀଧର ସ୍ୱାମୀ ଜଗତେ ବିଦିତ

* * * * * *

ଶ୍ରୀ ନୃସିଂହ ଦରଶନ ସାକ୍ଷାତେ କରିଲା ।

## ଶ୍ରୀଧର ସ୍ୱାମୀଙ୍କର ଅଲୌକିକ ଧୀମତ୍ତା :-

ଶ୍ରୀ ନୃସିଂହ - ଦ୍ରଷ୍ଟା ଶ୍ରୀଧର ସ୍ୱାମୀ ଅଲୌକିକ ଧୀମତ୍ତାର ଏକ ମୂର୍ତ୍ତି ମାନ୍ - ପ୍ରତୀକ ରୂପେ ଜନ୍ମ ନେଇ ସମଗ୍ର ଆର୍ଯ୍ୟାବର୍ତ୍ତକୁ ସ୍ୱୀୟ ଶାସ୍ତ୍ରୋ ଜ୍ୱଳା ବୁଦ୍ଧିରେ ଚିରଭାସ୍ୱରିତ କରି ଅଛନ୍ତି । ତାଙ୍କ ପ୍ରଣୀତ ଶ୍ରୀମଦ୍ ଭାଗବତର ଭାବାର୍ଥ ଦୀପିକା ଟୀକା ବିଦ୍ୱାନ ମାନଙ୍କର ଜ୍ଞାନରେ କଷଟି ପଥରରେ ସତତଃ ପରୀକ୍ଷିତ । ଏହି ଟୀକାଟିର ମଙ୍ଗଳାଚରଣରେ ସ୍ୱାମୀ ନୃସିଂହଙ୍କର ସ୍ତୁତିଗାନ କରି ତାଙ୍କ ଉପାସନା ଫଳଲାଭର ମାହାତ୍ମ୍ୟକୁ ବ୍ୟକ୍ତ କରିବାକୁ ଯାଇ ଶ୍ରୀଧର ସ୍ୱାମୀ ରଚନା କରିଛନ୍ତି

"ବ୍ୟାସୋବେତ୍ତି ଶୁକୋବେତ୍ତି ରାଜାବେତ୍ତି ନ ବେତ୍ତିବା
ଶ୍ରୀଧର ସକଳଂ ବେତ୍ତି ଶ୍ରୀନୃସିଂହ ପ୍ରସାଦତଃ ।" ଅର୍ଥାତ୍,

ଭାଗବତର ମର୍ମ ବ୍ୟାସକୁ ତଥା ତଦୀୟ ପୁତ୍ର ଶୁକଦେବଙ୍କୁହିଁ ଗୋଚର । ରାଜା ପରୀକ୍ଷିତ, ଏହାର ମର୍ମକୁ ଅବଗମନ କରିବା ପାଇଁ ସନ୍ଦେହୀ, ମାତ୍ର ଶ୍ରୀନୃସିଂହଙ୍କ ଅପାର ଅନୁକଂପାରୁ ଶ୍ରୀଧର ସ୍ୱାମୀଙ୍କୁ ଏହାର ମର୍ମ ସଂପୂର୍ଣ୍ଣ ରୂପେ ଜ୍ଞାତ । ଏହି ଟୀକାଟିର ମହନୀୟତା ବ୍ୟକ୍ତ କରିବାକୁ ଯାଇ ଶ୍ରୀଚୈତନ୍ୟଦେବ ବଲ୍ଲଭାଚାର୍ଯ୍ୟଙ୍କୁ କହନ୍ତି :-

"ଶ୍ରୀଧର ସ୍ୱାମୀ ନିନ୍ଦି ନିଜ ଟୀକା କର
ଶ୍ରୀଧର ସ୍ୱାମୀ ନାହିଁ ମାନ ଏତ ଗର୍ବଧର
ଶ୍ରୀଧର ସ୍ୱାମୀ ପ୍ରସାଦେ ଭାଗବତ ଜାନି
ଜଗତ୍ ଗୁରୁ ଶ୍ରୀଧର ସ୍ୱାମୀ ଗୁରୁ କରି ମାନି ।"

(ଶ୍ରୀ ଚୈତନ୍ୟ ଚରିତାମୃତ ଅନ୍ତ୍ୟ ୭ମ)

ଅଧିକନ୍ତୁ ଏହି ଗ୍ରନ୍ଥଟିର ଉତ୍‌କୃଷ୍ଟତା ସ୍ୱୟଂ କାଶୀସ୍ଥ ପ୍ରଭୁ ବିନ୍ଦୁମାଧବନଙ୍କ ଦ୍ୱାରା ପ୍ରତିପାଦିତ । ଏହାର ପ୍ରମାଣ ନାଭା ଦାସଜୀ ତାଙ୍କର ଭକ୍ତମାଳା ଗ୍ରନ୍ଥରେ ପ୍ରକାଶ କରିଅଛନ୍ତି । ଯଥା :-

"ତୀନ୍‌କାଣ୍ଡ ଏକତ୍ୱ ସାନିକୋଉ ଅଜ୍ଞ ବତ୍ୟାନତ ।

କର୍ମଠ ଜ୍ଞାନୀ ଐଂଚି ଅର୍ଥକୋ ଅନରଥ ବାନତ ।

ପରମହଂସ ସଂହିତା, ବିଦିତ ଟୀକା ବିସତା ରଯୌ ।

ଷଟ୍ ଶାସ୍ତ୍ରନି ଅବିରୁଦ୍ଧ ବେଦ - ସମ୍ମାଉହିଂ ବିଚାର ଯୌ ।

*            *            *

ଶ୍ରୀଧର ଶ୍ରୀ ଭାଗୌତମେଁ ପରମ ଧରମ ନିର ନେଁ ନିଯୌ ।"

(ଛପ୍ପ ୪୪୦)

ଏହା ବ୍ୟତୀତ (୧) ଶ୍ରୀମଦ୍‌ଭାଗବତ ଗୀତାର ସୁବୋଧିନୀ ଟୀକା

(୨) ବିଷ୍ଣୁପୁରାଣର ଆତ୍ମ ପ୍ରକାଶ ଟୀକା

(୩) ସନତ୍ ସୁଜାତୀୟର ବାଲବୋଧିନୀ ଟୀକା

(୪) ଗୀତାସାର ଟୀକା ବ୍ରହ୍ମ ସମ୍ବୋଧିନୀ

(୫) ବ୍ରଜ ବିହାରୀ କାବ୍ୟ

(୬) ପଦାର୍ଥ ପ୍ରକାଶିକା

(୭) ବେଦସ୍ମୃତି ଟୀକା

(୮) ଶ୍ରୀରୂପ ଗୋସ୍ୱାମୀ ସଂଗୃହୀତ ପଦ୍ୟାବଳୀ (୧୪, ୧୫, ୨୭, ୨୮, ୪୩ ଶ୍ଳୋକ)

(୯) ମହିମାଧର୍ମ ଦ୍ୟୋତକ ପୁସ୍ତିକା ସିଦ୍ଧ ଚନ୍ଦ୍ରିକା

ଇତ୍ୟାଦି ପୁସ୍ତକ ଗୁଡ଼ିକ ପ୍ରଣୟନ କରିଅଛନ୍ତି ।

**ମହିମାଗୋସ୍ୱାମୀଙ୍କ ବାର୍ତ୍ତା ପ୍ରକାଶକ ତଥା ଭବିଷ୍ୟତ ବକ୍ତା ଶ୍ରୀଧର ଗୋସ୍ୱାମୀ ;**

ମହିମା ପୁରୁଷଙ୍କର ଆବିର୍ଭାବ ୧୮୨୬ ମସିହାରେ ଶ୍ରୀକ୍ଷେତ୍ର ପୁରୀରେ ହୋଇଥିଲା । ସେ ଥିଲେ ଅଯୋନି ସମ୍ଭବ । ଏ ଯାବତ୍ ତାଙ୍କର ପିତାମାତା ଏବଂ

ଜନ୍ମସ୍ଥାନ ନିମିତ୍ତ କୌଣସି ସୁଷ୍ଠୁ ପ୍ରମାଣ ଅନୁପଲବ୍‌ଧ । ମହିମା ପ୍ରଭୁଙ୍କର ଧରାପୃଷ୍ଠରେ ଆବିର୍ଭାବ ହେବାର କଥା ସେ ଶ୍ରୀଧର ସ୍ୱାମୀଙ୍କୁ ସ୍ୱପ୍ନରେ ଜଣାଇଥିଲେ । ଯାହାର ପ୍ରମାଣ ଆମ୍ଭେ ସ୍ୱାମୀଙ୍କ ପ୍ରଣୀତ ଗ୍ରନ୍ଥ ''ସିଦ୍ଧ ଚନ୍ଦ୍ରିକା''ରୁ ନିମ୍ନୋକ୍ତ ମତେ ପାଇ ଥାଉଁ । ଯଥା :-

''ମୋତେ ସ୍ୱପନେ ଶୂନ୍ୟବାସୀ । ସେପଟ କହିଲେ ପ୍ରକାଶି ।।

ହୋଇଲେ ଗ୍ରନ୍ଥ କର ତୁହି । ଗୁପତେ ରଖିବୁ ଲୁଚାଇ ।।

କଳିଶେଷରେ ହେବ କ୍ଷତି । ବାରଣ ସମୟରେ ଭକ୍ତ ।।

ଚେତନା ପାଇଥିବ ଖଟି । ଯିବଏକଳି ଦର୍ପ କଟି ।।

ଏହି ପ୍ରବନ୍ଧେ ପ୍ରତି ପଦ । ସୁଜନେ ଗୂଢ଼ କର୍ମେ ଭେଦ ।।

ଗୁପତେ ରଖି ଏହାକୁ । ପ୍ରକାଶ ନକରି ତାହାକୁ ।

(ଏହି ସିଦ୍ଧି ଚନ୍ଦ୍ରିକା ଗ୍ରନ୍ଥଟି ଶ୍ରୀଧର ସ୍ୱାମୀଙ୍କ ଦ୍ୱାରା ଗୁଜରୀ ଛନ୍ଦରେ ପ୍ରଣୀତ ହୋଇଥିଲା ଏବଂ ଏହାକୁ ଶ୍ରୀ ଉଦ୍ଧବ ଚରଣ ନାୟକ ଏମ୍.ଏ. ସଂପାଦିତ କରିଅଛନ୍ତି)

ମହିମା ସ୍ୱାମୀଙ୍କର ଆବିର୍ଭାବ ଶୂନ୍ୟରେ ହୋଇଥିଲା । ଏହା ସର୍ବଜନ ବିଦିତ । ଏହାର ସତ୍ୟତାକୁ ଶ୍ରୀଧର ସ୍ୱାମୀ ଭବିଷ୍ୟତ ବକ୍ତାଭାବରେ ତାଙ୍କର ସିଦ୍ଧ ଚନ୍ଦ୍ରିକା ଗ୍ରନ୍ଥରେ ବ୍ୟକ୍ତ କରି ଅଛନ୍ତି । ଯଥା :-

''ଜଗତେ ଦେଖି ଅତ୍ୟାଚାର । ଅନାଦି ଅବ୍ୟକ୍ତ ଈଶ୍ୱର ।।

ମାୟାରେ ମାନବ ଶରୀର । ଲଭିବ ପରମ ଈଶ୍ୱର ।।

ଅଯୋନି ସମ୍ଭୂତ ହୋଇବ । ଗୁପତେ କେହି ନ ଜାଣିବ ।।

* * *

ହୋଇବ ବୁଦ୍ଧ ଅବତାର । ମହିମା ପରମ ଈଶ୍ୱର ।।

ଭ୍ରମିବ ନବଦ୍ୱିପ ମହୀ । ଭକତି ହିତେ ଶୂନ୍ୟ ଦେହି ।।

ପୁରୀ ଦାଣ୍ଡରେ ଆବିର୍ଭାବ ହେବା ପୂର୍ବରୁ ମହିମା ଗୋସ୍ୱାମୀ ହିମାଳୟର ନିଘଞ୍ଚ ଅରଣ୍ୟରେ ସାଧନାରତ ଥିଲେ ବୋଲି ମହିମାଧର୍ମ ଇତିହାସ ବ୍ୟକ୍ତ କରେ; ମାତ୍ର ଏହା ନିଶ୍ଚିତ ଭାବରେ ହେବ ବୋଲି ମହିମାସ୍ୱାମୀଙ୍କର ବହୁ ବର୍ଷ ପୂର୍ବରୁ ଜାତ ହୋଇ ଶ୍ରୀଧର ସ୍ୱାମୀ ଭବିଷ୍ୟତ ବକ୍ତା ଭାବରେ ସିଦ୍ଧି ଚନ୍ଦ୍ରିକାରେ ବ୍ୟକ୍ତ

କରିଥିଲେ । ଯଥା :

"ହିମାଳୟରେ ଥିବେ ରହି । ସେ ପୁଣି ପ୍ରବେଶିବେ ତହିଁ ।।

*　　　　*　　　　*

ଆମ୍ଭେ ଏ କୈଳାସପର୍ବତେ ତପସ୍ୟା ଆରମ୍ଭି ଗୁପତେ

*　　　　*　　　　*

ମହିମା ସ୍ୱାମୀ ଶ୍ରୀକ୍ଷେତ୍ର ପୁରୀ ପରିତ୍ୟାଗ କରି ଭୁବନେଶ୍ୱରସ୍ଥ ଖଣ୍ଡଗିରି ପାହାଡ଼ରେ ବାରବର୍ଷ ପର୍ଯ୍ୟନ୍ତ ତପସ୍ୟାରତ ଥିଲେ ଏବଂ ପରେଖଣ୍ଡଗିରି ପରିତ୍ୟାଗ କରି ଢେଙ୍କାନାଳସ୍ଥ କପିଳାସ ଠାରେ ଚବିଶ ବର୍ଷ ପର୍ଯ୍ୟନ୍ତ ଆତ୍ମଯୋଗରେ ସମାଧିସ୍ଥ ହୋଇଥିଲେ । ଏହିଠାରେ ସ୍ୱାମୀ ବଳକଳ ପରିଧାନ କରିଥିଲେ ଏବଂ ତା ପୂର୍ବରୁ କୌପୀନ ପରିଧାନ କରିଥିଲେ । ତପସ୍ୟାର ପ୍ରଥମ ବାରବର୍ଷ କାଳ ଫଳ ଆହାର ଏବଂ ଅନ୍ତିମ ବାରବର୍ଷ କ୍ଷୀରପାନ କରିଥିବାର ପ୍ରମାଣ ମଧ୍ୟ ଏହି ସିଦ୍ଧ ଚନ୍ଦ୍ରିକାରୁ ପାଇ ଥାଉଁ । ଯଥା :-

ଶୂନ୍ୟ ସମାଧି ଯୋଗ ପୃଷ୍ଟେ । ଧାରଣା ଧ୍ୟାନ୍ଧି ନିଜ ଘଟେ ।।

ଫଳ ଆହାରି ଯୁଗ ଏକ । ଅନ୍ତେ କ୍ଷୀର ଭକ୍ଷିଯୁଗ ଏକ ।।

ଧୂଳିଆ ଗୋସାଇଁ ଗୋସାଇଁ । ଫଳ ଆହାରି ଥୋକେ କହି ।।

ଅନ୍ୟାନେ ହୋଇବେ ପ୍ରକଟ । ଜାଣିବେ ସର୍ବସିଦ୍ଧ ଚାଟ ।।

ଅପୁତ୍ରିକ ଢେଙ୍କାନାଳର ରାଜା ଭାଗୀରଥି ବାହାଦୂର ମହିମା ସ୍ୱାମୀଙ୍କ ଠାରେ ଏକ ପୁତ୍ର ଯାଚନା କରିଥିଲେ । ଉତ୍ତରରେ ରାଜାଙ୍କର ପୁତ୍ର ହବନାଇଁ ବୋଲି ମହିମା ଗୋସାଇଁ ବ୍ୟକ୍ତ କରିଥିଲେ । ସେ ବୌଦ୍ଧରାଜାଙ୍କ ପୁତ୍ରକୁ ପୋଷ୍ୟ ପୁତ୍ର ରୂପେ ଗ୍ରହଣ କରିବେ ଇତ୍ୟାଦି ଘଟଣା ମଧ ପ୍ରୋକ୍ତ ଗ୍ରନ୍ଥଟିରୁ ମିଳିଥାଏ ।

ଯଥା :- ତୋ କୋଳେ ହୋଇବ ନନ୍ଦନ । ବଉଦ୍ଧ ନୃପତି ଗୃହେଣ ।।<br>
ଜନ୍ମ ହୋଇବ ତୋର ସୁତ । ତାହାକୁ ଆଣି ନରନାଥ ।।<br>
ତୋ ପାଟେ ସେ ଅଧିକାରୀ । ମଗାଇ ଆଣେ ଦଣ୍ଡଧାରୀ ।।<br>
ସେ ରାଜ୍ୟ ନରେଶ ଜାଣିବେ । ପ୍ରଭୁଙ୍କ ମେଳା କରାଇବେ ।।

ସନ୍ଥ ଭୀମଭୋଇଙ୍କର ଆବିର୍ଭାବ ଉତ୍କଳ ପ୍ରଦେଶର ରେଢ଼ାଖୋଲ ଠାରେ ହେବ । ସେ ହେଉଛନ୍ତି ସ୍ୱୟଂ ସଧିକାଙ୍କର ଅବତାର ବିଶେଷ । ତାଙ୍କର ଚକ୍ଷୁ

ଜନ୍ମରୁ ସର୍ବଦା ମୁଦ୍ରିତ । ତାହାଙ୍କୁ ମହିମା ସ୍ୱାମୀ ଦର୍ଶନ ଦେଇ ମହିମା ଧର୍ମରେ ଦୀକ୍ଷିତ କରାଇବେ ଇତ୍ୟାଦି କଥା ଭବିଷ୍ୟତ ବକ୍ତା ଭାବରେ ଶ୍ରୀଧର ସ୍ୱାମୀ ସିଦ୍ଧ ଚନ୍ଦ୍ରିକା ଗ୍ରନ୍ଥରେ ବ୍ୟକ୍ତ କରିଅଛନ୍ତି । ଯଥା :-

ବଉଦ ରେଢ଼ାଖୋଲଠାରେ । ପ୍ରଭୁ ବିଜୟ ଏକାନ୍ତରେ ।।

କନ୍ଧବଂଶରେ ଜନ୍ମ ହୋଇ । ନିତ୍ୟ ରାଧିକା ଥିବ ତହିଁ ।।

ପୁଂଲିଙ୍ଗେ ହୋଇଥିବ ଜାତ । ଜନ୍ମରୁ ନେତ୍ର ତା ମୁଦ୍ରିତ ।।

ଅନ୍ତେ ତା ସ୍ଫୁରୁଥିବ ନାମ । ବାଛୁରୀ ରଖୁଆଳ କର୍ମ ।।

* * *

ଜନ୍ମରୁ ଅନ୍ଧ ଥିଲା ହୋଇ । ନେତ୍ର ଫିଟିଲା ପ୍ରଭୁ ଚାହିଁ ।।
ଦେଖିଲା ଦୂର୍ବାଦଳ ରୂପ । କୋଟିଏ ଆଦିତ୍ୟ ସ୍ୱରୂପ ।।
ଦେଖି ନମିଲା ପଦ୍ମ ପାଦେ । ଉଠ ବୋଇଲେ ପ୍ରଭୁ ପଦେ ।।

କପିଳାସ ଠାରେ ଯୁଗ ସମାପନାନ୍ତେ ମହିମା ପୁରୁଷ ମାଳବିହାର ପୁର ଠାରେ ଅନିର୍ବାପିତ ଧୂନି ସ୍ଥାପନ କରି ଗ୍ରାମେ ଗ୍ରାମେପଦବ୍ରଜରେ ମହିମା ଧର୍ମ ପ୍ରଚାର କରିଥିଲେ । ଧର୍ମରକ୍ଷା ଓ ଧର୍ମପ୍ରଚାର ପାଇଁ ଏକାନବେ ଜଣ ସନ୍ନ୍ୟାସୀମାନଙ୍କୁ ବଲ୍‌କଲ ପ୍ରଦାନ କରି ସେମାନଙ୍କ ମଧ୍ୟରୁ ଚଉଷଠି ଜଣକୁ ସିଦ୍ଧ ଭାବରେ ଅଭିହିତ କରିଥିଲେ । ସେହିପରି ଷାଠିଏ ଜଣଙ୍କୁ ଡ଼ୋର କୌପୀନ,ବାନାପ୍ରଦାନ କରି ସେମାନଙ୍କ ମଧ୍ୟରୁ ଚଉତିରିଶ ଜଣଙ୍କୁ ସିଦ୍ଧ ଭାବରେ ଅଭିହିତ କରିଥିଲେ ମଧ୍ୟ ମହିମା ଭକ୍ତ ହିସାବରେ ଦୀକ୍ଷା ପ୍ରଦାନ କରି ମହିମା ଧର୍ମରେ ଆଶ୍ରିତ କରାଇଥିଲେ । ଏହାର ପ୍ରମାଣ ମଧ୍ୟ ସିଦ୍ଧ ଚନ୍ଦ୍ରିକା ଗ୍ରନ୍ଥରେ ଭବିଷ୍ୟତ ବକ୍ତା ଶ୍ରୀଧର ସ୍ୱାମୀ ବ୍ୟକ୍ତ କରି ଅଛନ୍ତି । ଯଥା :-

''ନିତ୍ୟରୁ ଆସିଛନ୍ତି ଭକ୍ତ । ସେ ଚଉଷଠି ସିଦ୍ଧବନ୍ତ ।।
ସପ୍ତଅଧିକ ବଂଶ ଜନ । ସେ ଦେବ ଅଶେଂ ମର୍ତ୍ତେ ଜନ୍ମ ।।
ଏହାକୁ ସିଦ୍ଧ ପଟ ଦେଇ । ପବିତ୍ର କରାଇବୁ ମହୀ ।।
ଅନନ୍ତ କୋଟି ସାଧୁମାନ । ବୋହିବେ କପିଯେ କେତନ ।।
ଗେରୁଆ ସୂତ୍ରେ ଆଡ଼ବନ୍ଧ । ଅନନ୍ତ କୋଟି ସାଧୁବୃନ୍ଦ ।
ଆବରଛନ୍ତି ଭକ୍ତ ମୋର । ଗୃହେ ହୋଇବ ପରିଚାର ।।
ଗେରୁଆ ବସ୍ତ୍ର ଆଭରଣ । ଗୃହୀ ପୁରୁଷ ଶିରୀ ଜାଣ ।।
ଏ ଆଦି ଧର୍ମ ହେବକ୍ଷତ । କହିଲି ପୁଣି ହୋ ଭକତ ।।

ଚଉଷଠି ଜଣ ସିଦ୍ଧ ବଲ୍‌କଲ ଧାରୀ ବାବା ମାନଙ୍କ ମଧ୍ୟରୁ କୃପାସିନ୍ଧୁ ବାବା ଅଗ୍ରଗଣ୍ୟ ଥିଲେ । ଯାହାଙ୍କ ଠାରେ ମହିମାସ୍ୱାମୀ ସ୍ୱୀୟ ଅର୍ଦ୍ଧେକ-କଳା ପ୍ରଦାନ କରିଥିଲେ । ମହିମା ସ୍ୱାମୀଙ୍କ ଅନୁକଂପାରୁ ହିଁ ସେ ଧରା ଧାମରେ ଜନ୍ମ ଗ୍ରହଣ କରିଥିଲେ । ଏହା ପ୍ରକାଶ କରିବାକୁ ଯାଇ ଶ୍ରୀଧର ସ୍ୱାମୀ ସିଦ୍ଧ ଚନ୍ଦ୍ରିକାରେ ବ୍ୟକ୍ତ କଲେ । ଯଥା :-

''ସ୍ୱାମୀ ହିଁ ଶୂନ୍ୟକୁ ନ ଯାଇ, ଲୀନ ହୋଇବେ ଭକ୍ତ ଦେହୀ

ଦ୍ୱାପରେ ପଣ୍ଡୁର ନନ୍ଦନ । ସେ ସହଦେବ ମନ୍ତ୍ରୀଗଣ ।।

ବହି ଶ୍ରୀ ଅଙ୍ଗେ ବୀରବଧୂ । ତାହାଙ୍କ ନାମ ଅଟେ ସିନ୍ଧୁ ।।

ତା ହୃଦପଦ୍ମେ ଜ୍ୟୋତିରୂପେ । ବିଶ୍ରାମି ପରଂବ୍ରହ୍ମ ଗୋପ୍ୟେ ।।''

ଦୀର୍ଘଦିନ ଧରି ମହିମା ଧର୍ମ ପ୍ରଚାର କରି ମହିମା ଗୋସାଇଁ ୧୮୭୬ ମସିହା ଫାଲ୍‌ଗୁନ ଶୁକ୍ଳ ଚତୁର୍ଦ୍ଦଶୀ ଦିନ ଯୋରନ୍ଦା ଗ୍ରାମ ଆଶ୍ରମଠାରେ ବ୍ରହ୍ମରେ ଲୀନ ହୋଇଯାଇଥିଲେ । ମହିମା ସ୍ୱାମୀଙ୍କର ଏତାଦୃଶ ଲୀନ ହେବାର କଥାକୁ ବ୍ୟକ୍ତ କରିବାକୁ ଯାଇ ଶ୍ରୀଧର ସ୍ୱାମୀ ରଚନା କଲେ । ଯଥା :-

ଯୋରନ୍ଦା ନାମେ ଏକ ଗ୍ରାମ । ସେ ଗ୍ରାମ ନିତ୍ୟ ଗୁପ୍ତ ଧାମ ।

ତହିଁ ତେଜିବେ ନିଜ ଶରୀ । ସମାଧି ଯୋଗାସନ କରି ।।

ଅଧୁନା ମହିମା ଧର୍ମରେ ଦୀକ୍ଷିତ ଶିଷ୍ୟମାନେ ଦୁଇ ଶ୍ରେଣୀରେ ବିଭକ୍ତ ହୋଇ ଯୋରନ୍ଦାସ୍ଥ ମହିମା ଗାଦିଠାରେ ସର୍ବଭାରତୀୟ ସ୍ତରରେ ମୁଖ୍ୟ କାର୍ଯ୍ୟାଳୟ ପ୍ରତିଷ୍ଠା କରି, ମହିମା - ଧର୍ମ ପ୍ରଚାରରେ ମନୋନିବେଶ କରିଅଛନ୍ତି । ଏହି କ୍ଷୁଦ୍ରଗ୍ରନ୍ଥ ସିଦ୍ଧ ଚନ୍ଦ୍ରିକା ମହିମା ଧର୍ମର ଏକ ପ୍ରାମାଣିକ ଗ୍ରନ୍ଥରୂପେ ବିବେଚିତ ହେବା ସଂଗେ ସଂଗେ କଳିଯୁଗରେ ଘଟୁଥିବା ଦୈନିକ ଘଟଣାବଳୀର ଏକ ପୂର୍ବାଭାସ ଗ୍ରନ୍ଥ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।

(ପ୍ରବନ୍ଧଟିର କଳେବର ବୃଦ୍ଧି ହୋଇଯିବାର ଆଶଙ୍କା ହେତୁ ସେ ସବୁର ବର୍ଣ୍ଣନାରୁ ବିରତ ହେଲି)

ବାସ୍ତବିକ୍ କ୍ରାନ୍ତିଦର୍ଶୀ ଭବିଷ୍ୟତ ବକ୍ତା ସିଦ୍ଧ ପୁରୁଷ ଶ୍ରୀଧର ସ୍ୱାମୀ ବିଶ୍ୱବାସୀଙ୍କର ଚିରନମସ୍ୟ । ଯାହାଙ୍କ ଗୁଣାବଳୀ ବ୍ୟକ୍ତ କଲେ ଏକ ବୃହତ୍‌କାୟ ଗ୍ରନ୍ଥ ହେବ, ଏକାଦୃଶ କ୍ଷୁଦ୍ରାୟ ପ୍ରବନ୍ଧରେ ତାଙ୍କର ସମସ୍ତ ଚରିତ୍ର ବ୍ୟକ୍ତ କରିବା ଧୃଷ୍ଟତା ମାତ୍ର କଣ ବା ଅଧିକ ବର୍ଣ୍ଣନା କରିବି । ତାଙ୍କର ଚରିତାବଳୀ ଆଲୋଚନା କଲା ବେଳେ ଆନ୍ତରିକ ଭକ୍ତିପୂତ ନୈବେଦ୍ୟ ତାଙ୍କର ପୁଣ୍ୟ ପଦାରବିନ୍ଦରେ ଅର୍ପଣ କରି ପ୍ରାର୍ଥନା କରୁଅଛି ।''ସେ ସମସ୍ତ ମାନବ ସମାଜକୁ ଆଶୀର୍ବାଦର

ରେଣୁ ଚିରଦିନକୁ ସେହି ମହାଶୂନ୍ୟରେ ଥାଇ ବିକିରଣ କରନ୍ତୁ । ଯାହା ଲାଭ କରି ଆମ୍ଭମାନଙ୍କର ଜୀବନ ପବିତ୍ର ହେବ । ତାଙ୍କର ଜୀବନାଦର୍ଶ ସମସ୍ତ ମାନବ ସମାଜର କଲ୍ୟାଣ ନିମିତ୍ତ ଉଦ୍ଦିଷ୍ଟ ହେବ ।''

ଯାହା ନିମିତ୍ତ Long Fellow କହିଥିଲେ ,

"Lives of greatmen all remind us, we can make our Lives sublime.

•

ମନ୍ଦାରପୁର

କ୍ଷୀରଚୋରା ଗୋପୀନାଥ

ବାଲେଶ୍ୱର

## - ସହାୟକ ଗ୍ରନ୍ଥାବଳୀ -


୧. କ୍ଷୀରଚୋରା ରସିକ ବିନୋଦ, ଲେଖକ : ଲଳିତ କବି ଲକ୍ଷ୍ମୀନାରାୟଣ ମହାରଣା ।

୨. ପୁରାଣବିମର୍ଷ, ଲେଖକ : - ଆଚାର୍ଯ୍ୟ ବଳଦେବ ଉପାଧ୍ୟାୟ

୩. ଶ୍ରୀ ଶ୍ରୀ ଭକ୍ତମାଳା ଗ୍ରନ୍ଥ, ଲେଖକ : ଶ୍ରୀ ଲାଲଦାସ ବାବାଜୀ

୪. ଗୁପ୍ତ ବୃନ୍ଦାବନ : ଲେଖକ : ଶ୍ରୀ କିଶୋରୀ ମୋହନ ଦାସ

୫. ସିଦ୍ଧ ଚନ୍ଦ୍ରିକା : ଲେଖକ : ଶ୍ରୀଧର ଗୋସ୍ୱାମୀ

୬. ଚୈତନ୍ୟ ଚରିତାମୃତ ।




# ପରମ ବୈଷ୍ଣବ ଶ୍ରୀଧର ସ୍ୱାମୀ

* ହରେକୃଷ୍ଣ ଗିରି

ସପ୍ତଚିରା ରାମଚଣ୍ଡୀ, ବ୍ରଜ ସରୋବର ।
ମାଧବେନ୍ଦ୍ର ପୁରୀ ଯଥା ବିଶ୍ରାମ କରିଲ ।
ଗାର୍ଗେଶ୍ୱର ମହାଦେବ ଆଛେନ୍ ତଥାୟ ।
ଗୌରଦାଣ୍ଡେର ଶୋଭା କହନ ନା ଯାୟ ।
ଶ୍ରୀଧର ସ୍ୱାମୀର ସ୍ଥାନେ ଗମନ କରିଲ ।
ଦର୍ଶନ ମାତ୍ରେ ତେ ଧୂଳାୟ ଗଡ଼ାଗଡ଼ି ଦିଲ ।।
ବଳଦେବ ନାମ ତିନି ବାର ଉଚ୍ଚାରିଲ ।
ମହାପ୍ରଭୁ ଯୈଛେ ନରୋତ୍ତମ ପ୍ରକାଶିଲ ।।
- (ଶ୍ୟାମାନନ୍ଦ ପ୍ରକାଶ : ୧୦ମ ଦଶା)

ରେମୁଣାର ଘଟଣାରାଜି ପାଇଁ ଶ୍ୟାମାନନ୍ଦ ପ୍ରକାଶ ଏକ ପ୍ରାମାଣିକ ଗ୍ରନ୍ଥ । ଏଥିରେ ଶ୍ରୀ ଶ୍ୟାମାନନ୍ଦ ପ୍ରଭୁଙ୍କ ଜୀବନୀ ଆଲୋଚନା ହେବା ସଙ୍ଗେ ସଙ୍ଗେ ରେମୁଣାର ତତ୍-ସଂଲଗ୍ନ ଘଟଣାବଳୀ ବର୍ଣ୍ଣିତ । ଶ୍ୟାମାନନ୍ଦ ଶ୍ରୀ ଶ୍ରୀ କ୍ଷୀରଚୋରା ଗୋପୀନାଥଙ୍କୁ କଳାପାହାଡ଼ ଆକ୍ରମଣ ପାଇଁ ପୂଜକମାନେ ଯେଉଁ ଆର୍ମଳାର କଇଁସାରିଆ ପୋଖରୀରେ ଲୁଚାଇ ରଖିଥିଲେ, ସେଥିରୁ ସେ ଉଦ୍ଧାର କରିଥିଲେ । ଅନେକ ଆଲୌକିକ ଘଟଣା ସହ ସମ୍ପୃକ୍ତ ଏହି ଶ୍ରୀ ଶ୍ୟାମାନନ୍ଦ ପ୍ରଭୁ ଗୋପୀନାଥଙ୍କୁ ଦର୍ଶନ କରିବା ପରେ ମୟୂର ଗ୍ରାମ ଯାଇ ସେହି ଧୂଳିରେ ଗଡ଼ିଯାଇଥିଲେ । କାରଣ ଏହା ଶ୍ରୀ ଶ୍ରୀଧର ସ୍ୱାମୀଙ୍କ ଜନ୍ମସ୍ଥାନ । ତାଙ୍କୁ କେହି ଜନ୍ମସ୍ଥାନ ବୋଲି କହି ନଥିଲେ । ସେ ନିଜ ଦୃଷ୍ଟି ବଳରେ ଏସବୁ କାର୍ଯ୍ୟ କରୁଥିଲେ । ସେଠାରୁ ଆସି ମନ୍ଦିରଭିତରେ ଛିଡ଼ା ହୋଇ ଶ୍ରୀ ବଳଦେବ ବିଦ୍ୟାଭୂଷଣଙ୍କ ନାମ ତିନିଥର ଉଚ୍ଚାରଣ କରିଥିଲେ । ଅର୍ଥାତ୍ ଏହି ରେମୁଣାରେ ଶ୍ରୀ ବଳଦେବ ନିକଟରେ ଜନ୍ମ ନେବେ ବୋଲି ଭବିଷ୍ୟବାଣୀ କଲେ । ଏହା ମଧ୍ୟ ସତ୍ୟରେ ପରିଣତ ହୋଇଥିଲା । ତେଣୁ ଏହି ଆଧାତ୍ମବାଦୀ ଅଲୌକିକ ମାନବ ଶ୍ରୀ ଶ୍ୟାମାନନ୍ଦ ପ୍ରଭୁଙ୍କ କାର୍ଯ୍ୟାବଳୀରୁ ପ୍ରମାଣିତ ହୁଏ ଯେ, ଶ୍ରୀଧର ସ୍ୱାମୀ, ରେମୁଣାର ମୟୂର ଗ୍ରାମରେ ଏବଂ ଶ୍ରୀଲ ବଳଦେବ ବିଦ୍ୟାଭୂଷଣ ରେମୁଣାର, କୁକୁମଶୂଳୀ ମୌଜାସ୍ଥ ପରୀକ୍ଷିତ ପୁର ଶାସନରେ (ବର୍ତ୍ତମାନ ସେହି ଶାସନରେ କେହି ନାହାନ୍ତି, ପଡ଼ିଆ ହୋଇଯାଇଛି, କୋଡ଼ିଏ ପଚିଶି ବର୍ଷ ପୂର୍ବରୁ ମୁଁ ନିଜେ ଭଙ୍ଗାଘର ଠିଆହେବାର ଦେଖିଛି । ଗୌଡଦାଣ୍ଡ ଲୋକଙ୍କୁ ପଚାରିଲେ କହିବେ) ଜନ୍ମ ଗ୍ରହଣ କରିଛନ୍ତି - ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ । ଅନେକ ସାଧୁସନ୍ଥ ଏହି ଜନ୍ମସ୍ଥାନ ପରିଦର୍ଶନ କରି ରୋମାଞ୍ଚିତ

ହୋଇ ଏହାର ସତ୍ୟତାକୁ ସ୍ୱୀକାର କରିଅଛନ୍ତି ।

ବହୁତ ବଡ଼ ବଡ଼ ଲୋକଙ୍କର ମତାମତ ଏଠାରେ ଉପସ୍ଥାପିତ କରି ଲେଖାର କଳେବର ବୃଦ୍ଧି କରିବାକୁ ମୁଁ ଚାହୁଁନାହିଁ । କାରଣ ଅନ୍ୟଲେଖକ ମାନେ ସେ ମତାମତ ଲେଖିଥିବେ ଏବଂ ଗୋପୀନାଥ ମନ୍ଦିରରୁ ପ୍ରକାଶିତ 'ଗୁପ୍ତ ବୃନ୍ଦାବନ' ପୁସ୍ତକରେ ଏହା ବିଶେଷ ଭାବେ ବର୍ଣ୍ଣିତ । କଲିକତା ସଂସ୍କୃତ କଲେଜର ପରଲୋକଗତ ଅଧ୍ୟକ୍ଷ ଶ୍ରୀଯୁକ୍ତ ମହେଶ ଚନ୍ଦ୍ର ନ୍ୟାୟରତ୍ନ ମହୋଦୟ, ଭାଣ୍ଡାର କର ପ୍ରାଚ୍ୟ ଗବେଷଣା ପ୍ରତିଷ୍ଠାନର ଡିରେକ୍ଟର ପି.କେ. ଗୋରେ, ୟୁରୋପୀୟ ପଣ୍ଡିତ ଡଃ.ଜେ.ଏନ୍. ଫାରକିଉହାର, ଡଃ. ଏସ୍.କେ.ଦେ, ଡଃ. ମେକ୍ସମୁଲାର, ଡଃ. ହରେକୃଷ୍ଣ ମହତାବ, ରେମୁଣାର ଶ୍ରୀଯୁକ୍ତ ଶରତ ଚନ୍ଦ୍ର ମହାରଣା ଏହିପରି ବହୁ ଗବେଷକ ଲେଖକ ତାଙ୍କର ମତାମତ ଦେଇଛନ୍ତି । ସମସ୍ତେ ହିଁ ଅନୁମାନ ଲଗାଇଛନ୍ତି । ସମସ୍ତଙ୍କ ଅନୁମାନରୁ ଏହି ସିଦ୍ଧାନ୍ତ ମିଳେ ଯେ (୧) ଶ୍ରୀଧର ସ୍ୱାମୀ ରେମୁଣାର ମୟୂରଗ୍ରାମରେ ଜନ୍ମ (୨) ସେ ୧୩୦୦ ଖ୍ରୀଷ୍ଟାବ୍ଦରୁ ୧୪୦୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ଜନ୍ମ (୩) ସେ ଢେଙ୍କାନାଳର 'ସପ୍ତଶଯ୍ୟା' ଠାରେ ଆଶ୍ରମ କରି ସେଠାରେ ହିଁ ଶ୍ରୀମଦ୍‌ଭାଗବତର 'ଭାବାର୍ଥ ଦୀପିକା ଟୀକା' ଏବଂ ଗୀତାର 'ସୁବୋଧିନୀ' ଟୀକା ରଚନା କରିଛନ୍ତି ଏବଂ ତାଙ୍କର ଗୁରୁଙ୍କ ନାମ 'ପରମାନନ୍ଦ', (୫) ସେ ରୁଦ୍ରଙ୍କର ଆନୁଗତ୍ୟରେ ନୃସିଂହଦେବଙ୍କ ଉପାସକ । ଏହି ୫ଟି ସର୍ବମାନ୍ୟ ସିଦ୍ଧାନ୍ତ ସମସ୍ତଙ୍କ ମତାମତରୁ ମିଳେ । ଏହା ବ୍ୟତୀତ ସେ ଜ୍ଞାନକୁ ମିଶ୍ରଣ କରି ଭକ୍ତିକୁ ପ୍ରାଧାନ୍ୟ ଦେଇଛନ୍ତି । ସାକାର ଉପାସନାକୁ ମଧ୍ୟ ପ୍ରାଧାନ୍ୟ ଦେଇଛନ୍ତି । ବର୍ତ୍ତମାନ ଦେଖିବା ଯେଉଁ କେତୋଟି ପାର୍ଥକ୍ୟ ପରିଲକ୍ଷିତ ହୁଏ, ସେଗୁଡ଼ିକ କ'ଣ ? ସେଗୁଡ଼ିକ ହେଲା - (୧) ଶ୍ରୀଧର ସ୍ୱାମୀ ଗୋବର୍ଦ୍ଧନ ପୀଠର ଶଙ୍କରାଚାର୍ଯ୍ୟ ଥିଲେ ? (୨) ତାଙ୍କର ଜନ୍ମସ୍ଥାନ ଅନ୍ୟତ୍ର ହୋଇପାରେ । (୩) ସେ କାଶୀର କେବଳା ଦ୍ୱୈତବାଦୀ ସମ୍ପ୍ରଦାୟର ସନ୍ନ୍ୟାସୀଥିଲେ ।

ଏଗୁଡ଼ିକ ଆଲୋଚନା କଲେ ସ୍ପଷ୍ଟ ହୋଇଯିବ । ପୁରୀ ଗୋବର୍ଦ୍ଧନ ପୀଠର ପ୍ରତିଷ୍ଠା ଆଦି ଶଙ୍କରାଚାର୍ଯ୍ୟ ଖ୍ରୀଷ୍ଟପୂର୍ବ ୪୮୬ରେ କାର୍ତ୍ତିକ ଶୁକ୍ଳ ପଞ୍ଚମୀରେ କରିଥିଲେ । ଏବେ ୧୪୫ତମ ଶଙ୍କରାଚାର୍ଯ୍ୟ ରୂପେ ଶ୍ରୀ ଶ୍ରୀ ନିଶ୍ଚଳାନନ୍ଦ ସରସ୍ୱତୀ ମହାରାଜା ତା୯-୨-୧୯୯୨ରିଖ ଠାରୁ ଦାୟିତ୍ୱ ନେଇଛନ୍ତି । ଅର୍ଥାତ ୨୦୦୦ ମସିହା ସୁଦ୍ଧା ମୋଟ ୨୪୮୬ ବର୍ଷ ହେଲା । ମଠକୁ ଯାଇ ଶ୍ରୀମତ ମହାରାଜାଙ୍କ ଠାରୁ ନିମ୍ନ ତଥ୍ୟ ସଂଗ୍ରହ କରିଥିଲି । ମଠର ପ୍ରବେଶ ଦ୍ୱାରରେ ଲିଖିତ ଅଛି ଓ ଅନ୍ୟ ପତ୍ରିକାରେ ମଧ୍ୟ ପ୍ରକାଶ ପାଇଛି । ମଠର ଶଙ୍କରାଚାର୍ଯ୍ୟ ସୂଚୀରେ ଚାରିଜଣ ଶଙ୍କରାଚାର୍ଯ୍ୟ 'ଶ୍ରୀଧର' ନାମରେ ଅଛନ୍ତି । ୧୦ମ, ୫୧ତମ, ୬୮ତମ ଏବଂ ୧୧୬ତମ ଶଙ୍କରାଚାର୍ଯ୍ୟଙ୍କ ନାମ 'ଶ୍ରୀଧର' ରହିଅଛି । ମଠରୁ ପ୍ରାପ୍ତ

ତଥ୍ୟାନୁସାରେ ୧୦ମ ଶଙ୍କରାଚାର୍ଯ୍ୟ - ଖ୍ରୀ:ପୂ.୩୦୫ରୁ ଖ୍ରୀ.ପୂ ୩୨୩ (୧୮ବର୍ଷ), ୫୧ତମ - ୩୭୫ ଖ୍ରୀଷ୍ଟାବ୍ଦରୁ ୩୯୪ ଖ୍ରୀଷ୍ଟାବ୍ଦ (୧୯ବର୍ଷ), ୬୮ ତମ - ୬୫୮ ଖ୍ରୀଷ୍ଟାବ୍ଦରୁ ୬୭୭ ଖ୍ରୀଷ୍ଟାବ୍ଦ (୧୯ବର୍ଷ), ଯାହାକି ସୁବୋଧିନୀ ଟୀକାର ଟୀକାକାର ଶ୍ରୀଧର ସ୍ୱାମୀ, (ଯାହାଙ୍କ ସମୟ ୧୩୦୦ ରୁ ୧୪୦୦ ଖ୍ରୀଷ୍ଟାବ୍ଦ) କଦାପି ସମ୍ଭବ ନୁହେଁ । ୧୧୬ତମ - ୧୪୬୪ ଖ୍ରୀଷ୍ଟାବ୍ଦରୁ ୧୪୭୫ ଖ୍ରୀଷ୍ଟାବ୍ଦ (୧୧ବର୍ଷ) - ଏହି ସମୟ ମଧ୍ୟରେ ବି ସମ୍ଭବ ନୁହେଁ । କାରଣ ଶ୍ରୀଧର ସ୍ୱାମୀ, ଶ୍ରୀ ଚୈତନ୍ୟ ମହାପ୍ରଭୁ (ଜନ୍ମ ୧୪୮୬ ଖ୍ରୀ.ଅ.)ଙ୍କର ଅତି କମ୍‌ରେ ୧୦୦ ବର୍ଷ ପୂର୍ବରୁ ଜନ୍ମ ହୋଇଛନ୍ତି । ଅର୍ଥାତ୍ ୧୪୫୦ ଖ୍ରୀ.ଅ. ପରେ ଶ୍ରୀଧର ସ୍ୱାମୀ ଆଉ ନାହାନ୍ତି । ମହାନ ଗବେଷକ ଶ୍ରୀମତ ସୁନ୍ଦରାନନ୍ଦ ବିଦ୍ୟାବିନୋଦ ମଧ୍ୟ ତାଙ୍କର 'ଗୌଡୀୟାର ତିନି ଠାକୁର' ପୁସ୍ତକରେ ଶ୍ରୀଧର ଶଙ୍କରାଚାର୍ଯ୍ୟ ଥିବାର ଅସ୍ୱୀକାର କରିଛନ୍ତି । ନିଜେ ଶ୍ରୀମତ ସ୍ୱାମୀ ଶଙ୍କରାଚାର୍ଯ୍ୟ ଶ୍ରୀ ନିଷ୍ଚଳାନନ୍ଦ ସରସ୍ୱତୀ ମହାରାଜ ମଧ୍ୟ ଟୀକାକାର ଶ୍ରୀଧର ସ୍ୱାମୀ ଶଙ୍କରାଚାର୍ଯ୍ୟ ରହିଥିବା ଅସ୍ୱୀକାର କଲେ । ତେଣୁ ଟୀକାକାର ଶ୍ରୀଧର ସ୍ୱାମୀ ପୁରୀରେ ଶଙ୍କରାଚାର୍ଯ୍ୟ ରହିବା ବିଷୟରେ କୌଣସି ଯୁକ୍ତିଯୁକ୍ତ ପ୍ରମାଣ ନାହିଁ । ଯେଉଁମାନେ ଶ୍ରୀଧର ସ୍ୱାମୀ ମହାରାଷ୍ଟ୍ରର ଓ ଗୁଜୁରାଟର ବୋଲି ଦାବି କରୁଛନ୍ତି । ସେହି ଶ୍ରୀଧର ସ୍ୱାମୀ ଶଙ୍କରାଚାର୍ଯ୍ୟ ଥିବେ । କିନ୍ତୁ ଗୀତାର ସୁବୋଧିନୀ ଟୀକାକାର ଶ୍ରୀଧର ସ୍ୱାମୀ ଶଙ୍କରାଚାର୍ଯ୍ୟ ନଥିଲେ । ଅତଏବ ସେ ମୟୂର ଗ୍ରାମରେ ଜନ୍ମ ହୋଇଛନ୍ତି ଏବଂ ସେ ଶଙ୍କରାଚାର୍ଯ୍ୟ ନଥିଲେ, ସେ ଢେଙ୍କାନାଳର କପିଳାସ ଆଶ୍ରମରେ ଗୀତାର ସୁବୋଧିନୀ ଟୀକା ଓ ଶ୍ରୀମଦ୍ ଭାଗବତର ଭାବାର୍ଥ ଦୀପିକା ଟୀକା ଓ ବିଷ୍ଣୁପୁରାଣର ଆତ୍ମପ୍ରକାଶ ଟୀକା ଇତ୍ୟାଦି ରଚନା କରି ଜଗତ ବିଖ୍ୟାତ ହୋଇଛନ୍ତି ।

ତୃତୀୟ ମତ ପାର୍ଥକ୍ୟ ମହତ୍ତ୍ୱପୂର୍ଣ୍ଣ । ନିମ୍ନ ବିଷୟ ବର୍ଣ୍ଣନା ପରେ ଏହା ସୁସ୍ପଷ୍ଟ ହୋଇଯିବ । ନିମ୍ନରେ ଚାରି ବୈଷ୍ଣବ ସମ୍ପ୍ରଦାୟ ମଧ୍ୟରୁ ଶ୍ରୀ ବିଷ୍ଣୁ ସ୍ୱାମୀ ସମ୍ପ୍ରଦାୟ ଏଠାରେ ବର୍ଣ୍ଣିତ ହେଲା, ଯାହା ସହିତ ଶ୍ରୀଧର ସ୍ୱାମୀ ଜଡ଼ିତ । ପଦ୍ମପୁରାଣରେ ବର୍ଣ୍ଣିତ ଅଛି :-

"ସମ୍ପ୍ରଦାୟ ବିହୀନା ଯେ ମନ୍ତ୍ରାସ୍ତେ ବିଫଳା ମତାଃ
ଅତଃ କଲୌ ଭବିଷ୍ୟନ୍ତି ଚତ୍ୱାରଃ ସମ୍ପ୍ରଦାୟିନଃ ।
ଶ୍ରୀ - ବ୍ରହ୍ମ - ରୁଦ୍ର - ସନକା; ବୈଷ୍ଣବାଃ କ୍ଷିତିପାବନାଃ ।
ଚତ୍ୱାରସ୍ତେ କଲୌ, ଭବ୍ୟାହ୍ୟୁତ୍କଲେ ପୁରୁଷୋତ୍ତମାତ୍ ।।"

ଅର୍ଥାତ୍ ଶ୍ରୀ ବ୍ୟାସ ଦେବ କହିଛନ୍ତି - ସତ୍ ସମ୍ପ୍ରଦାୟ ବିହୀନ ମନ୍ତ୍ର ସମୂହ କେବେହେଁ ଜୀବନର ମଙ୍ଗଳପ୍ରଦ ନୁହେଁ । କଳିର ତର୍କ ପନ୍ଥୀ ଜୀବ ସମୂହର ଉଦ୍ଧାର ନିମିତ୍ତ ସନାତନ ପୁରୁଷୋତ୍ତମ ବିଷ୍ଣୁଙ୍କ ଇଚ୍ଛାରେ ଶ୍ରୀ - ବ୍ରହ୍ମ - ରୁଦ୍ର -

ଚତୁଃସନ - ଏହି ଚାରିଜଣ ସତ୍ ସମ୍ପ୍ରଦାୟ, ପ୍ରଚାରିତ ଧର୍ମ ପୁରୁଷୋତ୍ତମ କ୍ଷେତ୍ରରୁ ପ୍ରଚାର କରିବେ । ତେଣୁ ଶ୍ରୀ (ଲକ୍ଷ୍ମୀ) ସମ୍ପ୍ରଦାୟର ଆଚାର୍ଯ୍ୟ ହେଲେ ଶ୍ରୀ ରାମାନୁଜାଚାର୍ଯ୍ୟ, ରୁଦ୍ର ସମ୍ପ୍ରଦାୟର ଆଚାର୍ଯ୍ୟ ହେଲେ ଶ୍ରୀ ଆଦିବିଷ୍ଣୁ ସ୍ୱାମୀ, ବ୍ରହ୍ମ ସମ୍ପ୍ରଦାୟର ଆଚାର୍ଯ୍ୟ ହେଲେ ଶ୍ରୀ ମାଧ୍ୱାଚାର୍ଯ୍ୟ - ପରବର୍ତ୍ତୀ ସମୟରେ ଶ୍ରୀ ଚୈତନ୍ୟ ମହାପ୍ରଭୁ ଏହି ସମ୍ପ୍ରଦାୟକୁ ଆଶ୍ରୟ କରିଥିବାରୁ ଏହାକୁ ଗୌରୀୟ ବା ଗୌଡ଼ୀୟ ସମ୍ପ୍ରଦାୟ ମଧ୍ୟ କୁହାଯାଏ ।

ଏବଂ ଚତୁଃସନ ସମ୍ପ୍ରଦାୟର ଆଚାର୍ଯ୍ୟହେଲେ ଶ୍ରୀ ନିମ୍ବାର୍କାଚାର୍ଯ୍ୟ । ଏଠାରେ ଆମ୍ଭେ ରୁଦ୍ର ସମ୍ପ୍ରଦାୟ ବା ବିଷ୍ଣୁ ସ୍ୱାମୀ ସମ୍ପ୍ରଦାୟ କଥା ଆଲୋଚନା କରିବା ।

ରୁଦ୍ର ସମ୍ପ୍ରଦାୟ ବ୍ରହ୍ମାଙ୍କର ଦ୍ୱିତୀୟ ଚକ୍ଷୁଶ ଜନ୍ମରେ ଶ୍ରୀ ନାରାୟଣଙ୍କ କୃପାରୁ ଜଗତରେ ପ୍ରକାଶିତ ହେଲେ ବୋଲି ଶ୍ରୀମଦ୍‌ଭାଗବତ କୁହନ୍ତି । ଏହି ବିଷ୍ଣୁ ସ୍ୱାମୀଙ୍କୁ ଆଦି ବିଷ୍ଣୁ ସ୍ୱାମୀ କୁହାଯାଏ । ବିଷ୍ଣୁ ସ୍ୱାମୀ ପାଣ୍ଡ୍ୟ ରାଜାଙ୍କ ପୁରୋହିତ ଦେବେଶ୍ୱରଙ୍କ ଔରସରୁ ଜନ୍ମ ନେଇଥିଲେ । ପାଣ୍ଡ୍ୟରାଜା ଓଡ଼ିଶା ଜୟକରି ଶ୍ରୀ ଜଗନ୍ନାଥଙ୍କୁ ବୌଦ୍ଧମାନଙ୍କ କବଳରୁ ଉଦ୍ଧାର କରି ଦେବେର୍ଶ୍ୱରଙ୍କୁ ପୂଜାଭାର ଅର୍ପଣ କରିଥିଲେ । ବିଷ୍ଣୁ ସ୍ୱାମୀ ଏହାଙ୍କ ପୁତ୍ର ରୂପେ ପ୍ରକଟ ହେଲେ ଓ ବୈଷ୍ଣବ ସମ୍ପ୍ରଦାୟରେ ପ୍ରଚାର କରିଥିଲେ ।

ବିଷ୍ଣୁ ସ୍ୱାମୀଙ୍କ ନାମାନୁସାରେ ରୁଦ୍ର ସମ୍ପ୍ରଦାୟକୁ ବିଷ୍ଣୁ ସ୍ୱାମୀ ସମ୍ପ୍ରଦାୟ ମଧ୍ୟ କୁହାଯାଏ । ବିଷ୍ଣୁ ସ୍ୱାମୀ ବେଦାନ୍ତର ଭାଷ୍ୟ କରି ଭାଷ୍ୟର ନାମ ଦେଲେ 'ସର୍ବଜ୍ଞସୂକ୍ତ' । ସେ ଜଗନ୍ନାଥଙ୍କ ସେବା ପୂଜା ମଧ୍ୟ ପରିଚାଳନା କଲେ । ତେଣୁ ସମ୍ପ୍ରଦାୟର ଧାମ ପୁରୀଧାମ । ଉପାସ୍ୟ ହେଲେ 'ନୃସିଂହଦେବ ବିଷ୍ଣୁ' ମତବାଦ ହେଲା ଶୁଦ୍ଧା ଦ୍ୱୈତବାଦ। ଏହି ସମ୍ପ୍ରଦାୟର ଅନ୍ତର୍ଗତ ହେଲେ ପରମାନନ୍ଦ ଯେ କି ଶ୍ରୀଧର ସ୍ୱାମୀଙ୍କ ଗୁରୁ ।

ଅଧିକାଂଶ ବିଜ୍ଞ ବ୍ୟକ୍ତିଙ୍କର ମତାନୁସାରେ ଶ୍ରୀଧର ସ୍ୱାମୀଙ୍କ ଗୁରୁ ପରମାନନ୍ଦ, ଉପାସ୍ୟ ରୁଦ୍ରଙ୍କ ଆନୁଗତ୍ୟରେ ଶ୍ରୀ ନୃସିଂହଦେବ ବିଷ୍ଣୁ, ସେ କେବଳାଦ୍ୱୈତକୁ ଖଣ୍ଡନ କରି ଶୁଦ୍ଧାଦ୍ୱୈତ ପ୍ରତିଷ୍ଠା କରିଛନ୍ତି । ତେଣୁ ଏଥିରେ ଆମେ ଏହି ସିଦ୍ଧାନ୍ତରେ ଉପନୀତ ହେଲୁଯେ ଶ୍ରୀଧର ସ୍ୱାମୀ ହେଉଛନ୍ତି ବିଷ୍ଣୁସ୍ୱାମୀ ସମ୍ପ୍ରଦାୟର ପରମ ବୈଷ୍ଣବ, ଏଥିରେ ସନ୍ଦେହନାହିଁ ।

ଆମ୍ଭେ ନିଜେ ବିଷ୍ଣୁ ସ୍ୱାମୀ ସମ୍ପ୍ରଦାୟର କେତେଜଣ ସନ୍ନ୍ୟାସୀଙ୍କୁ ଭେଟି ଏ ବିଷୟରେ ଆଲୋଚନା କରିଛୁ । ସେମାନେ କହନ୍ତି - ଗୀତାର ସୁବୋଧିନୀ ଟୀକା ଓ ଭାଗବତର ଭାବାର୍ଥ ଦୀପିକା ଟୀକା ଇତ୍ୟାଦି କରିଥିବା ଶ୍ରୀଧର ସ୍ୱାମୀ ହେଉଛନ୍ତି ଆମ ସମ୍ପ୍ରଦାୟର ବ୍ୟକ୍ତି ତାଙ୍କ ଘର ମୟୂର ଗ୍ରାମରେ ଏବଂ ସେ ଶଙ୍କରାଚାର୍ଯ୍ୟ

ନଥିଲେ । କେତେକ ବ୍ୟକ୍ତି ଶ୍ରୀଧର ସ୍ୱାମୀଙ୍କୁ କେବଳ ଦ୍ୱୈତବାଦର ପରମ୍ପରାର ସନ୍ନ୍ୟାସୀ ବୋଲି କହନ୍ତି. କିନ୍ତୁ ତାହା ଠିକ୍ ନୁହେଁ ।

ଏହି ସବୁ ପ୍ରମାଣରୁ ସିଦ୍ଧାନ୍ତ ହେଲା ଯେ, ଶ୍ରୀଧର ସ୍ୱାମୀ ଶଙ୍କରାଚାର୍ଯ୍ୟ ନଥିଲେ । ସେ ବିଷ୍ଣୁ ସ୍ୱାମୀ ସମ୍ପ୍ରଦାୟର ପରମବୈଷ୍ଣବ ଥିଲେ, ଶୁଦ୍ଧାଦ୍ୱୈତବାଦ ମତରେ ଗୀତାର 'ସୁବୋଧିନୀ' ଟୀକା ଭାଗବତର 'ଭାବାର୍ଥ ଦୀପିକା' ଟୀକା ରଚନା କରି ଜଗତବିଖ୍ୟାତ ହୋଇଛନ୍ତି ଏହା ତାଙ୍କର ଉପାସ୍ୟ ନୃସିଂହଦେବ ବିଷ୍ଣୁଙ୍କ କୃପାରୁ ସ୍ୱୟଂ ବେଣୀ ମାଧବ ସ୍ୱପ୍ନାଦେଶ ଦେଇ ଏହା କହିଛନ୍ତି :-

ଅହଂ ବେତ୍ତି ଶୁକୋ ବେତ୍ତି

ବ୍ୟାସୋ ବେତ୍ତି ନ ବେତ୍ତି ବା ।

ଶ୍ରୀଧରଃ ସକଳଂ ବେତ୍ତି

ବେତ୍ତି ଶ୍ରୀନୃସିଂହ ପ୍ରସାଦତଃ

ଶ୍ରୀଧର ସ୍ୱାମୀ ଲେଖାର ଦୈନ୍ୟ ପ୍ରକାଶ କରିବାର ଦେଖି ଶ୍ରୀ ଜୀବ ଗୋସ୍ୱାମୀ ତାଙ୍କୁ ପରମ ବୈଷ୍ଣବ ବୋଲି ଆଖ୍ୟା ଦେଇଛନ୍ତି ଶ୍ରୀ ଚୈତନ୍ୟ ମହାପ୍ରଭୁ ମଧ ସର୍ବମାନ୍ୟ ସ୍ୱୀକୃତି ଦେଇ କହିଛନ୍ତି :-

ପ୍ରଭୁ ହାସି କହେ ସ୍ୱାମୀ ନା ମାନେ ଯେଇ ଜନ

ବେଶ୍ୟାରେ ଭିତରେ ତାରେ କରିଯ୍ୟେ ଗଣନ

ଏତ କହି ମହାପ୍ରଭୁ ମୌନ ରହିଲା

ଶୁନିୟା ସବାର ମନେ ସନ୍ତୋଷ ହୋଇଲା ।

ଏହା ପୂର୍ବରୁ ମହାପ୍ରଭୁ କହିଛନ୍ତି :

ଶ୍ରୀଧର ସ୍ୱାମୀ ନିନ୍ଦି ନିଜ ଟୀକାକର

ଶ୍ରୀଧର ସ୍ୱାମୀ ନାହିଁ ମାନ ଏତ ଗର୍ବଧର

ଶ୍ରୀଧର ସ୍ୱାମୀ ପ୍ରସାଦେ ଭାଗବତ ଜାନି

ଜଗଦ୍‌ଗୁରୁ ଶ୍ରୀଧର ସ୍ୱାମୀ ଗୁରୁ କରି ମାନି ।।

ଶ୍ରୀ ଚୈତନ୍ୟ ଚରିତାମୃତ - (ଅନ୍ତ୍ୟଲୀଳା ୭ମ)

ବିଷ୍ଣୁସ୍ୱାମୀଙ୍କ ପରେ ଆହୁରି ଦୁଇଜଣ ବିଷ୍ଣୁ ସ୍ୱାମୀ ଆସିଥିଲେ । ସେମାନେ ହେଲେ ଦ୍ୱିତୀୟ ରାଜଗୋପାଳ ବିଷ୍ଣୁ ସ୍ୱାମୀ ଏବଂ ତୃତୀୟ - ଆନ୍ଧ୍ର ବିଷ୍ଣୁ ସ୍ୱାମୀ ।

ଏହାଙ୍କ ପରେ ବଲ୍ଲଭାଚାର୍ଯ୍ୟ ଏହି ସମ୍ପ୍ରଦାୟକୁ ବିସ୍ତୃତ କରିଛନ୍ତି । ତେଣୁ ମୂଳ ବିଷ୍ଣୁ ସ୍ୱାମୀଙ୍କୁ ଦେବତନୁ ବିଷ୍ଣୁ ସ୍ୱାମୀ ବା ଆଦି ବିଷ୍ଣୁ ସ୍ୱାମୀ କୁହାଯାଏ । କେହି କେହି ଶ୍ରୀ ଶଙ୍କରାଚାର୍ଯ୍ୟଙ୍କୁ ସନ୍ନ୍ୟାସ ପ୍ରବର୍ତ୍ତକ ବୋଲି କହନ୍ତି । କିନ୍ତୁ ତା ଠିକ୍ ନୁହେଁ । ଶଙ୍କରାଚାର୍ଯ୍ୟଙ୍କ ବହୁପୂର୍ବରୁ ବୈଷ୍ଣବ ସମ୍ପ୍ରଦାୟରେ ଏହି ଆଦିବିଷ୍ଣୁ ସ୍ୱାମୀ ତ୍ରିଦଣ୍ଡ ସନ୍ନ୍ୟାସ ପ୍ରଚାର କରିଛନ୍ତି । ସେଥିରୁ ଦଶଟି ସନ୍ୟାସୀଙ୍କ ନାମ ନେଇ ଶଙ୍କରାଚାର୍ଯ୍ୟ ଧର୍ମ ପ୍ରଚାର କରିଛନ୍ତି । ଯେହେତୁ ଆଦିବିଷ୍ଣୁ ସ୍ୱାମୀ ଜଗନ୍ନାଥଙ୍କ ମନ୍ଦିରବୌଦ୍ଧଙ୍କ ହାତରୁ ଉଦ୍ଧାର କରିଥିଲେ ଏବଂ ଶୁଦ୍ଧାଦ୍ୱୈତ ବାଦରେ ଶ୍ରୀଧର ସ୍ୱାମୀ ଭକ୍ତି ସହିତ ଜ୍ଞାନକୁ ମିଶ୍ରଣ କରିଛନ୍ତି ସେଥିପାଇଁ ତାଙ୍କୁ ୧୧୬ତମ ଶଙ୍କରାଚାର୍ଯ୍ୟ କରାଯାଇ ପାରିଥାଏ ବୋଲି କୁହାଯାଏ କିନ୍ତୁ ଏହା ଆଦୌ ପ୍ରାମାଣିକ ନୁହେଁ । କାରଣ ତାଙ୍କର ଉପାଧି ଅରଣ୍ୟ କିମ୍ବା ତୀର୍ଥ ଆଦି ମଧ ନଥିଲା । ବଡ଼କଥା ହେଉଛି କେତେକ ମତ ଦିଅନ୍ତି ଶଙ୍କରାଚାର୍ଯ୍ୟ ହେବାପରେ ସେ ବୈଷ୍ଣବରେ ପରିବର୍ତ୍ତିତ ହୋଇ ସପ୍ତଶଯ୍ୟା ଆଶ୍ରମରେ ଗୀତାର ସୁବୋଧିନୀ ଟୀକା ରଚନା କରିଛନ୍ତି କିନ୍ତୁ ଶଙ୍କରାଚାର୍ଯ୍ୟ ପରମ୍ପରାର ତଥ୍ୟ ଅନୁଯାଇ ଏହା ମଧ୍ୟ ଠିକ୍ ହେଉନାହିଁ ।

ସର୍ବଶେଷରେ ଏହି ସବୁ ପ୍ରମାଣରୁ ସିଦ୍ଧାନ୍ତ ଉପନୀତ ହୋଇପାରୁ ଯେ ଶ୍ରୀଧର ସ୍ୱାମୀଙ୍କ ଜନ୍ମସ୍ଥାନ ରେମୁଣାର ମୟୂର ଗ୍ରାମରେ, ସେ ବିଷ୍ଣୁ ସ୍ୱାମୀ ସମ୍ପ୍ରଦାୟର ପରମ ବୈଷ୍ଣବ ଏବଂ ସେ ହିଁ ଗୀତାର ସୁବୋଧିନୀ ଟୀକା, ଭାଗବତର ଭାବାର୍ଥ ଦୀପିକା ଟୀକା, ବିଷ୍ଣୁ ପୁରାଣର ଆତ୍ମପ୍ରକାଶ, ବ୍ରଜବିହାର ଇତ୍ୟାଦି ଅନେକ ଗ୍ରନ୍ଥ ରଚନା କରି ଜଗତବିଖ୍ୟାତ ହୋଇଛନ୍ତି । [illegible]
[illegible] ।

ଦୁର୍ଭାଗ୍ୟର କଥା ଓଡ଼ିଶା କିମ୍ବା ରେମୁଣାବାସୀ ତାଙ୍କୁ ଉପଯୁକ୍ତ ସମ୍ମାନ ଦେଇନାହାନ୍ତି । ସରକାର ତ ଦୂରର କଥା, ଆମେ ତାଙ୍କ ନାମରେ କୌଣସି ଅନୁଷ୍ଠାନ କରିନାହୁଁ, ତାଙ୍କ ପାଇଁ ତାଙ୍କ ଗ୍ରାମରେ ଗୋଟିଏ ସ୍ମୃତି ମନ୍ଦିର ତୋଳା ଚାଲିଛି । ତାଙ୍କର ବଂଶଧର ଶ୍ରୀ ଲକ୍ଷ୍ମୀଧର ପତି ଓ ବର୍ତ୍ତମାନ ପଣ୍ଡାସାହିରେ ବାସ କରୁଥିବା ତାଙ୍କର ବଂଶଧର ଶ୍ରୀଯୁକ୍ତ ଶଶିଭୂଷଣ ପତିଙ୍କ ଠାରେ ଯାହା କିମ୍ବଦନ୍ତୀ ଶ୍ରୀଧର ସ୍ୱାମୀଙ୍କ ବିଷୟରେ ଅଛି । ତାକୁ ସଂଗ୍ରହ କରିବା ମଧ ଉଚିତ୍ । ଶ୍ରୀଧର ସ୍ୱାମୀ କେମିତି ଘରଛାଡ଼ି ଯାଇଥିଲେ କେମିତି ଏକ ଶାଳଗ୍ରାମ ପାଇଥିଲେ ଯେଉଁ ଶାଳଗ୍ରାମ ହିଁ ସ୍ୱୟଂ ନୃସିଂହଦେବ ଥିଲେ ଏବଂ ସେହି ନୃସିଂହ ଦେବଙ୍କ କୃପାରୁ ଜଗତ ବିଖ୍ୟାତ ହୋଇଛନ୍ତି, ସେହିସବୁ କିମ୍ବଦନ୍ତୀ ତାଙ୍କ ପରିବାର ଲୋକଙ୍କ ନିକଟରୁ ଶୁଣିବାକୁ ମିଳେ ।

ରେମୁଣାବାସୀ ତଥା ସରକାର ତରଫରୁ ତାଙ୍କ ପାଇଁ ଏକ ସ୍ମୃତି ମନ୍ଦିର ତାଙ୍କର ମୂର୍ତ୍ତିଫଳକ ଓ ଏକ ପାଠାଗାର ମୟୂର ଗ୍ରାମରେ କରିପାରିଲେ ତାଙ୍କ ପ୍ରତି ଆମର ସାମାନ୍ୟ ସମ୍ମାନ ପ୍ରଦର୍ଶନ ହେଲା ବୋଲି ଭାବିବାକୁ ପଡ଼ିବ ।

ମୋର ଗବେଷଣାର ସାହାଯ୍ୟ କରିଥିବା ପୁସ୍ତକ ଓ ବ୍ୟକ୍ତି :-

(୧) ଶ୍ରୀ ଗୋପୀନାଥ ମନ୍ଦିରୁ ପ୍ରକାଶିତ 'ଗୁପ୍ତ ବୃନ୍ଦାବନ'

(୨) ଶ୍ରୀ ଶ୍ୟାମାନନ୍ଦ ପ୍ରକାଶ

(୩) ଶ୍ରୀ ଚୈତନ୍ୟ ଚରିତାମୃତ

(୪) ସତ୍ ସମ୍ପ୍ରଦାୟ - ଗୌଡ଼ୀୟ ମଠ ପ୍ରକାଶନ

(୫) ଗୌଡିଆର ତିନି ଠାକୁର - ଶ୍ରୀମତ୍ ସୁନ୍ଦରାନନ୍ଦ ବିଦ୍ୟାବିନୋଦ

(୬) ପୁରୀ ଗୋବର୍ଦ୍ଧନ ପୀଠର ଶଙ୍କରାଚାର୍ଯ୍ୟ ଶ୍ରୀମତ୍ ନିଶ୍ଚଳାନନ୍ଦ ସରସ୍ୱତୀ ମହାରାଜ ।

(୭) ବାଲିଘାଟ ମଠର ଶ୍ରୀ କାର୍ତ୍ତିକେଶ୍ୱର ଦାସଜୀ ମହାରାଜ, ଅଧିକାରୀ ଶ୍ରୀ କୃଷ୍ଣାନନ୍ଦ ଦାସଜୀ ମହାରାଜ ଓ ଅନେକ ସନ୍ନ୍ୟାସୀ ।

• • •

ଶ୍ରୀ ଗୋପୀନାଥ କୃପାକୁଟୀର

ଗୌରଦାଣ୍ଡ, ରେମୁଣା

ବାଲେଶ୍ୱର - ୭୫୬୦୧୯

# ଟୀକାକାର ଶ୍ରୀଧର ସ୍ୱାମୀ

• ଡକ୍ଟର ମନ୍ମଥ କୁମାର ପ୍ରଧାନ

ସଂସ୍କୃତ ସାହିତ୍ୟରେ ପଣ୍ଡିତ ଶ୍ରୀଧର ସ୍ୱାମୀ ଟୀକାକାର ଭାବରେଜଣେ ପ୍ରତିଷ୍ଠିତ ପ୍ରତିଭା । ସେ ଏକାଧାରରେ ଜଣେ କବି, ଦାର୍ଶନିକ, ପଣ୍ଡିତ, ଭାଷ୍ୟକାର ତଥା ପରମଭକ୍ତ ଭାବରେ ଆଦୃତ । ସଂସ୍କୃତ ସାହିତ୍ୟକୁ ତାଙ୍କର ଅବଦାନ ଅନବଦ୍ୟ । ବାଲେଶ୍ୱର ରେମୁଣା ଥାନା ଅନ୍ତର୍ଗତ 'ମରେଇ' ଗାଁରେ ତାଙ୍କର ଜନ୍ମ । ରେମୁଣାର ପ୍ରସିଦ୍ଧ କ୍ଷୀରଚୋରା ଗୋପୀନାଥ ମନ୍ଦିର ଉତ୍ତର ଦିଗରେ ଥିବା ଶୂନ୍ ନଈଠାରୁ ତିନି ମାଇଲ୍ ଦୂରେ ଏହି ଗ୍ରାମ ଅବସ୍ଥିତ । ଶ୍ରୀଧର ସ୍ୱାମୀଙ୍କୁ କେତେକ ଆଲୋଚକ ମହାରାଷ୍ଟ୍ର, ଗୁଜୁରାଟ, ପଶ୍ଚିମବଙ୍ଗ, ଢେଙ୍କାନାଳବାସୀ ବୋଲି ମତ ଦିଅନ୍ତି । 'ପ୍ରବାସୀ' ପ୍ରତିକାର ସମ୍ପାଦକ ଶ୍ରୀ ଦିନେଶ ଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କ ଲିଖିତ ଶ୍ରୀଧର ସ୍ୱାମୀଙ୍କର କୁଳ ପରିଚୟ ଓ କାଳନିର୍ଣ୍ଣୟ ପ୍ରବନ୍ଧ ୧୩୫୮ ମାଘ ସଂଖ୍ୟାରେ ସାଓ୍ୱାଡ଼ାଙ୍ଗାର ଜନ୍ମେଜୟ ଘଟକ୍ ସର୍ବପ୍ରଥମ ପୁଳପଞ୍ଜିରେ ଶ୍ରୀଧର ସ୍ୱାମୀଙ୍କ ନାମ ଆବିଷ୍କାର କରି ତଦ୍‌ରଚିତ - 'କୁଳତତ୍ତ୍ୱ ଦର୍ଶନ' ଗ୍ରନ୍ଥରେ (୧) ପ୍ରକାଶ କରିଛନ୍ତି ଯେ, ଶ୍ରୀମଦ୍ ଭାଗବତ୍ ଓ ଗୀତାର ଟୀକାକାର ଶ୍ରୀଧର ସ୍ୱାମୀ ନାନ୍ଦର ବା ଡୁରିର । ମାତ୍ରଏ ମତର ଯଥାର୍ଥତା ନାହିଁ । ଜୟଦେବଙ୍କୁ ବଙ୍ଗଳାର ଅଧିବାସୀ ବୋଲି କହିବା, ବାଲେଶ୍ୱର ଜିଲ୍ଲାସ୍ଥ ଜଳେଶ୍ୱର ନିକଟବର୍ତ୍ତୀ ମୁଣ୍ଡୁଣିଆ ଗ୍ରାମରେ ଜନ୍ମ ହୋଇଥିବା ରୀତି ଯୁଗୀୟ କବି ଦୀନକୃଷ୍ଣ ଦାସ ପୁରୀର ଅଧିବାସୀ ବୋଲି କହି ଓଡ଼ିଆ ସାହିତ୍ୟରେ ଦୁଇଜଣ ଦୀନକୃଷ୍ଣ ବୋଲି ମନ୍ତବ୍ୟ ଦେବା ଭଳି ଶ୍ରୀଧର ସ୍ୱାମୀଯେ ରେମୁଣାର ମରେଇଗାଁରେ ଅଧିବାସୀ ଏହା ନିଃସନ୍ଦେହ । ଅବଶ୍ୟ ଢେଙ୍କାନାଳସ୍ଥ କପିଳାସରେ ବ୍ରହ୍ମଚାରୀ ମଠର କିଛି ଦୂରରେ ବୁଢେଶ୍ୱର ମହାଦେବ ନିକଟରେ ତାଙ୍କର ବୃହତ୍ ସମାଧି ଅଦ୍ୟାବଧି ପର୍ଯ୍ୟନ୍ତ ସୁରକ୍ଷିତ ଅଛି । ଢେଙ୍କାନାଳରେ ସେ ରହୁଥିଲେ ଓ ସେ ସ୍ଥାନଟି ତାଙ୍କସାଧନାର ପୀଠସ୍ଥଳି ଥିଲା । ସେଠାରେ ନୃସିଂହ ଆଶ୍ରମ ପ୍ରତିଷ୍ଠା କରିଥିଲେ ଓ ନିଜେ ନୃସିଂହ ମନ୍ତ୍ରରେ ଦୀକ୍ଷିତ ହୋଇଥିଲେ । ତାଙ୍କର ଜନ୍ମସ୍ଥାନ ମରେଇ ଗାଁକୁ ମୟୂରଗାଁ ତଥା ମଞ୍ଜାରି ଗାଁ ବୋଲି କେତେକ ଅପଭ୍ରଂଶ କରି ଉଲ୍ଲେଖ କରନ୍ତି ।

ଭଣ୍ଡାରକାର ପ୍ରାଚ୍ୟ ଗବେଷଣା ପ୍ରତିଷ୍ଠାନର ଡିରେକ୍ଟର ପି.କେ. ଗୋଡ଼େ ଶ୍ରୀଧର ସ୍ୱାମୀଙ୍କ ଆବିର୍ଭାବ ୧୩୫୦-୧୪୫୦ ଖ୍ରୀଷ୍ଟାବ୍ଦ ମଧରେ ନିର୍ଣ୍ଣୟ କରିଛନ୍ତି । ଏସ୍. କେ. ଦେ ଦର୍ଶାଇଛନ୍ତି ସେ ଶ୍ରାଧର ସ୍ୱାମୀ ୧୩୦୦ ଖ୍ରୀଷ୍ଟାବ୍ଦର ଲୋକ (୨) ଶ୍ରୀକୃଷ୍ଣ ଦାସ 'ଶ୍ୟାମାନନ୍ଦ ପ୍ରକାଶ' ବୈଷ୍ଣବ ଗ୍ରନ୍ଥରେ ପଣ୍ଡିତ ବଳଦେବ ବିଦ୍ୟାଭୂଷଣ ଓ ଟୀକାକାର ଶ୍ରୀଧର ସ୍ୱାମୀଙ୍କର ଜନ୍ମସ୍ଥାନ ମରେଇଗାଁ ବୋଲି ବର୍ଣ୍ଣନା କରିଛନ୍ତି ।

ଐତିହାସିକ ଡକ୍ଟର ହରେକୃଷ୍ଣ ମହତାବ ଓଡ଼ିଶା ଇତିହାସରେ ଶ୍ରୀଧର ସ୍ୱାମୀଙ୍କୁ ରେମୁଣାର ଅଧିବାସୀ ବୋଲି ମତ ଦେଇଛନ୍ତି । ପ୍ରତ୍ନତତ୍ତ୍ୱବିତ୍ ପରମାନନ୍ଦ ଆଚାର୍ଯ୍ୟ ତାଙ୍କର **Studies an Orissan History Archeology and Archives** ପୁସ୍ତକରେ **A short note on Sridhara Swami** ସମ୍ପର୍କରେ ଅନୁରୂପ ମତ ଦେଇଛନ୍ତି । ୧୯୨୦ ମସିହାରେ ବିଶିଷ୍ଟ ପ୍ରାବନ୍ଧିକ ଚନ୍ଦ୍ରମୋହନ ମହାରଣା ତତ୍କାଳୀନ ପ୍ରକାଶିତ 'ମୁକୁର' ପତ୍ରିକାର ଶ୍ରୀଧର ସ୍ୱାମୀଙ୍କ ଜନ୍ମସ୍ଥାନ ରେମୁଣା ନିକଟସ୍ଥ ମରେଇ ଗାଁ ବୋଲି ଦର୍ଶାଇଛନ୍ତି । ସେ 'ଉତ୍କଳ ସାହିତ୍ୟ' ଷଷ୍ଠ ବର୍ଷ ଚତୁର୍ଥ ସଂଖ୍ୟା ସତସ୍ତରୀ ପୃଷ୍ଠାରେ ଶ୍ରୀଧର ସ୍ୱାମୀ ନିକଟରେ ଆଲୋକପାତ କରିଛନ୍ତି । ହିନ୍ଦୀ ପୁସ୍ତକ 'ଉତ୍କଳ ରତ୍ନ' ସଂଗ୍ରହରେ ଶ୍ରୀଧର ସ୍ୱାମୀ ଜନ୍ମସ୍ଥାନ ରେମୁଣାର ମରେଇ ଗାଁ ବୋଲି ପ୍ରମାଣ ମିଳେ । ଏ ସମ୍ପର୍କରେ 'ଝଙ୍କାର' ପତ୍ରିକା ୩୩ଶ ବର୍ଷ ୧୯୮୧ ମସିହା ଶାରଦୀୟ ସଂଖ୍ୟାରେ କିଛି ସୂଚନା ରହିଛି । ଗୋଲୋକ ଚନ୍ଦ୍ର ମହାପାତ୍ରଙ୍କ 'ଯୁଗେ ଯୁଗେ ବାଲେଶ୍ୱର' ପୁସ୍ତକର ୨୭ ପୃଷ୍ଠାରେ ଲେଖକ ଦର୍ଶାଇଛନ୍ତି, ଯେ ଭାରତ ବିଖ୍ୟାତ ପଣ୍ଡିତ ପ୍ରବର ଶ୍ରୀଧର ସ୍ୱାମୀ ରେମୁଣାର ଉତ୍ତରକୁ ପାଞ୍ଚମାଇଲି ଦୂରରେ ମଞ୍ଜାରୀ ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ରେମୁଣାର ଲଳିତ କବି ଲକ୍ଷ୍ମୀନାରାୟଣ ମହାରଣା ତାଙ୍କର 'କ୍ଷୀରଚୋରା ରସିକ ବିନୋଦ' କାବ୍ୟରେ ପଣ୍ଡିତ ଶ୍ରୀଧର ସ୍ୱାମୀ ରେମୁଣାର ଅଧିବାସୀ ବୋଲି ବର୍ଣ୍ଣନା କରିଛନ୍ତି । ଡକ୍ଟର ବିଜୟା ନନ୍ଦ କର 'କୋଣାର୍କ' ପତ୍ରିକାର ୧୯୮୭ ମସିହା ୬୫ ସଂଖ୍ୟାରେ ଶ୍ରୀଧର ସ୍ୱାମୀଙ୍କୁ ଓଡ଼ିଶାର ଅଧିବାସୀ ବୋଲି କହି ତାଙ୍କର ଅଦ୍ୱୈତ ମତବାଦ ଉପରେ ବିଶ୍ଳେଷଣ କରିଛନ୍ତି । ଶ୍ରୀମତୀ ପ୍ରତିଭା କୁମାରୀ ଦେବୀଙ୍କ ଦ୍ୱାରା ପ୍ରକାଶିତ କଟକର ବାଲୁବଜାରସ୍ଥ ଦାଶରଥି ପୁସ୍ତକାଳୟରୁ ମୁଦ୍ରିତ 'ଶମ୍ଭୁକ୍ଷେତ୍ର କପିଳାସ ଓ ଶ୍ରୀଧର ସ୍ୱାମୀ ପୁସ୍ତକଟିରେ ଏସମ୍ବନ୍ଧରେ ବେଶ୍ କିଛି ସୂଚନା ମିଳେ । ଦୈନିକ ସମାଜର ୧୯୭୬ ମସିହା ନଭେମ୍ବର ୨୧ ତାରିଖ ସଂଖ୍ୟାରେ ଶରତ ଚନ୍ଦ୍ର ମହାରଣା ଶ୍ରୀଧର ସ୍ୱାମୀଙ୍କ ଉପରେ ସମ୍ୟକ ସୂଚନା ଦେଇଛନ୍ତି । ଶ୍ରୀକୃଷ୍ଣ ଦାସଙ୍କ 'ଶ୍ରୀ ରାମାନନ୍ଦ ପ୍ରକାଶ' ରୁ ଲାଲ୍‌ଦାସ ବାବାଜୀଙ୍କର ''ଶ୍ରୀ ଶ୍ରୀ ଭକ୍ତିମାଳା' ଶ୍ରୀଧର ସ୍ୱାମୀ ସମ୍ବନ୍ଧରେ କିଛି ତଥ୍ୟ ମିଳେ । ଗବେଷକ **Dr. J.N. Farquhar "An outline of the religious literature of India"** ନାମକ ପୁସ୍ତକରେ ଶ୍ରୀଧର ସ୍ୱାମୀଙ୍କୁ ଖ୍ରୀ:ଅ: ୧୪୦୦ ବୋଲି ମତ ଦେଇଛନ୍ତି । ରୂପ ଗୋସ୍ୱାମୀ ମଧ୍ୟ 'ମୁକ୍ତି ସଂଗ୍ରହ' ଗ୍ରନ୍ଥରେ ଶ୍ରୀଧର ସ୍ୱାମୀଙ୍କ ଉକ୍ତିକୁ ଉଦ୍ଧାର କରିଛନ୍ତି । ବିଷ୍ଣୁସୂରୀ 'ଭାଗବତ ଭକ୍ତି ରତ୍ନାବଳୀ ଗ୍ରନ୍ଥରେ ଶ୍ରୀଧର ସ୍ୱାମୀଙ୍କ ଟୀକା ସମୂହକୁ ପ୍ରଶଂସା କରିଛନ୍ତି । ବେଲୁଡ଼୍‌ର ଶ୍ରୀ ରାମକୃଷ୍ଣ ମିଶନର ସ୍ୱାମୀ ଶ୍ରୀ ଜଗଦୀଶ୍ୱରାନନ୍ଦଙ୍କ ଅନୁଦିତ ଶ୍ରୀମଦ୍ ଭାଗବତ ଗୀତାର ନିବେଦନରେ ଶ୍ରୀଧର ସ୍ୱାମୀଙ୍କ ଭୂୟସୀ ପ୍ରଶଂସା ଦେଖିବାକୁ ମିଳେ ''ଗୀତାର ବହୁ ଭାଷ୍ୟ ଟୀକା ଅଧ୍ୟୟନାନ୍ତେ ନିଃସଂଶୟରେ ବୁଝିଛି ଯେ, ଶ୍ରୀଧର ସ୍ୱାମୀକୃତ 'ସୁବୋଧିନୀ' ଟୀକା ହିଁ ସର୍ବାପେକ୍ଷା ସଂକ୍ଷିପ୍ତ ସରଳ ଓ ସାରଗର୍ଭଜ ଏବଂ ପାଠକମାନଙ୍କ ପାଇଁ ବିଶେଷ

ଉପଯୋଗୀ'' । 'ବଙ୍ଗଳା ବିଶ୍ୱକୋଷରେ ଶ୍ରୀଧର ସ୍ୱାମୀଙ୍କ ସମ୍ବନ୍ଧରେ ଗୋଟିଏ ଅନୁଛେଦ ଅଛି । (୩) ତାଙ୍କର ବହୁତ କୃତି କାଳଗର୍ଭରେ ବିଲୀନ । ତାଙ୍କର 'ବ୍ରଜବିହାର' କାବ୍ୟ ଜନାଦୃତ । ମହିମାଧବ ଆଧାରିତ ତାଙ୍କ ପୁସ୍ତକ 'ସିଦ୍ଧ ଚନ୍ଦ୍ରିକା' ଏକ ସ୍ୱାର୍ଥ ସୃଷ୍ଟି । ସେ ଶ୍ରୀ - ପଦ୍ୟାବଳୀର ରଚୟିତା ଭାବରେ ଖ୍ୟାତ ହୋଇଛନ୍ତି । ଜଣେ ଟୀକାକାର ଭାବରେ ତାଙ୍କର ପ୍ରତିଭା ଅନସ୍ୱୀକାର୍ଯ୍ୟ । ବ୍ୟାସଦେବଙ୍କ ସଂସ୍କୃତ ଶ୍ରୀମଦ୍‌ଭାଗବତ ଅଠର ହଜାର ଶ୍ଳୋକରେ ରଚିତ । ଏହାକୁ ସହଜ, ସରଳ ତଥା ବୋଧଗମ୍ୟ କରିବା ପାଇଁ ଚବିଶ ହଜାର ଶ୍ଳୋକର ଟୀକା କରିଛନ୍ତି । ଏହାର ପ୍ରଭାବରେ ଭକ୍ତିକବି ଜଗନ୍ନାଥ ଦାସ ଓଡ଼ିଆରେ ଭାଗବତ ରଚନା କରିବାରେ ସକ୍ଷମ ହୋଇଥିଲେ । ତେଣୁ ଜଗନ୍ନାଥ ଦାସ ଓଡ଼ିଆ ଭାଗବର ଦ୍ୱାଦଶ ସ୍କନ୍ଧରେ ଲେଖିଛନ୍ତି :-

ଶ୍ରୀଧର ନାମେ ବିପ୍ରବର, କଳିଯୁଗରେ ଜନ୍ମ ତା'ର ।
ଶ୍ରୀମଦ୍ ଭାଗବତଯେ ପୁରାଣ, ଅଷ୍ଟାଦଶ ସସ୍ର ଶ୍ଳୋକେଣ ।
ତା'ଟୀକା ଚଉବିଂଶ ସସ୍ର, କରଇ ଶ୍ରୀଧର ପ୍ରକାଶ ।
ବିପ୍ର କୂଳରେ ଜନ୍ମ ହୋଇ, ଜଗନ୍ନାଥ ଯେ ନାମ ବୋହି ।
ପ୍ରାକୃତ ବନ୍ଧେ ଭାଗବତ, କହିଲେ ସନ୍ଥ ଜନହିତ ।
ଶ୍ରୀଧର ସ୍ୱାମୀଙ୍କ ଶ୍ରୀମଦ୍ ଭାଗବତ ଟୀକା (ସୁବୋଧିନୀ),

ବିଷ୍ଣୁ ପୁରାଣ ଟୀକା (ଆତ୍ମପ୍ରକାଶ) ଗୀତାସାର ଟୀକା (ବ୍ରହ୍ମସମ୍ବୋଧିନୀ), ଦେବସ୍ତୁତି ଟୀକା (ମହିମ୍ନ ଟୀକା), ଶ୍ରୀମଦ୍‌ଭାଗବତର ଟୀକା (ଭାବାର୍ଥ ଦୀପିକା) ସନତ୍ ସୁଜାତୀୟର ଟୀକା (ବାଳବୋଧିନୀ) ପଦାର୍ଥ ପ୍ରକାଶିକା (ପୁରାଣ ଟୀକା) ତାଙ୍କର ଏକ ଏକ ସଫଳ ସୃଷ୍ଟି । (୪)

ଶ୍ରୀ ଚୈତନ୍ୟଦେବ ତାଙ୍କୁ ଗୁରୁ ରୂପରେ ସ୍ୱୀକାର କରିଛନ୍ତି । ଶ୍ରୀ ଚୈତନ୍ୟ ନିଜେ ଲେଖିଛନ୍ତି -

''ଶ୍ରୀଧର ସ୍ୱାମୀ ପ୍ରଭାବତେ ଭାଗବତଜାନି, ଜଗତଗୁରୁ ଶ୍ରୀଧର ସ୍ୱାମୀ ଗୁରୁ କରି ମାନି ।

** ** **

ପୁରୁଷୋତ୍ତମଦେବଙ୍କ ରାଜତ୍ୱ ସମୟରେ ଓଡ଼ିଶାକୁ ଚୈତନ୍ୟଦେବ ୧୫୧୦ ଖ୍ରୀ:ରେ ଆସିଥିଲେ । ଓଡ଼ିଆ ଭାଗବତକାର ଜଗନ୍ନାଥ ଦାସ ପଞ୍ଚଦଶଶତାବ୍ଦୀର କବି । ତେଣୁ ଶ୍ରୀଧର ସ୍ୱାମୀଙ୍କୁ ଚତୁର୍ଦ୍ଦଶ ଶତାବ୍ଦୀର ବୋଲି ଗ୍ରହଣ କରାଯାଇପାରେ । ପ୍ରାଚୀନ ଆଚାର୍ଯ୍ୟ ଲେଖକମାନଙ୍କ ମଧ୍ୟରେ ଶ୍ରୀଭକ୍ତି ରତ୍ନାବଳୀ ଗ୍ରନ୍ଥକାର ଶ୍ରୀବିଷ୍ଣୁପୁରୀ, ଶ୍ରୀ ସନାତନ ଗୋସ୍ୱାମୀ, ଶ୍ରୀରୂପ ଗୋସ୍ୱାମୀ, ଶ୍ରୀ ଜୀବଗୋସ୍ୱାମୀ, ଶ୍ରୀ କୃଷ୍ଣ ଦାସ କବିରାଜ ଗୋସ୍ୱାମୀ ବଳଦେବ ବିଦ୍ୟାଭୂଷଣ ପ୍ରମୁଖ ଶ୍ରୀଧର ସ୍ୱାମୀଙ୍କ ନାମ ଓ ଟୀକାର ଉଲ୍ଲେଖ କରି ତାଙ୍କ ପଦାଙ୍କ ଅନୁସରଣ

କରିଛନ୍ତି । ସମଗ୍ର ଭାରତବର୍ଷରେ ଅଗଣିତ ଲୋକଙ୍କ କଣ୍ଠରେ ଯେଉଁ ଶ୍ଳୋକ ଉଚ୍ଚାରିତ -

''ମୂକଂ କରୋତି ବାଚାଳଂ ପଙ୍ଗୁ ଲଘଂଯତେ ଗିରିଂ
ଯତ୍କୃପା ତମହଂ ବନ୍ଦେ ପରମାନନ୍ଦ ମାଧବଂ ।''

ତାହା ଶ୍ରୀଧର ସ୍ୱାମୀଙ୍କ କୃତ ଶ୍ଳୋକ - ଏହା ଭାଗବତକାରଙ୍କର ନୁହେଁ ।

ଶ୍ରୀମଦ୍‌ଭାଗବତର ପ୍ରଥମ ସ୍କନ୍ଧ ଆରମ୍ଭରେ ଶ୍ରୀଧର ସ୍ୱାମୀ ଲେଖିଛନ୍ତି - ଓଁ ନମୋ ଭାଗବତେ ପରମାହଂସା ସ୍ୱାଦିତ ଚରଣ କମଳ ଚିନ୍ମକରନ୍ଦାୟ ଭକ୍ତଜନ ମାନସ ନିବାସାୟ ଶ୍ରୀକୃଷ୍ଣାୟ ।

''ବାଗୀଶା ଯଶ୍ୟ ବଚନେ ଲକ୍ଷ୍ମୀର୍ଯସ୍ୟଚ ବକ୍ଷସି, ଯସ୍ୟାସ୍ତେ ହୃଦୟେ ସଂବିତ୍ ତଂ ନୃସିଂହ ମହଂଭଜେ ।''

ଏପରି ଜଣେ ଯୋଗଜନ୍ମା ମହାପୁରୁଷ. ସିଦ୍ଧିସାଧକ, ପଣ୍ଡିତ ଶ୍ରୀଧର ସ୍ୱାମୀଙ୍କ ଉପରେ ଯଥାଯଥ ଗବେଷଣା ହେଲେ ତାଙ୍କର ପ୍ରତିଭାର ପ୍ରକୃତ ମୂଲ୍ୟାୟନ ହୋଇପାରିବ । ଏବେ ରେମୁଣାରେ ସ୍ମୃତି ପରିଷଦ ଗଠିତହୋଇ ତାଙ୍କର ଜନ୍ମ ବାର୍ଷିକୀ ପାଳନ କରାଯାଉଛି । ତେବେ ଶ୍ରୀଧର ସ୍ୱାମୀ ଭାରତର ଜଣେ ଖ୍ୟାତନାମା ଟୀକାକାର ଭାବରେ ପ୍ରାତଃ ସ୍ମରଣୀୟ ହୋଇ ରହିଛନ୍ତି ।

(୧) (ଯଶୋହରରୁ ୧୨୯୫ ବଙ୍ଗାବ୍ଦରେ ପ୍ରକାଶିତ)

(୨) ଏସ୍.କେ. ଦେ - (ବଙ୍ଗଳା ସାହିତ୍ୟର ଇତିହାସ - ପୃ - ୧୭)

(୩) (କ) ଶ୍ରୀମଦ୍ ଭାଗବତ ପୁରାଣର ଦଶମ ସ୍କନ୍ଧର ତ୍ରୟତିଂଶ ଅଧାୟର ଟୀକାର ଉପସଂହାରରେ ଅଛି -

'ସେୟଂ ଶ୍ରୀପରାମାନନ୍ଦ ସେବି ଶ୍ରୀଧର ନିମିତା
ଶ୍ରୀ ଭାଗବତ ଭାବାର୍ଥ ଦୀପିକା ଦଶମାଶ୍ରୟା ।''

(ଖ) ଆତ୍ମ ପ୍ରକାଶିକା ଟୀକାର ଅଂଶ -

''ଶ୍ରୀ ବିନ୍ଦୁ ମାଧବଂ ବନ୍ଦେ ପରମାନନ୍ଦ ବିଗ୍ରହଂ
ବାଚଂ ବିଶ୍ୱେଶ୍ୱରଂ ଗଂଗା ପରାଶର ମୁଖାନ୍ ମୁନିନ୍ । ''

(Bhandarkar research Institute Poona, MS.
No. - 425of opert II 4714 - CC II-160 page.)

•••

ଅଧାପକ, ଓଡ଼ିଆ ବିଭାଗ
ନୀଳମଣି କଲେଜ, ରୂପସା

# ଶ୍ରୀଧର ସ୍ୱାମୀଙ୍କ ସିଦ୍ଧାନ୍ତ

* ଶ୍ରୀ ଯତିଶେଖର ଦାସ, ଭକ୍ତି ଶାସ୍ତ୍ରୀ

ଶ୍ରୀଧର ସ୍ୱାମୀ ରଚିତ ଗ୍ରନ୍ଥମାନଙ୍କରୁ ଜଣାଯାଏ, ସେ କେବଳାଦ୍ୱୈତବାଦୀ ସଂପ୍ରଦାୟର ଏକଦଣ୍ଡୀ ସନ୍ନ୍ୟାସୀ ଥିଲେ । ସେ ପରମାନନ୍ଦ ନାମକ ଗୁରୁଙ୍କର ଶିଷ୍ୟଥିଲେ ଓ ସେ ନୃସିଂହ ଉପାସକ ଥିଲେ । ସେ ଅଦ୍ୱୈତବାଦୀ । ତାଙ୍କର ସଂପ୍ରଦାୟର ଶୋଧନ ପାଇଁ ବିଶେଷ ଯତ୍ନ କରିଥିଲେ । ସେ ବିଷ୍ଣୁ ପୁରାଣର ଆତ୍ମ ପ୍ରକାଶର ଟୀକା ରଚନା କରିଥିଲେ । ଶ୍ରୀମଦ୍‌ଭାଗବତର 'ଭାବାର୍ଥଦୀପିକା' ଟୀକା ଶ୍ରୀ ଶ୍ରୀଧର ସ୍ୱାମୀଙ୍କ ବିଶ୍ୱବନ୍ଦୀୟ କୃତି । ଶ୍ରୀଧର ସ୍ୱାମୀଙ୍କର ଭଗବତ୍ ଗୀତାର ଟୀକା ବିଶେଷ ସମାଦର ଲାଭ କରିଅଛି ସେ ଟୀକାର ନାମ ଦେଇଥିଲେ 'ସୁବୋଧିନୀ' ।

ଏହି ପ୍ରବଂଧରେ ଶ୍ରୀଧର ସ୍ୱାମୀ ସିଦ୍ଧାନ୍ତ ସମ୍ବନ୍ଧେ ଦିଗ୍‌ଦର୍ଶନ କରୁ ଅଛୁଁ । ଶ୍ରୀଧର ସ୍ୱାମୀଙ୍କର ଆରାଧ ଥିଲେ ଶ୍ରୀକୃଷ୍ଣ ଓ ଶ୍ରୀ ମାଧବ । ତାଙ୍କର ସାଧନା ଥିଲା - ଶ୍ରବଣ ଓ କୀର୍ତ୍ତନ - ସଂସ୍ମରଣାଦି ଭକ୍ତି । ତାଙ୍କର ପ୍ରୟୋଜନ ବିଷୟ ପ୍ରତ୍ୟେକ ଜୀବ ଶୁଦ୍ଧ ସ୍ୱରୂପ ଦୀପ୍ତ ହୁଅନ୍ତୁ । ତାଙ୍କର ଇଷ୍ଟ ଥିଲା - ଶ୍ରୀ ନୃହରି । ତାଙ୍କର ପ୍ରମାଣ ହେଉଛି ଶବ୍ଦ । ସେ ଶ୍ରୁତି, ବ୍ରହ୍ମସୂତ୍ର ଶ୍ରୀମଦ୍ ଭାଗବତ,ଗୀତା ଓ ବିଷ୍ଣୁ ପୁରାଣ ବିଶେଷ ଭାବେ ଅବଲମ୍ବନ କରିଥିଲେ । ତାଙ୍କର ନିଜକୃତ କୌଣସି ବ୍ରହ୍ମସୂତ୍ର ଭାଷ୍ୟ ନାହିଁ । ଶ୍ରୀଧର ସ୍ୱାମୀ କହିଛନ୍ତି ଅଗ୍ନିର ଦାହିକା ଶକ୍ତିବତ୍ ବ୍ରହ୍ମଠାରେ ସ୍ୱଭାବସିଦ୍ଧ ଶକ୍ତି ସମୂହ ଅଛି । ଜୀବଶକ୍ତିକୁ କ୍ଷେତ୍ରଜ୍ଞା ଶକ୍ତି ବୋଲି ସେ କହିଛନ୍ତି । ପରମାର୍ଥଭୂତ ବସ୍ତୁର ଶକ୍ତି ହେଲେ ମାୟା । ପରମାର୍ଥଭୂତ ଶକ୍ତିର ଅଂଶ ହେଲା ଜୀବ । ପରମାର୍ଥଭୂତ ବସ୍ତୁର କାର୍ଯ୍ୟ ଜେପତ୍ । ସେ କହିଛନ୍ତି - ବ୍ରହ୍ମ ଜଗତର ନିମିତ୍ତ ଓ ଉପାଦାନର କାରଣ ।

ଶ୍ରୀ ଶ୍ରୀଧର ସ୍ୱାମୀ ଜୀବ ସଂବଧରେ ଉଲ୍ଲେଖ କରି କହିଛନ୍ତି - ଅଗ୍ନିରୁ ଯେପରି କ୍ଷୁଦ୍ର ସ୍ଫୁଲିଂଗ ସମୂହ ବିକୀର୍ଣ୍ଣ ହୁଏ, ସେହିପରି ପରମାତ୍ମାଙ୍କ ଠାରୁ ଜୀବଗଣ ଉଦ୍‌ଗତ ହୋଇଛନ୍ତି । ଈଶ୍ୱରଙ୍କ ରକ୍ଷଣ ବଶତଃ ଜୀବ ପ୍ରକାଶିତ ହୁଏ । ବାୟୁ ନିମିତ୍ତ କାରଣ, ଜଳ ଉପାଦାନ କାରଣ । ସେହିପରି ପ୍ରକୃତି ନିମିତ୍ତ କାରଣ - ପୁରୁଷ ଉପାଦାନ କାରଣ, ପ୍ରକୃତି ଓ ପୁରୁଷର ଐକ୍ୟରୁ ଜୀବ ସୃଷ୍ଟି ସିଦ୍ଧ ହୋଇଛନ୍ତି । ଏହି ଆତ୍ମା ଅବିନଶ୍ୱର, ଜୀବନମାନଙ୍କର ଜନ୍ମ ଉପାଧି ବାସ୍ତବ ନୁହେଁ । ପୁଷ୍ପରସ ସମୂହ ଏକତ୍ର ହେଲେ କିଏ କେଉଁ ଫୁଲର ରସ କହି ହୁଏ ନାହିଁ । ସେହି ପରି ଜୀବ ବ୍ରହ୍ମକୁ ଲାଭ କଲେ ନିଜର ସତ୍ତା ଭୁଲିଯାଏ । ପ୍ରବାହମାନ ନଦୀ ସମୂହ ଯେପରି ନାମ ଓ ରୂପ ପରିତ୍ୟାଗ ପୂର୍ବକ ସମୁଦ୍ରରେ ଲୀନ ହୁଅନ୍ତି,

ସେହିପରି ଆତ୍ମଜ୍ଞ ପୁରୁଷମାନେ ନାମରୂପ ବିମୁକ୍ତ ହୋଇ ପରାତ୍ପର ଦିବ୍ୟ ପୁରୁଷଙ୍କୁ ଲାଭ କରନ୍ତି । ଜୀବ ଭଗବାନଙ୍କର ଅଂଶ ଜୀବ ଅବିଦ୍ୟା କର୍ତ୍ତୃକ ମହାଗ୍ରସ୍ତ । ଅଜ୍ଞ ଜୀବ ଇନ୍ଦ୍ରିୟର , ଆର୍କଷଣରେ ପ୍ରଲୁବ୍ଧ । କିନ୍ତୁ ବିଜ୍ଞ ଜୀବ ଶୁଦ୍ଧ ସ୍ୱରୂପ ପ୍ରାପ୍ତ । ନିତ୍ୟ ଶୁଦ୍ଧ ଜୀବ ପରମେଶ୍ୱରଙ୍କର ପ୍ରସାଦଲବ୍ଧ ଜ୍ଞାନ ଦ୍ୱାରା ଶୁଦ୍ଧ ହୁଏ ।

•••

(ଉପାଦାନ ଭାବାର୍ଥ ଦୀପିକା ୧୦/୮୭/୩୧, - ୨ ସୁବୋଧିନୀ - ୧୫/୭)

* ରୁଦ୍ରପୁର, ରେମୁଣା, ବାଲେଶ୍ୱର

# ଶ୍ରୀଧର ସ୍ୱାମୀ

## ଶ୍ରୀଧର ସ୍ୱାମୀ ପାଦାଂ ସ୍ତନ୍ ବନ୍ଦେ ଭକ୍ତ୍ୟୈବ ରକ୍ଷାକାନ୍''

• ରସରାଜ ବଟବିହାରୀ ଦାସ

ଶ୍ରୀମଦ୍‌ଭାଗବତ, ଶ୍ରୀମଦ୍ ଭଗବଦ୍ ଗୀତା ଓ ବିଷ୍ଣୁ ପୁରାଣର ଭାରତ ବିଖ୍ୟାତ ଟୀକାକାର ଶ୍ରୀଧର ସ୍ୱାମୀ ଭାରତବାସୀଙ୍କ ନିକଟରେ ଅପରିଚିତ ନୁହନ୍ତି, ସେ ଜଣେ ଭାରତୀୟ, କିନ୍ତୁ ସେ ଭାରତର କେଉଁ ସ୍ଥାନରେ ଆବିର୍ଭୁତ ହୋଇଥିଲେ ସେ ସମ୍ବନ୍ଧରେ ବିଭିନ୍ନ ମତବାଦ ରହିଛି, କାରଣ ଶ୍ରୀଧରଙ୍କ ଯାବତୀୟ ରଚିତ ଗ୍ରନ୍ଥ ଓ ଲେଖାରୁ ତାଙ୍କର ପ୍ରକୃତ ଜନ୍ମସ୍ଥାନ ସମ୍ବନ୍ଧରେ କୌଣସି ନିର୍ଭରଯୋଗ୍ୟ ଐତିହାସିକ ପ୍ରମାଣ ମିଳିନାହିଁ । ତାଙ୍କର ଜନ୍ମସ୍ଥାନ ସମ୍ବନ୍ଧରେ ଯାହା କିଛି ପ୍ରମାଣ ବିଭିନ୍ନ ଗବେଷକ ଓ ଐତିହାସିକ ମାନେ ଦେଇଛନ୍ତି ସେ ସମସ୍ତ ଜନଶ୍ରୁତି, କିମ୍ବଦନ୍ତୀ, ପ୍ରବାଦ ଏବଂ ପ୍ରବଳ ଜନମତ ମାଧ୍ୟମରେ , କାହାରି କାହାରି ମତରେ ସେ ଜଣେ ଗୁଜରାଟ ଦେଶବାସୀ ମହାରାଷ୍ଟ୍ରୀୟ ବ୍ରାହ୍ମଣ ଥିଲେ । କେହି କେହି ତାଙ୍କୁ ଭକ୍ତି ଗ୍ରନ୍ଥକାବ୍ୟରୁ ରଚୟିତାର ଜନକ ଏବଂ କେହି ମଧ୍ୟ ତାଙ୍କୁ ପୂର୍ବାଶ୍ରମର ଜଣେ ସଦାଚାରୀ ଧନବାନ ଗୃହସ୍ଥ ବୋଲି ମତ ପ୍ରକାଶ କରିଛନ୍ତି, ଗୋରଖ - ପୁରରୁ ପ୍ରକାଶି ''କଲ୍ୟାଣୀ'' ନାମକ ପତ୍ରିକାର ୨୬ ବିଶେଷାଙ୍କ ଭକ୍ତି ଚରିତାଙ୍କରୁ ଦେଖିବାକୁ ମିଳେ ଯେ ଆଚାର୍ଯ୍ୟ ଶ୍ରୀଧର ସ୍ୱାମୀ ଦକ୍ଷିଣାଞ୍ଚଳରେ ଜନ୍ମ ହୋଇଥିଲେ । ଏହା ସତ୍ତ୍ୱେ ପ୍ରବଳ ଜନମତ ଅନୁଯାୟୀ ଶ୍ରୀଧର ସ୍ୱାମୀଙ୍କ ଜନ୍ମସ୍ଥାନ ବାଲେଶ୍ୱର ଜିଲ୍ଲାର ରେମୁଣା ଥାନା ଅନ୍ତର୍ଗତ ମୟୂରଗ୍ରାମ (ମରେଇଗାଁ) ବୋଲି ଧରିନିଆଯାଉଛି, କେବଳ ତାହା ନୁହେଁ ଶ୍ରୀଧର ସ୍ୱାମୀ କୃତ ବହୁତାଳ ପତ୍ର ପୋଥିମାନ ମୟୂରଗ୍ରାମର କେତେକ ବ୍ରାହ୍ମଣ ପରିବାରରେ ରକ୍ଷିତ ଅଛି, ଏଥିରେ ଶ୍ରୀଧରଙ୍କର ଜନ୍ମ ସ୍ଥାନ ବିଷୟରେ କିଛି ଉଲ୍ଲେଖ ନାହିଁ । ଏହି ବ୍ରାହ୍ମଣ ପରିବାର ଶ୍ରୀଧର ସ୍ୱାମୀଙ୍କ ବଂଶଧର ବୋଲି ଦାବି କରନ୍ତି ।

ପ୍ରାୟ ୩୦୦ ବର୍ଷ ପୂର୍ବେ କାଶୀରୁ ଦୁଇଜଣ ପଣ୍ଡିତ ସ୍ଥାନୀୟ ଶ୍ରୀ କ୍ଷୀରଚୋରା ମନ୍ଦିରକୁ ଆସି ଏଠାରେ ରହୁଥିବା ଜଣେ ବାବାଜୀ ସ୍ୱାମୀଙ୍କ ବିଷୟରେ କିଛି ତଥ୍ୟ ଜାଣିବାକୁ ଚାହିଁଥିଲେ ଏବଂ ମୟୂରଗ୍ରାମ କେଉଁଠି ପଚାରିଥିଲେ । କିନ୍ତୁ କୌଣସି ତଥ୍ୟ ଓ ସାହାଯ୍ୟ ନପାଇ ଫେରି ଯାଇଥିଲେ, ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ ସେହି ପଣ୍ଡିତ ମାନେ ଶ୍ରୀଧର ସ୍ୱାମୀଙ୍କର ଜନ୍ମସ୍ଥାନ ମୟୂରଗ୍ରାମରେ ନ ହୋଇଥାନ୍ତା, ତେବେ ସେମାନେ କାଶୀରୁ ଏତେବାଟ ଆସିଥାନ୍ତେ କାହିଁକି ? ଏହି ଚିନ୍ତା କରିବାର ବିଷୟ ।

ଲାଲଦାସକୃତ ବଙ୍ଗଳା ଭାଷାରେ ଲିଖିତ "ଭକ୍ତମାଳା" ନାମକ ଗ୍ରନ୍ଥରେ ବର୍ଣ୍ଣିତ ଅଛି ଯେ ଶ୍ରୀଧର ସ୍ୱାମୀ ଶ୍ରୀ ପରମାନନ୍ଦ ପୁରି ନାମକ ସନ୍ନ୍ୟାସୀଙ୍କର କୃପା ଲାଭ କରି ନୃସିଂହ ଉପାସକ ହୋଇଥିଲେ ଏବଂ ବାଗ୍‌ଦେବୀ ମନ୍ତ୍ରରେ ସିଦ୍ଧି ଲାଭ କରିଥିଲେ, ପରେ ଦୀକ୍ଷା ଗ୍ରହଣ କରି ବୈରାଗ୍ୟ ମାର୍ଗରେ ସାଧନା ରତ ହେଲେ, ଏହା ସତ୍ତ୍ୱେ ପିତାମାତାଙ୍କର ସନିର୍ବନ୍ଧ ଅନୁରୋଧରେ ସେ ବିବାହ କରିଥିଲେ, କାଳକ୍ରମେ ଏକ ମାତ୍ର ସନ୍ତାନଙ୍କୁ ଜନ୍ମଦେଇ ତାଙ୍କ ପତ୍ନୀ ଇହଧାମ ପରିତ୍ୟାଗ କରିବାରୁ ତାଙ୍କର ବୈରାଗ୍ୟ ଓ ସନ୍ତାନ ମୋହ ଜନିତ ମାନସିକ ଦ୍ୱନ୍ଦ୍ୱ ଉପୁଜିଲା, ।

ଦିନେ ସେ ଚିନ୍ତାଗ୍ରସ୍ତ ଅବସ୍ଥାରେ ବସିଥିଲାବେଳେ ଚାଳରୁ ଝିଟିପିଟି ଅଣ୍ଡାଟିଏ ଖସି ପଡ଼ି ଫାଟିଗଲା ଏବଂ ସେଥିରୁ ଏକ ଶିଶୁ ଝିଟିପିଟି ବହିର୍ଗତ ହୋଇ ଚାଲିବାକୁ ଚେଷ୍ଟା କଲା । କିନ୍ତୁ ଲାଳ ଜଡ଼ି ଥିବାରୁ ସେଥିରୁ ମୁକ୍ତ ହୋଇପାରିଲା ନାହିଁ, ଏହାର କିଛି କ୍ଷଣ ପରେ ସେ ଲକ୍ଷ୍ୟ କଲେ ଯେ ଗୋଟାଏ ପୋକ ଆସି ସେହି ଲାଳରେ ଛନ୍ଦି ହୋଇଗଲା । ସଦ୍ୟଜାତ ଟିଝିପିଟି ଶାବକଟି ହଠାତ୍ ସେହ ପୋକଟିକୁ ଆକ୍ରମଣ କରି ଗ୍ରାସ କରି ପକାଇଲା । ଏହି ଦୃଶ୍ୟ ଶ୍ରୀଧରଙ୍କର ମନରେ ଗଭୀର ପ୍ରେରଣା ଦେଲା । ସେ ନିଜର ଶିଶୁ ସନ୍ତାନର ରକ୍ଷଣାବେକ୍ଷଣା ପାଇଁ ଯେଉଁ ଚିନ୍ତା କରୁଥିଲେ ସେ ଚିନ୍ତା କ୍ରମେ ଦୂରୀଭୂତ ହେବାକୁ ଲାଗିଲା ତାଙ୍କ ମନରେ ଦୃଢ଼ ଧାରଣା ଜାତ ହେଲା ଯେ ଭଗବାନ ପ୍ରତ୍ୟେକ ପ୍ରାଣୀକୁ ସେହି ଦିନ ଠାରୁ ସେ ଶିଶୁପୁତ୍ରକୁ ଛାଡ଼ି ଗୃହତ୍ୟାଗ କଲେ ଏବଂ କାଶୀ ଧାମକୁ ଯାଇ ସେଠାର ଅବସ୍ଥାନ କଲେ ।

ମତାନ୍ତରେ ଶ୍ରୀଧର ସ୍ୱାମୀଙ୍କର ପୈତୃକ ସମ୍ପତ୍ତିରେ ଅନ୍ୟାନ୍ୟ ସହୋଦର ମାନଙ୍କ ସହିତ ମତାନ୍ତର ହୁଏ । ତାଙ୍କ ସହୋଦର ମାନେ ଦୁଷ୍ଟ ପ୍ରକୃତିର ଲୋକ ଥିଲେ । ଶ୍ରୀଧରଙ୍କର ଧର୍ମଭାବ ଏବଂ ସରଳତାର ସୁଯୋଗ ନେଇ ସେମାନେ ତାଙ୍କୁ ପୈତୃକ ସମ୍ପତ୍ତିରୁ ବଞ୍ଚିତ କରି କୁଳ ଦେବତା ନୃସିଂହ ମୂର୍ତ୍ତିଟି ଶ୍ରୀଧରଙ୍କୁ ଦେଲେ, ଏଥିରେ ଶ୍ରୀଧରଙ୍କ ମନରେ ତୀବ୍ର ବୈରାଗ୍ୟ ଭାବ ଉଦିତ ହେବାରୁ ସେ ନୃସିଂହ ବିଗ୍ରହକୁ ସାଙ୍ଗରେ ଧରି ଗୃହତ୍ୟାଗ କଲେ ।

ନାଭଜି କୃତ ହିନ୍ଦୀରେ ଲେଖା ଭକ୍ତମାଳାର ବତିକ ପ୍ରକାଶରେ ବର୍ଣ୍ଣିତ ଅଛି ଯେ ଶ୍ରୀଧର ସ୍ୱାମୀ ପୂର୍ବାଶ୍ରମର କଣ ଧନବାନ ସଦାଚାରୀ ଗୃହସ୍ଥ ଥିଲେ । (ଦିଗ୍‌ବିଜୟ କରି) ଆଗ୍ରାରୁ ଗୃହାଭିମୁଖରେ ପ୍ରତ୍ୟାବର୍ତ୍ତନ କରିବା ବେଳେ କେତେକ ଡକାୟତ ତାଙ୍କ ସହିତ ଆଉ କେହି ନାହାନ୍ତି ଜାଣି ତାଙ୍କୁ ହତ୍ୟା କରି ଧନରତ୍ନ ଲୁଟି କରିବା ଉଦ୍ଦେଶ୍ୟରେ ପଶ୍ଚାଦ୍ଧାବନ କରିଥିଲେ । ଭକ୍ତକୁ ରକ୍ଷା କରିବା

ପାଇଁ ସ୍ୱୟଂ ରାମଚନ୍ଦ୍ର ଧନୁହସ୍ତରେ ଶ୍ରୀଧରଙ୍କ ପଛେ ପଛେ ଯାଉଥିବାର ଦେଖି ଡକାୟତ ମାନେ ଭୟଭୀତ ହେଲେ ଏବଂ ଶ୍ରୀଧରଙ୍କ ପାଶ୍ଚାଧାବନ କଲେ ନାହିଁ । ଶ୍ରୀଧର ନିରାପଦରେ ନିଜ ଲକ୍ଷ୍ୟ ସ୍ଥାନରେ ପହଞ୍ଚି ପାରିଲେ । ଶ୍ରୀଧର ସ୍ୱାମୀ ପ୍ରକୃତରେ କେଉଁ ଅଞ୍ଚଳରେ ଲୋକ ଥିଲେ ?

ବହୁମତବାଦ ସତ୍ତ୍ୱେ ଶ୍ରୀଧର ସ୍ୱାମୀ ଯେ ଉତ୍କଳୀୟ ଥିଲେ ଏବଂ ସେ ବାଲେଶ୍ୱର ଜିଲ୍ଲାର ରେମୁଣା ନିକଟବର୍ତ୍ତୀ ମୟୂରଗ୍ରାମ (ମେରେଇଗାଁ) ଅଧିବାସୀ ଥିଲେ ଏ ବିଷୟରେ ବହୁଦୃଢ଼ ବିଶ୍ୱାସ ଯୋଗ୍ୟ ତଥ୍ୟ ମାନ ରହିଛି ।

ଢେଙ୍କାନାଳର କପିଳାସ ଠାରେ କେତେ ପୁରାତନ ମଠମାନ ଅଛି । ସେଥିମଧ୍ୟରୁ 'ବ୍ରହ୍ମଚାରୀ ନାମକ ଏକ ମଠ ଅଛି । ଏହାକୁ ଦଣ୍ଡସ୍ୱାମୀ ମଠ ମଧ୍ୟ କୁହାଯାଏ । ଏଠାରେ ଓଡ଼ିଶାର ଗଜପତି ପ୍ରତାପ ଭାନୁଦେବ ଶ୍ରୀ ରାମକୃଷ୍ଣ ବଳ ନାମକ ଜଣେ ସନ୍ନ୍ୟାସଙ୍କୁ ତତ୍ତ୍ୱବିଧାୟକ ରୂପେ ନିଯୁକ୍ତ କରିଥିଲେ । ଶ୍ରୀଧର ସ୍ୱାମୀ ଏହି ସନ୍ନ୍ୟାସୀଙ୍କର ଶିଷ୍ୟଥିଲେ ଏବଂ ଏହି ମଠରେ ବହୁଦିନ ରହି ନୃସିଂହ ଉପାସନା କରି ସିଦ୍ଧିଲାଭ କରିଥିଲେ । ଶ୍ରୀଧର କପିଳାସରେ ତାଙ୍କ ଗୁରୁ ଦଣ୍ଡୀ ସ୍ୱାମୀ ମଠାଧୀଶ ଶ୍ରୀ ରାମକୃଷ୍ଣ ନନ୍ଦଙ୍କ ଅନ୍ତେ ନିଜେ ମଠାଧୀଶ ହୋଇ ନାନା ଶାସ୍ତ୍ରାୟଧନ କରି ଶ୍ରୀ ଶ୍ରୀ ନୃସିଂହଙ୍କ ଉପାସନା କରିଥିଲେ, ପରେ ସେ ନୃସିଂହ ଶ୍ରୀଶିଖରେଶ୍ୱର ମହାଦେବଙ୍କ ପ୍ରସାଦରୁ ସୁବୋଧିନୀ, ଭାବାର୍ଥ ଦୀପିକା ଓ ଆତ୍ମପ୍ରକାଶ ପ୍ରଭୃତି ବିଶ୍ୱବିଖ୍ୟାତ ଟୀକାମାନ ରଚନା କରିଥିବାରୁ ଜଣାଯାଏ ।

ଶ୍ରୀଧର ସ୍ୱାମୀ ଢେଙ୍କାନାଳର ସପ୍ତଶଯ୍ୟାଠାରେ ଆଶ୍ରମ ନିର୍ମାଣ କରି ନୃସିଂହ ମନ୍ତ୍ରରେ ଦୀକ୍ଷିତ ହୋଇ ତାଙ୍କର ସୁପ୍ରସିଦ୍ଧ ଟୀକାମାନ ଲେଖିଥିବାର ବିଷୟ କେହି କେହି ମତ ପୋଷଣ କରନ୍ତି ।

ଆହୁରି ମଧ୍ୟ ଓଡ଼ିଶାର ପ୍ରସିଦ୍ଧ ପତ୍ନତାତ୍ତ୍ୱିକ ୰ ପରମାନନ୍ଦ ଆଚାର୍ଯ୍ୟ ମଧ୍ୟ ଶ୍ରୀଧର ସ୍ୱାମୀ ଓ ବଳଦେବ ବିଦ୍ୟାଭୂଷଣଙ୍କ ବିଷୟରେ କେତେକ ତଥ୍ୟ ପରିବେଶଣ କରି ଯାଇଛନ୍ତି ।

କାହାରି କାହାରି ମତରେ ଶ୍ରୀନାମ କୌମୁଦୀ ଗ୍ରନ୍ଥର ରଚୟିତା ଶ୍ରୀ ଲକ୍ଷ୍ମୀଧର ଶ୍ରୀଧର ସ୍ୱାମୀ ପଦଙ୍କର ସତୀର୍ଥ ଭ୍ରାତା ଥିଲେ ।

ଓଡ଼ିଶାର ବିଶିଷ୍ଟ ଶିକ୍ଷାବିତ୍ ଓ ବୟାକରଣିକ ୰ ଶ୍ରୀ ଚନ୍ଦ୍ର ମୋହନ ମହାରଣା ତତ୍‌କାଳୀନ ମୁକୁର ପତ୍ରିକାର ଏକ ପ୍ରବନ୍ଧ ଲେଖିଥିଲେ । ସେଥିରେ ସେ ଉଲ୍ଲେଖ କରିଥିଲେ ଯେ ବାଲେଶ୍ୱର ଜିଲ୍ଲାର ରେମୁଣା ଥାନା ଅନ୍ତର୍ଗତ ସୋନ ଓ ବଳଙ୍ଗ ନଦୀର ମଧ୍ୟବର୍ତ୍ତୀ ମୟୂର ଗ୍ରାମ (ମେରେଇଗାଁ)ରେ ଶ୍ରୀଧର ସ୍ୱାମୀ ଜନ୍ମ ଗ୍ରହଣ କରିଥିଲେ ।

ଡକ୍ଟର ହରେକୃଷ୍ଣ ମହତାବ ତାଙ୍କ ଓଡ଼ିଶା ଇତିହାସରେ ଶ୍ରୀଧର ସ୍ୱାମୀଙ୍କ ଜନ୍ମସ୍ଥାନ ଭକ୍ତ ମୟୂର ଗ୍ରାମ ବୋଲି ଦର୍ଶାଇଛନ୍ତି ।

ହିନ୍ଦୀରେ ଲେଖା ଉତ୍କଳ ରତ୍ନ ସଂଗ୍ରହ ନାମକ ପୁସ୍ତକରେ ଲେଖାଅଛି "ବାଲେଶ୍ୱର ଜିଲ୍ଲା ରେମୁଣାର ବର୍ଣ୍ଣନ :-

ଯାହାଁପରେ ବାଲେଶ୍ୱର ଜିଲ୍ଲା ରେମଣାକେ ଏକ ମିଲ ଦୂରୀ ପର ମୌରାକା ଗ୍ରାମ ହେଁ । ଯହାଁ ଶ୍ରୀଧର ସ୍ୱାମୀ ଜନମ ହୁଆ । ଇନ୍ହୋନେ ଶ୍ରୀମଦ୍ ଭାଗବତ କି ଟୀକାକୀ ହେଁ ଯୋ ଶୀଧର ନାମସେ ଜଗତମେ ବହୁତ ପ୍ରସିଦ୍ଧ ହୈ । ପ୍ରତ୍ୟେକ ବର୍ଷ ଇନ୍‌କା ଜନ୍ମତିଥିକା ଉତ୍ସବ ମନାନେ କାଶୀସେ ସୁପ୍ରସିଦ୍ଧ ପଣ୍ଡିତ ଯାତେ ହୈ ।

**ଆବିର୍ଭାବ କାଳ :** - ଜଗତ୍‌ଗୁରୁ ଶ୍ରୀଧର ସ୍ୱାମୀଙ୍କର ଆବିର୍ଭାବ କାଳ ସଠିକ୍ ଭାବରେ ନିର୍ଣ୍ଣୟ କରିବା କଠିଣ । ସେ ତାଙ୍କର ଟୀକା ମାନଙ୍କରେ ଶଙ୍କରାଚାର୍ଯ୍ୟ । ଚିତ୍ ସୁଖଯୋଗୀ ଓ ବୋପଦେବଙ୍କ ନାମ ଉଲ୍ଲେଖ କରି ଯାଇଛନ୍ତି । ଏଥିରୁ ଜଣାଯାଏ ଯେ ସେ ବୋପଦେବଙ୍କ ପରର ଓ ଚୈତନ୍ୟଙ୍କ ପୂର୍ବରୁ ଆବିର୍ଭୂତ ହୋଇଥିଲେ । କେତେକଙ୍କ ମତରେ ସେ ଖ୍ରୀ ୧୩୫୦ ଓ ଖ୍ରୀ ୧୪୦୦ ମଧ୍ୟରେ ଭଗବତ୍ ଗୀତା, ଭାଗବତ ଓ ବିଷ୍ଣୁ ପୁରାଣମାନଙ୍କ ବାଖ୍ୟା କରିଥିଲେ । ଏଥିରୁ ଜଣାଯାଏ ଯେ ସେ ଚତୁର୍ଦ୍ଦଶ ଶତାବ୍ଦୀର ପ୍ରଥମ ପାଦରେ ଆବିର୍ଭୂତ ହୋଇଥିଲେ ।

ଡକ୍ଟର ଜେ. ଏନ୍. ଫାର୍କୁହର (J. N. Farguhaay) ତାଙ୍କର An out line of the religious lilerature of India ନାମକ ପୁସ୍ତକରେ ଶ୍ରୀଧର ସ୍ୱାମୀଙ୍କ ବିଷୟରେ ଲେଖିଛନ୍ତି -

'ସମ୍ଭବତଃ ୧୪୦୦ ଖ୍ରୀରେ ପୁରୀରେ ଶଙ୍କରାଚାର୍ଯ୍ୟ ସମ୍ପ୍ରଦାୟର ଗୋବର୍ଦ୍ଧନ ମଠର ମହନ୍ତ ଶ୍ରୀଧର ସ୍ୱାମୀ ଶ୍ରୀମତ୍ ଭାଗବତର ଭାବାର୍ଥ ଦୀପିକା ଟୀକା ଲେଖିଥିଲେ ।

ଶ୍ରୀଧରଙ୍କ ଆବିର୍ଭାବ କାଳ ବିଷୟରେ ଶ୍ରୀ ଏସ୍. କେ. ଦେ ଲେଖିଯାଇଛନ୍ତି ଯେ ସେ ଖ୍ରୀ ୧୩୦୦ ପୂର୍ବରୁ ଆବିର୍ଭାବ ହୋଇ ପାରି ନଥିଲେ ଯେହେତୁ ଶ୍ରୀଧର ବୋପ ଦେବଙ୍କ ନାମ ଉଲ୍ଲେଖ କରିଛନ୍ତି, କାରଣ ବୋପଦେବ ୧୩୦୦ ଖ୍ରୀ:ର ପୂର୍ବରୁ ଥିଲେ ।

କାଶୀର ତତ୍କାଳୀନ ପଣ୍ଡିତ ଏହି ସମସ୍ତ ଟୀକା ମଧ୍ୟରୁ କେତେକ ମାନି ନେଇଥିଲେ କିନ୍ତୁ ବିଷ୍ଣୁ ପୁରାଣର ବାଖ୍ୟା ଉପରେ କେତେକ ଆପତ୍ତି

ଉଠାଇଥିଲେ । ଶ୍ରୀଧର ସ୍ୱାମୀ ସେମାନଙ୍କ ସହିତ ଯୁକ୍ତି ନକରି ଶ୍ରୀ ଶ୍ରୀ ବେଣୀମାଧବ ମହାପ୍ରଭୁଙ୍କ ବିଚାର ଉପରେ ଛାଡ଼ି ଦେଲେ । ଏକ ନିର୍ଦ୍ଦିଷ୍ଟ ଦିନରେ ପଣ୍ଡିତ ମାନେ ଉପସ୍ଥିତ ହୋଇଥିଲେ । ସମସ୍ତଙ୍କ ସମ୍ମୁଖରେ ଶ୍ରୀଧର ସ୍ୱାମୀ ବେଣୀ ମାଧବ ଠାକୁରଙ୍କ ଚରଣ ତଳେ ଥୋଇ ଦେଲେ । ପ୍ରବାଦ ଅଛି ଯେ ଶ୍ରୀ ବେଣୀମାଧବ ଉକ୍ତ ଗ୍ରନ୍ଥକୁ ତଳୁ ଉଠାଇ ନିଜ ବକ୍ଷରେ ଚାପି ଧରିଥିଲେ । ଏଥିରେ ପଣ୍ଡିତ ମାନେ ଆପତ୍ତି ନ ଉଠାଇ ମାନି ନେଲେ ।

ସ୍ୱାମୀଜୀ ଶଂକର ପନ୍ଥୀ ଅଦ୍ୱୈତ ମତବଲମ୍ବୀ ଥିଲେ ମଧ ତାଙ୍କର ସିଦ୍ଧାନ୍ତରେ କେତେକ ସ୍ୱତନ୍ତ୍ରତା ଥିଲା । ତାଙ୍କ ମନରେ ଭକ୍ତି ଉପୁଜିଲେ ବ୍ରହ୍ମତତ୍ତ୍ୱର ଉପଲବ୍ଧି ହୋଇଥାଏ । ସେ ଆହୁରି କହିଛନ୍ତି ସେ ଅଚ୍ୟୁତ ଭାବ ବିବର୍ଦ୍ଧନ ଜ୍ଞାନ ଏବଂ ଅଣିମାଦି ଅଷ୍ଟସିଦ୍ଧି ଏ ଦୁଇକୁ ତରାଜୁରେ ଓଜନ କରାଯାଇପାରେ । କିନ୍ତୁ ଭଗବତ୍ ପ୍ରେମ ଏବଂ କୃଷ୍ଣଙ୍କର ନାମ ଏହି ଦୁଇଟି ଓଜନ କରାଯାଇ ପାରିବ ନାହିଁ, ଦୁଇର ସମତୁଲ୍ୟ କୌଣସି ବସ୍ତୁ ସଂସାରରେ ନାହିଁ ।

"ନୈଷ୍କର୍ମ୍ୟ ପ୍ୟଚ୍ୟୁତେ ଭବବର୍ଜିତଂ

ନଶୋଭତେ ଜ୍ଞାନ ମଲଂ ନିରଞ୍ଜନଂ । (ଭାଗବତ)

ଅର୍ଥାତ୍ ଅଚ୍ୟୁତ ଭାବ ବର୍ଜିତ ଜ୍ଞାନ ଶୋଭାପାଏ ନାହିଁ ।

ପୁନଶ୍ଚ ସେ କହିଛନ୍ତି :-

ଶ୍ରେୟ ଶ୍ରୁତିଂ ଭକ୍ତିମୁଦସ୍ୟ ଯେବିଭୋ

କ୍ଲିଷ୍ୟନ୍ତି ଯେ କେବଳ ବୋଧ ଲବ୍ଧୟେ

ତେଷା ମସୌକ୍ଲେଶନା ବଶିଷ୍ୟତେ

ନାନ୍ୟବ ଯଥା ସ୍କନ୍ଧ ତୁଷାବ ଘାତିନାଂ । (ଭାଗବତ)

ଅର୍ଥାତ୍ ବେଦରେ ନିରୂପଣ କରାଯାଇଥିବା ଶ୍ରେୟବସ୍ତୁ ଭକ୍ତିକୁ ଛାଡ଼ି ଯେଉଁମାନେ କେବଳ ଜ୍ଞାନ ଲାଭ ପାଇଁ ଯତ୍ନବାନ ହୁଅନ୍ତି ସେମାନଙ୍କର କ୍ଲେଶହିଁ ସାର ହୋଇଥାଏ । ହରିଭକ୍ତି ନଥାଇ ଏପରି ଯେ ବ୍ରହ୍ମଜ୍ଞାନ ତାହା ମଧ୍ୟ ଫଳ ଦାୟକ ହୁଏ ନାହିଁ । ଫଳ ପାଇବା ଆଶାରେ ଯେଉଁ ସବୁ କର୍ମ କରାଯାଏ ସେ ସବୁ ଦୁଃଖର କାରଣ । ଫଳର ଆଶା ନରଖି ଯେଉଁ କର୍ମ କରାଯାଏ ତାହା ଯେବେ ଭଗବାନଙ୍କ ଠାରେ ଅର୍ପଣ କରାନଯାଏ ତାହା ଫଳଦାୟକ ହୁଏ ନାହିଁ ।

ଶ୍ରୀଧର ସ୍ୱାମୀ ଯଦ୍ୟପି ଶଙ୍କରପନ୍ଥୀ କେବଳାଦ୍ୱୈତ ମତବାଦୀ ଏକଦଣ୍ଡୀ ସନ୍ନ୍ୟାସୀ ଥିଲେ ସେ ଏହି ମତକୁ ଖଣ୍ଡନ କରି ଶୁଦ୍ଧାଦ୍ୱୈତବାଦ ରୂପ ଦେବାକୁ

ବିଶେଷ ଯତ୍ନ କରିଛନ୍ତି । ଏହା ତାଙ୍କ କୃତ ବିଷ୍ଣୁପୁରାଣରୁ ଜଣାଯାଏ । ସେ ମାୟାବାଦୀ ନଥିଲେ । ସେ ଶ୍ରୀକୃଷ୍ଣଙ୍କୁ ବ୍ରହ୍ମର ପ୍ରତିଷ୍ଠା ବା ଘନୀଭୂତ ବ୍ରହ୍ମ ବୋଲି କହି ଅଛନ୍ତି ସୂର୍ଯ୍ୟମଣ୍ଡଳ ଯେପରି ଘନୀଭୂତ ପ୍ରକାଶ ଠିକ୍ ସେହିପରି କେବଳା ଦ୍ୱୈତ ବାଦୀଗଣ ଶ୍ରୀବିଗ୍ରହ । ନାମ, ରୂପଗୁଣ, ବିଭୂତି ଧାମ ସ୍ୱୀକାର ନ କଲେ ମଧ୍ୟ ଶ୍ରୀଧର ସ୍ୱାମୀ ସ୍ୱୀକାର କରିଯାଇଛନ୍ତି । ଶ୍ରୀଧର ସ୍ୱାମୀ ପୁରୀର ଗୋବର୍ଦ୍ଧନ ମଠରେ କିଛି କାଳ ମଠାଧୀଶ ରୂପେ ନିଯୁକ୍ତ ହୋଇଥିଲେ, ସେ ବ୍ରହ୍ମଚାରୀ ଥିଲେ । କେବଳ ବ୍ରହ୍ମଚାରୀ ମାନେ ହିଁ ଶଙ୍କର ପ୍ରତିଷ୍ଠିତ ମଠମାନଙ୍କରେ ମହନ୍ତ ରୂପେ ରହି ପାରନ୍ତି । ଏଥିରୁ ବୁଝାଯାଏ ଯେ ସେ ବିବାହ କରି ନଥିଲେ କି ତାଙ୍କର ପୁତ୍ର ନଥିଲା ।

ଶ୍ରୀଧର ଅଦ୍ୱୈତ ପରମ୍ପରାର ଶିଷ୍ୟଥିଲେ ମଧ୍ୟ ସେ ପରମ ବୈଷ୍ଣବ ଥିଲେ । ମାୟାବାଦୀ ନଥିଲେ । ତାଙ୍କର ଗୀତା ବାଖ୍ୟା ଓ ଭାଗବତ ବାଖ୍ୟାରେ ଶ୍ରୀ ଚୈତନ୍ୟ ମୁଗ୍ଧ ହୋଇ ତାଙ୍କୁ ଗୁରୁରୂପରେ ସନ୍‌ମାନ ଦେଇଯାଇଛନ୍ତି । ଉଦାହରଣ ସ୍ୱରୂପ ଥରେ ପୁରୀରେ ଶ୍ରୀ ଚୈତନ୍ୟ ଅବସ୍ଥାନ କରୁଥିବା ବେଳେ ଶ୍ରୀ ବଲ୍ଲଭଚାର୍ଯ୍ୟ ତାଙ୍କୁ ଆସି ସାକ୍ଷାତ କଲେ ଏବଂ ନିଜେ ରଚନା କରିଥିବା ଶ୍ରୀମଦ୍ ଭଗବତ ଟୀକା ତାଙ୍କୁ ଦେଖାଇ ପଢ଼ିବା ପାଇଁ କହିଲେ, ଚୈତନ୍ୟ କହିଲେ ଏହା ଶ୍ରୀଧରକୃତ ଟୀକାଠାରୁ ଅଧିକ ଉତ୍କୃଷ୍ଟ ଟୀକା ହୋଇ ନପାରେ । ଏହା ଶୁଣି ବଲ୍ଲଭାଚାର୍ଯ୍ୟ ଗର୍ବଭାବ ଦେଖାଇ କହିଲେ "ମୁଁ ଶ୍ରୀଧର ସ୍ୱାମୀଙ୍କ ଭାଷ୍ୟକୁ ଖଣ୍ଡନ କରିଛି । କାରଣ ତାଙ୍କର ଭାଷ୍ୟ ସବୁସ୍ଥଳରେ ନିର୍ଭୁଲ ନୁହେଁ । ଏଥିପାଇଁ ମୁଁ ଏହାକୁ ମାନିବାକୁ ଚାହେଁନା ।

"ପ୍ରଭୁ ହାସି ସ୍ୱାମୀ ନା ମାନେ ଯେଇ ଜନ, ବେଶ୍ୟାରେ ଭିତରେ ତାରେ କରିନୟ ଗନନ୍" (ଚୈତ ୭ମପ)

ଶ୍ରୀ ଚୈତନ୍ୟ ହସି ହସି ଉତ୍ତର ଦେଲେ ଶ୍ରୀଧର ସ୍ୱାମୀଙ୍କୁ ଯିଏ ନ ମାନେ ସେ ବେଶ୍ୟା ମଧ୍ୟରେ ଗଣ୍ୟହୁଏ ।

ଶ୍ରୀ ଗୌରାଙ୍ଗ ଶ୍ରୀଧର ସ୍ୱାମୀ ପାଦଙ୍କୁ ସ୍ୱାମୀ, ଜଗଦ୍‌ଗୁରୁ ଆଖ୍ୟା ଦେବା ଓ ଶ୍ରୀଧର ସ୍ୱାମୀ ପ୍ରାସାଦେତେ ଭାଗବତ ଜାନି ଇତ୍ୟାଦି ବାକ୍ୟ ପ୍ରୟୋଗ କରି ତାଙ୍କର ଉଚ୍ଚ ପ୍ରଶଂସା କରିବାର ମୂଳରେ ରହିଛି ଶ୍ରୀଧରଙ୍କର ଭାବାର୍ଥ ଦୀପିକାରେ ଶ୍ରୀମଦ୍ ଭଗବତର ତତ୍ତ୍ୱ ଜ୍ଞାନ ଯାହାକି ଶ୍ରୀ ଚୈତନ୍ୟଙ୍କ ଉପରେ ଯଥେଷ୍ଟ ପ୍ରଭାବ ପକାଇଥିଲା । ଭାବାର୍ଥ ଦୀପିକାରେ ଅଛି

"ନରବପୁଃ ପ୍ରତିପଦ୍ୟ ଯଦ ତ୍ୱୟି ଶବଣ ବର୍ଣ୍ଣନ :

[illegible] ଧ୍ୱନି ବନ୍ଧୁ କସିତଂ

ବିଫଳଂ ତତଃ ଯେ ନରହରେ । ଜୀବଗଣ ମନୁଷ୍ୟ ଦେହଲାଭ କରି ଶ୍ରବଣ କୀର୍ତ୍ତନ ଦ୍ୱାରା ଯଦି ତୁମ୍ଭର ଭଜନ ନ କରନ୍ତି ତାହା ହେଲେ ଜୀବନ ଧାରଣ ନିଷ୍ଫଳ । ଅନ୍ୟତ୍ର ଅବଗମଂ ତବମେ ଦିଶ ମାଧବ ସ୍ଫୁରିତ ନନ୍ନୁ ଖୁଖାସୁଖ ସଙ୍ଗମଃ । ଅର୍ଥାତ୍ ସେଇ ମାଧବ ତୁମ୍ଭେ ମତେ ତୁମ୍ଭର ତତ୍ତ୍ୱଜ୍ଞାନ ଦାନ କର । ଯଦ୍ୱାରା ଆଉ ସୁଖ ଦୁଃଖର ସମ୍ବନ୍ଧ ନଥିବ । ଅଥବା ଶ୍ରବଣ କୀର୍ତ୍ତନ ଅଧିକାର ଦାନ କର ଯଦ୍ୱାରା ମୁଁ ଆଉ ବିଧି ନିଷେଧର ଦାସ ନ ହୁଏ ।

କେତେକ ଶାସ୍ତ୍ରକାରଙ୍କ ମତରେ ଶ୍ରୀକୃଷ୍ଣ ଜରା ଶବର ଦ୍ୱାରା ବାଣବିଦ୍ଧ ହୋଇ ଦେହ ତ୍ୟାଗ କଲେ, ତାଙ୍କର କଳେବରକୁ ଅଗ୍ନିରେ ଦଗ୍ଧ କରାଯାଉଥିଲା, କିନ୍ତୁ ଶ୍ରୀଧର ସ୍ୱାମୀ ଏହାକୁ ଖଣ୍ଡନ କରି ଦର୍ଶାଇଛନ୍ତି ଭଗବାନ ଶ୍ରୀକୃଷ୍ଣ ସ୍ୱଶରୀରରେ ସ୍ୱୀୟ ଧାମକୁ ଚାଲିଗଲେ ଯୋଗୀ ମାନଙ୍କ ପରି ସେ ନିଜ ଦେହକୁ ଯୋଗାଗ୍ନିରେ ଦାହ କରି ନଥିଲେ । ସେ ସର୍ବାଶ୍ରୟ । ନିଜ ଦେହକୁ ଦାହ କରି ନଥିଲେ ସମଗ୍ର ବିଶ୍ୱ ଦଗ୍ଧୀଭୂତ ହୋଇ ଯିବାର ସମ୍ଭାବନା ଥିଲା । ଶୁକ ଦେବଙ୍କ ମତ ମଧ୍ୟ ଏହାଙ୍କ ମତ ସହିତ ମେଳ ହୁଏ । ଭଗବାନଙ୍କ ଦେହ ଦଗ୍ଧ ହୋଇ ପାରେନା । ସେ ବ୍ରହ୍ମାଦି ଦେବତା ମାନଙ୍କ ଅଲକ୍ଷ୍ୟରେ ସ୍ୱଶରୀରରେ ଅନ୍ତର୍ହିତ ହୋଇଗଲେ,

ପରମ ବୈଷ୍ଣବାନାଂ ଶ୍ରୀଧର ସ୍ୱାମୀ ଚରଣାନାଂ ନମଃ

- ସହାୟକ ଗ୍ରନ୍ଥ -

(୧) ଶ୍ରୀ କୃଷ୍ଣଦାସ କବିରାଜ କୃତ ଶ୍ରୀ ଚୈତନ୍ୟ ଚରିତାମୃତ (ବଙ୍ଗଳା)

(୨) ଶ୍ରୀମତ୍ ସୁନ୍ଦରାନନ୍ଦ ଦାସ କୃତ ବିରଚିତ ଅଚିନ୍ତ୍ୟ ଭେଦା ଭେଦ ବାଦ

(୩) ଶମ୍ଭୁକ୍ଷେତ୍ର କପିଳାସ ଓ ଶ୍ରୀଧର ସ୍ୱାମୀ (ଓଡିଆ)

(୪) ବାବା ସେବାନନ୍ଦ କୃତ ଉତ୍କଳ ରତ୍ନ ସଂଗ୍ରହ (ହିନ୍ଦୀ)

(୫) ଅନ୍ୟାନ୍ୟ ପତ୍ରିକା

•••

# ଶ୍ରୀଧର ସ୍ୱାମୀପାଦଙ୍କ ଶୁଦ୍ଧାଦ୍ୱୈତବାଦ

*ଡଃ ସତ୍ୟରଂଜନ ଦାସ*

ଉପକ୍ରମଣିକା -

ଧର୍ମ କହିଲେ ମାନବ ଧର୍ମକୁ ହିଁ ବୁଝାଯାଏ । ମଣିଷ ସୃଷ୍ଟିର ଶ୍ରେଷ୍ଠ ପ୍ରାଣୀ ହେତୁ ତାର ଦାୟିତ୍ୱ ଅନ୍ୟ ପ୍ରାଣୀଗଣଙ୍କର ସୁରକ୍ଷା କରିବା । ବେଦରେ ଏହି ନିର୍ଦ୍ଦେଶ ଅଛି । ସନାତନ ଧର୍ମ ସର୍ବପ୍ରଥମେ ଭାରତର ଅସଂଖ୍ୟ ମୁନିଋଷିଗଣଙ୍କ ଦ୍ୱାରା ଉପଲବ୍ଧି ହୋଇଥିଲା । ସେଇ ଉପଲବ୍ଧି ଗୁଡିକ ବେଦ ନାମରେ ଅଭିହିତ ହୁଏ । ବେଦର ଅର୍ଥ ଜ୍ଞାନ । ଏହା ଅପୌରେଷିୟ । ଅର୍ଥାତ୍ ଏହାକୁ କେହି ଲେଖି ନାହିଁ । ବ୍ୟାସଦେବ ବେଦକୁ ଚାରି ଭାଗରେ ବିଭକ୍ତ କରିଗଲେ । ପୁଣି ତାକୁ ସଂକ୍ଷିପ୍ତ କରି 'ବ୍ରହ୍ମସୂତ୍ର' ରଚନା କରିଥିଲେ । ଉପନିଷଦ୍ ଗୁଡିକ ବେଦର ଜ୍ଞାନ କାଣ୍ଡର ନିର୍ଯ୍ୟାସ । ସବୁ ଉପନିଷଦର ନିର୍ଯ୍ୟାସ ହେଉଛି ଗୀତା ।

ସନାତନ ଧର୍ମ ବା ହିନ୍ଦୁ ଧର୍ମ ବା ମାନବ ଧର୍ମ ଗୋଟିଏ । କିନ୍ତୁ ଏହାର ସଂପ୍ରଦାୟ ଅନେକ । ବ୍ୟକ୍ତି ବିଶେଷର ମତବାଦକୁ ସଂପ୍ରଦାୟ ବୋଲି କୁହାଯାଏ । ଏହା ବେଦ ଉପରେ ଆଧାରିତ । ଖ୍ରୀଷ୍ଟ ଧର୍ମ, ମୁସଲମାନ ଧର୍ମ ଆଦି ସଂପ୍ରଦାୟ ମାତ୍ର । ଏଗୁଡିକ ବ୍ୟକ୍ତିକୈନ୍ଦ୍ରିକ ।

ବେଦ କ୍ରମଶଃ ଦ୍ୱୈତରୁ, ବିଶିଷ୍ଟାଦ୍ୱୈତ ଓ ଅଦ୍ୱୈତ ସିଦ୍ଧାନ୍ତରେ ଉପନୀତ ହୋଇଛି । ଅଦ୍ୱୈତ ସିଦ୍ଧାନ୍ତ ହିଁ ଧର୍ମର ସମଗ୍ର ପୁଷ୍ପବାଟିକାର ସର୍ବଶ୍ରେଷ୍ଠ ପୁଷ୍ପ ଓ ମାନବ ସମାଜକୁ ଅବଦାନ । ଏହା ବିଜ୍ଞାନ ସମ୍ମତ । ବେଦାନ୍ତ ଦର୍ଶନ କାହାକୁ ବିରୋଧ କରେ ନାହିଁ ।

ପ୍ରତ୍ୟେକ ତଥାକଥିତ ଧର୍ମ (ସଂପ୍ରଦାୟ)ରେ ତିନୋଟି ବସ୍ତୁ ରହିଛି । ତାହାହେଲା - କେନ୍ଦ୍ରୀୟ ଦର୍ଶନ, କର୍ମକାଣ୍ଡ ଓ ପୌରାଣିକ ଗଳ୍ପ ସମୂହ । ଯେଉଁଥିରେ ନିର୍ଦ୍ଦିଷ୍ଟ ବ୍ୟକ୍ତି ବିଶେଷଙ୍କର ଅଲୌକିକ କାର୍ଯ୍ୟାବଳୀ ଓ ଜୀବନୀ ବର୍ଣ୍ଣିତ ହୋଇଥାଏ । ଦର୍ଶନଟି ବେଦ ଉପରେ ଆଧାରିତ । ଅନେକ ଉନ୍ନତ ବ୍ୟକ୍ତି ବିଶେଷ ବେଦକୁ ରୋମନ୍ଥନ କରି ଗୋଟିଏ ଗୋଟିଏ ଦର୍ଶନ ଉଦ୍ଭାବନ କରି ସଂପ୍ରଦାୟ ସୃଷ୍ଟି କରନ୍ତି । ବେଦାନ୍ତ ଦର୍ଶନ ଏଗୁଡିକର ବିରୋଧ କରେ ନାହିଁ, ବରଂ ବେଦାନ୍ତ ଦର୍ଶନରେ ଗୋଟିଏ ଗୋଟିଏ ସୋପାନ ବୋଲି କହେ ।

ଭାରତରେ ଶୈବ, ଶାକ୍ତ, ଗାଣପତ୍ୟ, ବୈଷ୍ଣବ ଇତ୍ୟାଦି ଅନେକ ସଂପ୍ରଦାୟ ରହିଛି । ତନ୍ମଧ୍ୟରୁ ବୈଷ୍ଣବ ସଂପ୍ରଦାୟ ଉପରେ ସମ୍ୟକ ଆଲୋଚନା କରାଯାଉଛି ।

ବୈଷ୍ଣବ ସଂପ୍ରଦାୟ ଚାରିଭାଗରେ ବିଭକ୍ତ । ଶ୍ରୀ, ରୁଦ୍ର, ସନକ ଓ ବ୍ରହ୍ମ ସଂପ୍ରଦାୟ (ବିଷ୍ଣୁପୁରାଣ ବେଦକୁ ନେଇ ଦ୍ୱୈତ, ବିଶିଷ୍ଟ ଦ୍ୱୈତ, ଶୁଦ୍ଧା ଦ୍ୱୈତ, ଅଚିନ୍ତ୍ୟ ଭେଦାଭେଦ ଇତ୍ୟାଦି ଦର୍ଶନ ମାନ ସୃଷ୍ଟ ହୋଇ ବୈଷ୍ଣବ ସଂପ୍ରଦାୟ ଭୁକ୍ତ ହୋଇଛି । ବିଭିନ୍ନ ବୈଷ୍ଣବାଚାର୍ଯ୍ୟଗଣ ଏହାର ପ୍ରବର୍ତ୍ତକ ଅଟନ୍ତି । ବେଦର ଅନ୍ତିମ ସିଦ୍ଧାନ୍ତ ବେଦାନ୍ତ ଦର୍ଶନ । )

ଶଙ୍କରାଚାର୍ଯ୍ୟ ଲୁପ୍ତ ପ୍ରାୟ ଅଦ୍ୱୈତ ଦର୍ଶନ (ବେଦାନ୍ତ ଦର୍ଶନ) ପ୍ରତିଷ୍ଠା କଲାପରେ ଦ୍ୱୈତବାଦୀଗଣ ନିଜକୁ ସେହିପରି ବେଦ ସହିତ ସମସ୍ତରକୁ ଆଣିବାକୁ ଚେଷ୍ଟା କରିଥିଲେ । ସର୍ବଶେଷରେ ବୈଷ୍ଣବ ସଂପ୍ରଦାୟ (ଗୌଡୀୟ) ଅଚିନ୍ତ୍ୟ ଭେଦାଭେଦ ଦର୍ଶନ କରିଛନ୍ତି ।

ଚାରି ବେଦ ଚାରିଟି ମହାବାକ୍ୟ ପ୍ରଚାର କରିଛନ୍ତି, ଯଥା - ତତ୍ତ୍ୱମସି, ପ୍ରଜ୍ଞାନଂବ୍ରହ୍ମ, ଅହଂବ୍ରହ୍ମାସି, ଅୟମାତ୍ମା ବ୍ରହ୍ମ । ଏହି ସତ୍ୟ ହେଉଛି ଜୀବ ଓ ବ୍ରହ୍ମ ସ୍ୱରୂପ ଅଭେଦ । ପ୍ରମାଣ ନିମନ୍ତେ ମୁଖ୍ୟତଃ ତିନୋଟି ବସ୍ତୁ ଆବଶ୍ୟକ । ତାହାହେଲା - ପ୍ରତ୍ୟକ୍ଷ, ଅନୁମାନ, ଆପ୍ତବାକ୍ୟ ବା ବେଦ, ଶ୍ରୁତି, ଉପନିଷଦରେ ଯାହା ଅଛି । ଶଙ୍କରାଚାର୍ଯ୍ୟଙ୍କ ଶବ୍ଦ ପ୍ରବଳ ବଳରେ ବେଦର ଉକ୍ତ ସତ୍ୟକୁ ପ୍ରତିଷ୍ଠା କରିଗଲେ ।

ଶଙ୍କରାଚାର୍ଯ୍ୟଙ୍କର ଅଦ୍ୱୈତବାଦକୁ କେବଳାଦ୍ୱୈତବାଦ, ବିବର୍ତ୍ତନବାଦ, ମାୟାବାଦ, ନିର୍ବିଶେଷ, ବସ୍ତ୍ୱୈକ ବାଦ ବୋଲି କୁହାଯାଏ । ଅଦ୍ୱୈତ ବା କେବଳା ଦ୍ୱୈତବାଦ - ଶଙ୍କରଙ୍କ ମତ ହେଉଛି - ବ୍ରହ୍ମ ହିଁ ଏକମାତ୍ର ସତ୍ୟ ବା ଅଦ୍ୱିତୀୟ ବସ୍ତୁ । ଜୀବ ଓ ଜଗତ ବ୍ରହ୍ମଙ୍କର ବିବର୍ତ୍ତନ ମାତ୍ର । ରଜ୍ଜୁରୁ କଳ୍ପିତ ସର୍ପ ଜ୍ଞାନ ଓ ଜ୍ଞାନଲାଭ ଉପରେ ସର୍ପଜ୍ଞାନର ବିଲୟ ପରି ଏ ଜୀବ ଜଗତ ସୃଷ୍ଟା ସେ କହନ୍ତି -

"ଶ୍ଳୋକାର୍ଦ୍ଧେନ ପ୍ରବକ୍ଷାମି ଯଦୁକ୍ତଂ ଗ୍ରନ୍ଥ କୋଟିଭିଃ
ବ୍ରହ୍ମ ସତ୍ୟ ଜଗତ୍ ମିଥ୍ୟା ଜୀବ ବ୍ରହ୍ମୈବ ନା ପର ।"

ଅର୍ଥାତ୍ କୋଟିଏ ଗ୍ରନ୍ଥ ଯାହା କହିଛନ୍ତି ମୁଁ ତାହା ଅର୍ଦ୍ଧେକ ଶ୍ଳୋକରେ ପ୍ରକାଶ କରି କହୁଛି ବ୍ରହ୍ମସତ୍ୟ ଓ ଜଗତ ମିଥ୍ୟା ଅଟେ । ପାରମାର୍ଥିକ ଭାବେ ବ୍ରହ୍ମ ନିର୍ଗୁଣ, ନିଷ୍କ୍ରିୟ, ନିର୍ବିକାର, କେବଳ ସଚ୍ଚିଦାନନ୍ଦ ବ୍ରହ୍ମହିଁ ପରତତ୍ତ୍ୱ । (ଶା. ଭା. ୧।୧।୧,୨୪) । ବ୍ୟାବହାରିକ ସ୍ତରରେ ସଗୁଣ ବ୍ରହ୍ମ ବା ଈଶ୍ୱର ଉପାସ୍ୟ । ସେ ସର୍ବଜ୍ଞ, ଶକ୍ତିମାନ ଓ ସର୍ବବ୍ୟାପକ । ଜୀବ ଅନେକ । ଗୀତାରେ ମଧ

କୁହାଯାଇଛି ବ୍ରହ୍ମ ନ ସତ୍ ନ ଅସତ୍ ଉଚ୍ୟତେ । ସେ ସବସତ ପରମ୍ । ଅର୍ଥାତ୍ ସେ ସତ୍ ଓ ଅସତ୍‌ର ଉର୍ଦ୍ଧ୍ୱରେ ।

ତାଙ୍କର ଇଷ୍ଟ ହେଉଛନ୍ତି ଆତ୍ମଲିଙ୍ଗ (ନିର୍ଗୁଣ ମାନସ ପୂଜା) ଗୀତା ମଧ ନିର୍ଗୁଣ ପୂଜାକୁ ସ୍ୱୀକାର କରନ୍ତି । କିନ୍ତୁ ଏହା କ୍ଳେଶକର । ତାଙ୍କର ଶାସ୍ତ୍ରୀୟ ପ୍ରମାଣ ହେଉଛି ପ୍ରତ୍ୟକ୍ଷ, ଅନୁମାନ, ଉପମାନ, ଶବ୍ଦ ଅର୍ଥାପତ୍ତି ଓ ଅନୁପଲବ୍ଧି । ଏଇ ଛଅଟି ପ୍ରମାଣ । ତନ୍ମଧରୁ ଶବ୍ଦ ପ୍ରମାଣ ପ୍ରବଳ (ସୂ.ଭା. ୧-୧-୨)

ପ୍ରାମାଣିକ ଗ୍ରନ୍ଥ - ଶ୍ରୁତି (ଉପନିଷଦ୍) ବ୍ରହ୍ମସୂତ୍ର, ଗୀତା, ବିଷ୍ଣୁ ସହସ୍ର ନାମ । ତାଙ୍କ ମତରେ ଶ୍ରୁତିହିଁ ସର୍ବଶ୍ରେଷ୍ଠ ପ୍ରମାଣ । ତାଙ୍କ ବ୍ରହ୍ମସୂତ୍ର ଭାଷ୍ୟର ନାମ "ଶାରୀରିକ ଭାଷ୍ୟ" । ଶଙ୍କର ଭାଷ୍ୟ ନାମରେ ବିଖ୍ୟାତ୍ । ବ୍ରହ୍ମତତ୍ତ୍ୱ ବିଷୟରେ ସେ କହନ୍ତି ବ୍ରହ୍ମ, ଶୁଦ୍ଧ ଜ୍ଞାନ ମାତ୍ର । ଶକ୍ତି ତତ୍ତ୍ୱ ସମ୍ବନ୍ଧରେ ତାଙ୍କର ମତ ସଗୁଣ ବ୍ରହ୍ମହିଁ ଅଚିନ୍ତ୍ୟ ଅନନ୍ତ ଶକ୍ତିଗତ । ମାୟା ଜଗତର ଜୀବଶକ୍ତି (ସୂ.ଭ. ୩।୧।୨୪,୧-୪-୩) ତାଙ୍କ ମତରେ ମାୟା ଅନିର୍ବଚନୀୟ (ଯଦିଓ ମାୟାର ଅର୍ଥ Statement of facts as it is (as) you see around) । ଅସତ୍ ନୁହେଁ କାରଣ ଅନୁଭୂତ ହୁଏ । ସତ୍ ମଧ ନୁହେଁ । କାରଣ ଜ୍ଞାନ ଦ୍ୱାରା ଏହା ଅସତ୍ ବୋଲି ଜଣାଯାଏ । ମାୟା ଜଗତର ଜୀବଶକ୍ତି, ପରମେଶ୍ୱର କ୍ରିୟା (ସୂ.ଭା. ୧।୪।୩,୨।୧।୧୪) ଜୀବ ଓ ଆତ୍ମା ବିଷୟରେ ତାଙ୍କର ମତ ପରମାର୍ଥିକ ଦୃଷ୍ଟିରୁ ଜୀବର ଅସ୍ତିତ୍ୱ ନାହିଁ । ବ୍ୟାବହାରିକ ଦୃଷ୍ଟିରୁ ଜୀବ ବ୍ରହ୍ମଙ୍କ ଠାରୁ ଭିନ୍ନ ଜ୍ଞାତା, କର୍ତ୍ତା, ଭୋକ୍ତା । ପରିଛିନ୍ନ, ଅସଂଖ୍ୟ ପାରମାର୍ଥିକ ସ୍ତରରେ, ନିର୍ଗୁଣ ନିରାକାର, ବିଭୁ (ସୂ.ଭା. ୨।୩।୧୨) । ଗୀତା ମଧ କହନ୍ତି "ଅଭିବକ୍ତଂ ଚ ଭୂତେଷୁ ବିଭକ୍ତମିବ ସ୍ଥିତଂ", ଅର୍ଥାତ୍ ମୁଁ ଅଭିଭକ୍ତ ହେଲେ ମଧ ଆତ୍ମା ରୂପରେ ଅନେକ ବିଭକ୍ତି ଭଳି ପ୍ରତୀୟମାନ ହୁଏ । ବାସ୍ତବରେ ମୁଁ ଖଣ୍ଡିତ ନୁହେଁ ।

ତତ୍ତ୍ୱମସି ସମ୍ବନ୍ଧରେ ତାଙ୍କର ମତ ହେଉଛି - ତତ୍ -ଈଶ୍ୱର - ଦମ୍ - ଜୀବ, ନିର୍ବିଶେଷ ନିର୍ଗୁଣ ପରଂବ୍ରହ୍ମ । ଅତଏବ ଜୀବ ଓ ବ୍ରହ୍ମର ଐକ୍ୟ ।(ଶଙ୍କରକୃତ ତତ୍ତ୍ୱ ଉପଦେଶ)

ଶ୍ରୁତି, ବେଦ ସମୂହ ଶଙ୍କରଙ୍କ ସପକ୍ଷରେ ଯାଏ । କିନ୍ତୁ କେବଳ ଅଦ୍ୱୈତବାଦ ବାସ୍ତବିକ ଜୀବନରେ ସମ୍ଭବ ନୁହେଁ । ଏହା ବିବେକାନନ୍ଦଙ୍କ ମତ । ରାମାନୁଜଙ୍କ ବିଶିଷ୍ଟାଦ୍ୱୈତବାଦ ଆବଶ୍ୟକ ।

**ଶୁଦ୍ଧାଦ୍ୱୈତବାଦ -**

ଏହାକୁ ବାସ୍ତବ ବର୍ସ୍ତ୍ରୈକ୍ୟବାଦ ମଧ କୁହାଯାଏ । ଶ୍ରୀଧରସ୍ୱାମୀ ପାଦ ପ୍ରଥମେ ଅଦ୍ୱୈତବାଦୀ ବା ଶଙ୍କର ପନ୍ଥୀ ଥିଲେ । ତାଙ୍କ

ସମ୍ବନ୍ଧରେ ଅନେକ କିମ୍ବଦନ୍ତୀ ଅଛି । ସେଗୁଡିକୁ ଏଠାରେ ଆଲୋଚନା କରିବା ସମ୍ଭବ ନୁହେଁ । ତାଙ୍କର ଗୁରୁ ହେଉଛନ୍ତି ପରମାନନ୍ଦ ସ୍ୱାମୀ ଓ ସେ ନୃସିଂହ ମନ୍ତ୍ରରେ ଦୀକ୍ଷିତ ହୋଇଥିଲେ ।

ସେ କେବଳାଦ୍ୱୈତବାଦ ସଂପ୍ରଦାୟର ଅଶୁଦ୍ଧ ଅଦ୍ୱୈତବାଦର ଶୁଦ୍ଧ ବିଧାନ କରିଛନ୍ତି । ସେଥିପାଇଁ ତାଙ୍କୁ ଶୁଦ୍ଧାଦ୍ୱୈତବାଦୀ ବୋଲି କୁହାଯାଏ ।

କେବଳାଦ୍ୱୈତ ବାଦ ସହିତ ତାଙ୍କର ମତ ପାର୍ଥକ୍ୟ -

୧) ଶ୍ରୀକୃଷ୍ଣ ତତ୍ତ୍ୱ ବ୍ରହ୍ମଙ୍କ ଆଶ୍ରୟ ବା ଘନୀଭୂତ ବ୍ରହ୍ମ ବୋଲି ମାୟାବାଦୀ ବା କେବଳାଦ୍ୱୈତବାଦୀଗଣ ସ୍ୱୀକାର କରନ୍ତି ନାହିଁ । କିନ୍ତୁ ଶ୍ରୀଧର ସ୍ୱାମୀ ସ୍ୱୀକାର କରନ୍ତି । (ଗୀତା ୧୪।୨୭ ଶ୍ଳୋକ ୨ - ସୁବୋଧିନୀ ଟୀକା)

୨) ସେ ଭଗବତ୍ ବିଗ୍ରହ, ଯମ, ରୂପ, ଗୁଣ, ବିଭୂତି, ଧର୍ମକୁ ସ୍ୱୀକାର କରନ୍ତି । କାରଣ ଏହା କେବଳାଦ୍ୱୈତ ସିଦ୍ଧାନ୍ତର ସୋପାନ ମାତ୍ର ।

ଜୀବନର ଲକ୍ଷ୍ୟ ହେଉଛି ଭଗବତ୍ ପ୍ରାପ୍ତି ବା "Each Soul is potentially devine. The God is to express its divinity by controlling nature internal and external. Books, Symbols, rituals are secondary details only." (ବିବେକାନନ୍ଦ)

୩) ଉପାଧିଯୁକ୍ତ ବ୍ରହ୍ମ ହିଁ ଈଶ୍ୱର ବୋଲି ମାୟାବାଦୀଗଣ କହନ୍ତି । ପାରମାର୍ଥିକ ଦୃଷ୍ଟିରୁ ସେ ମାୟା ମାତ୍ର; ମାତ୍ର ଶ୍ରୀଧର ସ୍ୱାମୀ ତାଙ୍କର ସୁବୋଧିନୀ ଟୀକା ଗୀତାର (୧୪।୨୭)କୁ ଉଦ୍ଧାର କରି ତାହା ଖଣ୍ଡନ କରି ତାଙ୍କୁ ଜ୍ଞାନ, ଜ୍ଞାତା ଓ ସମସ୍ତ କଲ୍ୟାଣ ଗୁଣର ବିଷୟ ବୋଲି କହିଛନ୍ତି ।

୪) ମାୟାକୁ ଅନିର୍ବଚନୀୟ ନ କହି ଶ୍ରୀଧର ମାୟାକୁ ପରମେଶ୍ୱରଙ୍କ ଶକ୍ତି, ସତ୍ତ୍ୱାନିର୍ଗୁଣ, ବିକାରତ୍ମିକା ବୋଲି କହିଛନ୍ତି । ବ୍ରହ୍ମଙ୍କ ସ୍ୱରୂପ ଶକ୍ତିର ଅସ୍ତିତ୍ୱ ସ୍ୱୀକାର କରିଛନ୍ତି । ଆଚାର୍ଯ୍ୟ ଶଙ୍କର ତାଙ୍କର ବ୍ରହ୍ମସୂତ୍ର ଭାଷ୍ୟର (୧।୧।୧) ବ୍ରହ୍ମଶବ୍ଦର ଅର୍ଥ ନିରୂପଣ କରି କହିଛନ୍ତି - ''ଅସ୍ତି ତାବନ୍ନିତ୍ୟ ଶୁଦ୍ଧ ବୁଦ୍ଧ ମୁକ୍ତ ସ୍ୱଭାବଂ ସର୍ବଜ୍ଞଂ ସର୍ବଶକ୍ତି ସମନ୍ୱିତଂ'' ବ୍ରହ୍ମ ଶଙ୍କର ମଧ ଏହା କହିଛନ୍ତି - (ଅଚିନ୍ତ୍ୟ ଭେଦାଭେଦ) ଶ୍ରୁତି ମଧ କହନ୍ତି ''ମାୟାତୁ ପ୍ରକୃତିଂ ବିଦ୍ୟାନ୍ ମାୟିନଂ ତୁ ମହେଶ୍ୱରମ୍ '' । (ଶ୍ଳୋକ-୬।୮) ଜଗତକୁ ଶ୍ରୀଧର ସ୍ୱାମୀ ପାଦ ଅସତ୍ ବୋଲି କହିଛନ୍ତି, ତେଣୁ ବଲ୍ଲଭାଚାର୍ଯ୍ୟ ତାଙ୍କୁ ଅସ୍ୱୀକାର କରିଛନ୍ତି)ମୁକ୍ତି ପରେ ଭକ୍ତିର ନିତ୍ୟତା ସ୍ୱୀକାର କରନ୍ତି । (ଶ୍ରୀଧର ସ୍ୱାମୀ)

୫) ଜଗତ ସମ୍ବନ୍ଧରେ ତାଙ୍କରମତ ହେଉଛି - ଏହା ପରମବ୍ରହ୍ମଙ୍କ ଠାରୁ ଜାତ ହେଲେ ମଧ ସତ୍ ନୁହେଁ । ରଜ୍ଜୁରେ ଆରୋପିତ ଭ୍ରାନ୍ତ ସର୍ପ ଭୟାଦି ଉତ୍ପାଦନ ରୂପ କାର୍ଯ୍ୟ ସଂପାଦନ କଲେ ମଧ ତାହା ସତ୍ୟ ନୁହେଁ । ଆଉ ବେଦ ଦୈବ

ପ୍ରତିପାଦକ ନୁହେଁ ।
୬) ଜୀବ ସମ୍ବନ୍ଧରେ ତାଙ୍କର ମତ ହେଉଛି - ଅବିଦ୍ୟାଯୁକ୍ତ ଜୀବ ପ୍ରଳୟ କାଳରେ ଈଶ୍ୱରଙ୍କ ପ୍ରକୃତିରେ ଲୀନ ହୁଏ । (ସୂକ୍ଷ୍ମ ଶରୀରରେ) ପୁଣି କଳ୍ପ ଆରମ୍ଭରେ (ନିମିତ୍ତ) କର୍ମଯୁକ୍ତ ଯୋଗୁ ସୃଷ୍ଟି ହୁଏ । ମୁକ୍ତ ଜୀବରେ ଆଉ ଆବର୍ତ୍ତନ ହୁଏ ନାହିଁ । ଅବିଦ୍ୟା ଅନେକ । ତେଣୁ ସମସ୍ତେ ଏକ ସଂଗେ ମୁକ୍ତି ପାଆନ୍ତି ନାହିଁ । ଜୀବ ମଧ୍ୟ ଅନେକ ।

ଜୀବ ଅଗ୍ନିର ସ୍ଫୁଲିଙ୍ଗ ପରି, ଈଶ୍ୱରଙ୍କ ଅଂଶ । (ଏହା ମଧ୍ୟ ଗୀତାର ମତ)''ମମୈବାଂଶୋ ଜୀବଲୋକ -------'' । ଯେଉଁ ସମୟରେ ମାୟା ସହିତ ଈଶ୍ୱରଙ୍କର ବିହାର ହୁଏ ସେତେବେଳେ ସ୍ଥାବର ଓ ଜଙ୍ଗମ ଜୀବଗଣଙ୍କର ଆବିର୍ଭାବ ହୁଏ ।

୭) ସେ ଅଚିନ୍ତ୍ୟ ଭେଦାଭେଦକୁ ପରୋକ୍ଷ ଭାବେ ସ୍ୱୀକାର କରିଛନ୍ତି । ସେ କହିଛନ୍ତି ବ୍ରହ୍ମତତ୍ତ୍ୱ ସ୍ଥାବର ଓ ଜଙ୍ଗମ ଭୂତସମୂହ ଅଭିବକ୍ତ କାରଣ ରୂପେ ଅଭିନ୍ନ କାର୍ଯ୍ୟ ରୂପେ ବିଭକ୍ତ । ଭିନ୍ନ ଭାବେ ପ୍ରକାଶିତ । ସମୁଦ୍ର ଜାତ ଫେଣ ସମୁଦ୍ର ଠାରୁ ଭିନ୍ନ ନୁହେଁ । ସେହିପରି ବୁଝିବାକୁ ପଡେ ।

୮) ବ୍ରହ୍ମତତ୍ତ୍ୱ ସମ୍ବନ୍ଧରେ ସେ କହନ୍ତି ଶ୍ରୀକୃଷ୍ଣ ବ୍ରହ୍ମରେ ମହତତ୍ତ୍ୱ ଅହଙ୍କାରରେ ଚୈତନ୍ୟ ପ୍ରଦାନ କରନ୍ତି ।

ତତ୍ତ୍ୱମସି -

ବ୍ୟାଖ୍ୟା କରି ଶ୍ରଧର ସ୍ୱାମୀ କହନ୍ତି, ତତ୍ ଅର୍ଥ - ବୃହତ୍ ଚୈତନ୍ୟ ତ୍ୱଂର ଅର୍ଥ ଅଣୁ ଚୈତନ୍ୟ ।

ବୃହତ୍ ଓ ଅଣୁ ଏହି ବିରୁଦ୍ଧାତ୍ମକ ଶବ୍ଦକୁ ଯୋଗ କଲେ ଚୈତନ୍ୟ ରହେ । ତେଣୁ ଚୈତନ୍ୟ ଭାବେ ଉଭୟ ସମାନ । ସେଥିପାଇଁ ନିର୍ଗୁଣ ବ୍ରହ୍ମ ହିଁ ବାକ୍ୟାର୍ଥର ପରିସମାପ୍ତି ଘଟାଏ ।

ଶକ୍ତିତତ୍ତ୍ୱ ; ଏହି ବିଷୟରେ ତାଙ୍କର ମତ - ଅଗ୍ନିର ଦାହିକା ଶକ୍ତି ବତ୍ ବ୍ରହ୍ମଙ୍କ ସ୍ୱଭାବ ସିଦ୍ଧ ଶକ୍ତି ସମୂହ ବର୍ତ୍ତମାନ । ବ୍ରହ୍ମଙ୍କର ଶକ୍ତି ହେଉଛି - ସ୍ୱାଭାବିକ ଶକ୍ତି - ଜ୍ଞାନ, ବଳ, କ୍ରିୟା, ସମ୍ବିତ୍ ବା ବିଦ୍ୟାଶକ୍ତି, ସନ୍ତପ ଶକ୍ତି, ହ୍ଲାଦିନୀ ବା ହ୍ଲାଦକାରୀ ଶକ୍ତି । ଶକ୍ତି ଏଇ ବିବିଧ ନାମରେ ଶ୍ରୁତ । (ବି.ଭୁ ୧।୩।୨, ୧।୧୨।୬୯) ୬୭ ବିଷ୍ଣୁଙ୍କ ସ୍ୱରୂପଭୂତା ଚିତ୍ ସ୍ୱରୂପା ଶକ୍ତି ପରାଶକ୍ତି ନାମରେ ଖ୍ୟାତ । କ୍ଷେତ୍ରଜ୍ଞ ସ୍ୱରୂପ, କ୍ଷେତ୍ରଜ୍ଞା ଶକ୍ତି ଏବଂ ବିଷ୍ଣୁଙ୍କ ଅବିଦ୍ୟା ଶକ୍ତିର କର୍ମ ସଜ୍ଞା ଦ୍ୱାରା ମାୟାଶକ୍ତି ଲକ୍ଷିତ ହୁଏ । କ୍ଷେତ୍ରଜ୍ଞା ଶକ୍ତି (ତଟସ୍ଥ ଜୀବଶକ୍ତି), ଅବିଦ୍ୟା (ମାୟା) ଶକ୍ତି ଦ୍ୱାରା ଭେଦ ପ୍ରାପ୍ତ ହୁଏ ଓ କର୍ମ ସମୂହ ଦ୍ୱାରା ସଂସାର ତାପ ଲାଭ କରେ ।

ତାଙ୍କର ପ୍ରୟୋଜନ ତତ୍ତ୍ୱ ହେଉଛି "ଶୁଦ୍ଧ ସ୍ୱରୂପ ପ୍ରାପ୍ତି, ପରତତ୍ତ୍ୱ, ଶ୍ରୀକୃଷ୍ଣ, ଶ୍ରୀମାଧବ, ଅଭିଦେୟ ତତ୍ତ୍ୱ, ଶ୍ରବଣ, କୀର୍ତ୍ତନ, ସ୍ମରଣାଦି ଶକ୍ତି। ଇଷ୍ଟ ନୃସିଂହ।" ଶାସ୍ତ୍ର ପ୍ରମାଣ - ଶବ୍ଦ, ଶାସ୍ତ୍ର, ସ୍ମୃତି. ବ୍ରହ୍ମସୂତ୍ର, ଶ୍ରୀଗୀତା, ଶ୍ରୀବିଷ୍ଣୁ ପୁରାଣ, ଶ୍ରୀମଦ୍ ଭାଗବତ, ନୃସିଂହ ପୁରାଣ।

ତାଙ୍କର ନିଜସ୍ୱ କୌଣସି ବ୍ରହ୍ମସୂତ୍ର ଭାଷ୍ୟ ନାହିଁ। ତାଙ୍କର ବ୍ରହ୍ମତତ୍ତ୍ୱ ବିଷୟରେ ଆଲୋଚିତ ହୋଇଛି। ଶଙ୍କରାଚାର୍ଯ୍ୟଙ୍କୁ ମାୟାବାଦୀ ବୋଲି ଆକ୍ଷେପ କରାଯାଏ। କିନ୍ତୁ ବାସ୍ତବିକ ମାୟାର ଅର୍ଥ ମିଥ୍ୟା ନୁହେଁ ବୋଲି ସେ କହିଛନ୍ତି। ମାୟାକୁ ଅନିର୍ବଚନୀୟ କହିଛନ୍ତି। ଯଦିଓ ମାୟାର ଅର୍ଥ ହେଉଛି ଆମ ଚତୁଃପାର୍ଶ୍ୱରେ ଘଟୁଥିବା ଘଟଣାବଳୀର ବର୍ଣ୍ଣନା ମାତ୍ର। ଏହା ସତ୍ ନୁହେଁ କି ଅସତ୍ୟ ନୁହେଁ, ଉଦାହରଣ ସ୍ୱରୂପ ଦେଶ, କାଳ, ନିମିତ୍ତ (Time, Space, Causation) ର ସ୍ୱତନ୍ତ୍ର ସ୍ଥିତି ନାହିଁ। (ସମୟ) ଦୁଇଟି ଘଟଣା ନ ଘଟିଲେ ସମୟ ଜ୍ଞାନ ହୁଏ ନାହିଁ। ଦେଶ ବା Space ତିନୋଟି ବିନ୍ଦୁ ନ ହେଲେ ଏହାର ପରିକଳ୍ପନା କରିବା ଅସମ୍ଭବ। Time ଓ Space ନ ଥିଲେ Causation ସମ୍ଭବ ନୁହେଁ। Time begins when mind starts ଏବଂ ଏହି ତିନୋଟି ପରସ୍ପର ଉପରେ ନିର୍ଭରଶୀଳ।

ଭକ୍ତି ବ୍ୟତୀତ କେବଳ ଜ୍ଞାନ କେବଳ Intelectual enjoyment ବୋଲି ଶଙ୍କର ହିଁ ବ୍ୟକ୍ତ କରିଛନ୍ତି। ପଞ୍ଚ ମହାଯଜ୍ଞ ତାଙ୍କର ପ୍ରଚେଷ୍ଟା ବଳରେ ଘରେ ଘରେ ପ୍ରତ୍ୟହ ହେଉଛି। ଥରେ ସେ ନିଜର ତିନୋଟି ଭୁଲ ପାଇଁ ଭଗବାନଙ୍କୁ କ୍ଷମା ମାଗିଥିଲେ।

୧) "ତମେ ସର୍ବ ବ୍ୟାପକ ଜାଣି ସୁଦ୍ଧା ମୁଁ ସମସ୍ତ ତୀର୍ଥ କ୍ଷେତ୍ର ଭ୍ରମଣ କରିଛି ଓ ତୀର୍ଥ ସ୍ଥାନରେ (ଜଳରେ) ସ୍ନାନ କରିଛି। ଏଥିପାଇଁ ମୋତେ କ୍ଷମା କରନ୍ତୁ।"

୨) ତୁମେ ଗୁଣାତୀତ ଓ ସର୍ବବ୍ୟାପକ ଜାଣି ସୁଦ୍ଧା ଶୟନେ, ସପନେ, ଜାଗରଣେ ତୁମକୁ ହୃଦୟରେ ବାନ୍ଧି ରଖିଛି। ଏହି ଭୁଲ ପାଇଁ ମୋତେ କ୍ଷମା କରନ୍ତୁ।

୩) ତମେ ଗୁଣାତୀତ ଜାଣି ସୁଦ୍ଧା ମୁଁ ତମର ଗୁଣଗାନ କରି ଅଷ୍ଟକ ଇତ୍ୟାଦି ରଚନା କରିଛି। ଏଥିପାଇଁ କ୍ଷମା ମାଗୁଛି।

ଶ୍ରୀଧରସ୍ୱାମୀ ଶୁଦ୍ଧାଦ୍ୱୈତ ବାଦର କେବଳ ଭକ୍ତିର ପ୍ରାଧାନ୍ୟ ଦେଇଥିଲେ। ଜ୍ଞାନ ଓ ଭକ୍ତିର ସଂଯୋଗ କରି ସେ ଏକପ୍ରକାର ସମନ୍ୱୟତା ଆଣିଥିଲେ। ଭକ୍ତି ଯୋଗ ଦ୍ୱାରା ଭଗବତ ଦର୍ଶନ, ଭଗବତ ତତ୍ତ୍ୱରେ ପ୍ରବେଶ ଓ ଭଗବତ ତତ୍ତ୍ୱ ଜ୍ଞାନ ତିନୋଟି ମିଳିଥାଏ। ଅନ୍ୟ କୌଣସି ଯୋଗରେ ମିଳି ନଥାଏ। ତେଣୁ ଭକ୍ତି ଯୋଗର ପ୍ରାଧାନ୍ୟତା ଉପରେ ଶ୍ରୀକୃଷ୍ଣ ଗୁରୁତ୍ୱ ଦେଇଥିଲେ। ଶ୍ରୀଧର

ସ୍ୱାମୀ ଏହାକୁ ଗ୍ରହଣ କରିଥିଲେ ।

ମୁଖ୍ୟତଃ ଏହାହିଁ କେବଳାଦ୍ୱୈତ ଓ ବିଶୁଦ୍ଧାଦ୍ୱୈତ ମଧ୍ୟରେ ପ୍ରଭେଦ । ଶଙ୍କର ବ୍ରହ୍ମଙ୍କୁ ଜ୍ଞାନ ମାତ୍ର କହିଛି । ଶ୍ରୀଧର ବ୍ରହ୍ମଙ୍କୁ ଜ୍ଞାନ ଓ ଜ୍ଞାତ ଉଭୟ ବୋଲି କହିଛନ୍ତି ।



କଅଁରାଳୀ,
ରେମୁଣା, ବାଲେଶ୍ୱର ।

# ମାଝୁର ଗ୍ରାମ ଓ ଶ୍ରୀଧର ସ୍ୱାମୀ

• ପଣ୍ଡିତ ଉମାକାନ୍ତ ପଣ୍ଡା

ଗୋସ୍ୱାମୀ ଶ୍ରୀଧର ମହୋଦୟଙ୍କ ସମ୍ବନ୍ଧରେ ଐତିହାସିକମାନେ କାଳାଦି ନିରୂପଣ କ୍ଷେତ୍ରରେ ଏକମତ ହୋଇ ନ ଥିଲେ ହେଁ ଗବାଂ - ଇନ୍ଦ୍ରିୟାଣାଂ, ସ୍ୱାମୀ - ଅଧିପତିଃ - ଗୋସ୍ୱାମୀ, ଅର୍ଥାତ ସେ ଜିତେନ୍ଦ୍ରିୟ ଥିଲେ । ଏଥିରେ କାହାରି ବିରୋଧ ନାହିଁ । ଶ୍ରୀଧର ବେଦାନ୍ତ ଦର୍ଶନରେ ପଣ୍ଡିତ ଥିଲେ । ଏହାର ପ୍ରମାଣ ସ୍ୱରୂପ ଅଥର୍ବ ବେଦ କର୍ମ କାଣ୍ଡ ସୂତ୍ର, ''କର୍ମ ସମୁଚ୍ଚୟ ବା କର୍ମ ପଞ୍ଜିକା'' ନାମକ ଗ୍ରନ୍ଥର ରଚୟିତା ହେଉଛନ୍ତି ଶ୍ରୀଧର ମହୋପାଧ୍ୟାୟ । ଅଥର୍ବ ବେଦର ଅନ୍ୟ ନାମ ବ୍ରହ୍ମ ବେଦ । ସାର୍ଦ୍ଧ ତିନି ମାତ୍ରା ବିଶିଷ୍ଟ ପ୍ରଣବ ଓଁକାର ର ଶେଷ ବିନ୍ଦୁ ରୂପ ଅର୍ଦ୍ଧମାତ୍ରା ଅଥର୍ବବେଦ ଅଟେ । ମୁଣ୍ଡକାଦି ଉପନିଷଦରେ ଏହା ସୁସ୍ପଷ୍ଟ । ବେଦାନ୍ତ ଦର୍ଶନର ମୂଳ ମୁଣ୍ଡକାଦି ଉପନିଷଦ ଅଥର୍ବବେଦୀୟ ଅଟେ । ଅଥର୍ବ ବେଦ କର୍ମ କାଣ୍ଡାଭିଜ୍ଞ ପୁରୋହିତ ମାନେ ଭୂଧର ମହୋପାଧ୍ୟାୟ ଓ ତତ୍‌ପରବର୍ତ୍ତୀ ଶ୍ରୀଧର ମହୋପାଧ୍ୟାୟଙ୍କୁ ଭୁଲି ପାରିବେ ନାହିଁ । ଉପେତ୍ୟ ଅଧୀୟତେ ଅସ୍ମାଦିତି ଉପାଧ୍ୟାୟଃ । ଉପ - ଅଧି - ଇଙ୍ + ଘଞ୍ ପ୍ରତ୍ୟୟ ଯୁକ୍ତ ଉପାଧ୍ୟାୟ ଶବ୍ଦ ଅଟେ । ମନୁସ୍ମୃତି ଅନୁସାରେ ''ଏକ ଦେଶନ୍ତୁ ବେଦସ୍ୟ ବେଦାଙ୍ଗାନ୍ୟପି ବା ପୁନଃ । ଯୋଽଧ୍ୟାପୟତି ବୃତ୍ତ୍ୟର୍ଥଂ ସ ଉପାଧ୍ୟାୟ ଉଚ୍ୟତେ'' ବେଦାଦି ବିଦ୍ୟା ଶିକ୍ଷକଙ୍କୁ ଉପାଧ୍ୟାୟ କୁହାଯାଏ । ମହାନ୍ ଉପାଧ୍ୟାୟଃ - ମହୋପାଧ୍ୟାୟଃ । ଏହା ଶ୍ରୀଧରଙ୍କର ଉପାଧି ବା ପଦବୀ ଥିଲା । ସେ ପ୍ରଥମେ ମହୋପାଧ୍ୟାୟ ରୂପେ ପରିଚିତ ଥିଲେ । ପରେ ଗୋସ୍ୱାମୀ ପଦବୀରେ ଭୂଷିତ ହୋଇଥିଲେ । ଏହାର ପ୍ରମାଣ ଅଦ୍ୟାପି ଅପ୍ରକାଶିତ କର୍ମ ସମୁଚ୍ଚୟ ଗ୍ରନ୍ଥ । ଏ ଗ୍ରନ୍ଥ ଗୁହ୍ୟାପାଳ ଗ୍ରାମରେ ଅମ୍ବୁଜାକ୍ଷ ଘରେ ତାଳପତ୍ର ପୋଥି ରୂପେ ରହିଅଛି । ସେଥିରେ ତନ୍ନୀଧାୟଚି ନାହିଁ । ସେ ଜାତିରେ ବାହ୍ମଣ ଓ ଶ୍ରୀ ନୃସିଂହ ଭକ୍ତ ଥିଲେ, ଯେଉଁ ସମୟରେ ଓଡିଶା ଉଡ୍ର, କଳିଙ୍ଗ ନାମରେ ପରିଚିତ ଥିଲା ସେହି ସମୟରେ ସେ ଏଠାକାର ଅଧିବାସୀ ଥିଲେ । ଅଥର୍ବ ବେଦର ଇଷ୍ଟଦେବ ଶ୍ରୀ ନୃସିଂହ ଅଟନ୍ତି । ଏଣୁ ଅଥର୍ବ ବେଦାଭିଜ୍ଞ ଶ୍ରୀଧର ସ୍ୱରଚିତ ''କର୍ମ ସମୁଚ୍ଚୟ'' ଗ୍ରନ୍ଥାରମ୍ଭ ଓ ଅଧ୍ୟାୟ ଶେଷରେ ଓଁ ଶ୍ରୀ ଲକ୍ଷ୍ମୀ ନୃସିଂହାୟ ନମଃ ଉଲ୍ଲେଖ ପୂର୍ବକ ସ୍ତୁତିମାନ ଲେଖିଛନ୍ତି । ଶ୍ରୀକ୍ଷେତ୍ରୋଡ୍ରେ ବସାନଂ ନରହରିମନିଶଂ ଚିନ୍ତ୍ୟମାମ୍‌ସ୍ୱରୂପମ୍ ଇତ୍ୟାଦି । ଉପର୍ଯୁକ୍ତ ଗ୍ରନ୍ଥ ରଚନା କାଳରେ ସେ କୃଷ୍ଣଭକ୍ତ ହୋଇଥିଲେ । ବିବାହ କର୍ମର ପଞ୍ଚମ ସଂସ୍କାର ଚତୁର୍ଥୀ କର୍ମର ବୈଦିକ ବିଧିସୂତ୍ର ଉଲ୍ଲେଖ କରିବା ପରେ ସୌର୍ଯ୍ୟବିବାହ ନାମକରଣ

ସମ୍ବନ୍ଧରେ ଦର୍ଶାଇବାକୁ ଯାଇ ସେ ଭୂଧର ମହୋପାଧ୍ୟାୟଙ୍କର ଅଭିମତ ଉଲ୍ଲେଖ କରିଛନ୍ତି ଏବଂ ଶ୍ରୀକୃଷ୍ଣାୟ ନମଃ, ମାଂ ପାତୁ ମାଧବଃ, ବୋଲି ଉଲ୍ଲେଖ କରିଛନ୍ତି । "ଆଙ୍ଗିରସ କଳ୍ପ" ଯାହାକି ଅଥର୍ବ ବେଦାନ୍ତର୍ଗତ ବଶାଦି ଷଟ୍ କର୍ମ ସାଧନ ପ୍ରକ୍ରିୟା ପୂର୍ଣ୍ଣ ଗ୍ରନ୍ଥ ଅଟେ, ସେଥିରେ ଶ୍ରୀଧରଙ୍କର ତନ୍ତ୍ରାଧ୍ୟାୟଟି ରହିବା ସଙ୍ଗେ ସଙ୍ଗେ ଭୂଧର ମହୋପାଧ୍ୟାୟ ରଚିତ ଆସୁରୀକଳ୍ପୋଦ୍ଭବ "ଆସୁରୀ ଦୀପିକା" ନାମକ ଗ୍ରନ୍ଥ ମଧ୍ୟ ରହିଅଛି । ଏ ଗ୍ରନ୍ଥ ମଧ୍ୟ ଅପ୍ରକାଶିତ । "ପୈପ୍ପଲାଦବିବାହାଦି ସଂସ୍କାର ପଦ୍ଧତି" ନାମକ ଗ୍ରନ୍ଥକୁ ସଂଶୋଧନ ପୂର୍ବକ ପ୍ରକାଶ କରିବା ପରେ ବର୍ତ୍ତମାନ ମୁଁ ଆଙ୍ଗିରସ କଳ୍ପର ପ୍ରକାଶ ନିମନ୍ତେ ସଂଶୋଧନାଦି କାର୍ଯ୍ୟ ସଂପାଦନ କରୁଅଛି । ଶ୍ରୀଧରଙ୍କର ପିତାଙ୍କ ନାମ ହରିହର ଅଟେ । ସ୍ୱୟଂ ଶ୍ରୀଧର ଏହା ଉଲ୍ଲେଖ କରିଛନ୍ତି ।

ବ୍ରହ୍ମବେଦେ ଚ ନିଷ୍ଣାତଃ କୃତୀ ହରିହରାଽଽତ୍ମଜଃ ।
ପ୍ରାୟଶ୍ଚିତ୍ତତ୍ରୟଂ ହ୍ୟେତ ନୃସିଂହାଽନୁଗ୍ରହାତ୍ କୃତଃ ॥

ଏହି ଶ୍ଳୋକରୁ ସୁସ୍ପଷ୍ଟ ଯେ ଶ୍ରୀଧରଙ୍କର ପିତା ହରିହର ଏବଂ ଶ୍ରୀଧର ଅଥର୍ବ ବେଦରେ ସୁପଣ୍ଡିତ ଥିଲେ । ମହୋପାଧ୍ୟାୟହିଁ ପ୍ରଧାନ ବେଦ ଶିକ୍ଷକ ସୂଚକ ଅଟେ । ଜ୍ୟୋତିଷ ଶାସ୍ତ୍ରରେ ମଧ୍ୟ ସେ ଜ୍ଞାନୀ ଥିଲେ । ସ୍ୱରଚିତ ଗ୍ରନ୍ଥରେ ଶୁଭଦିନ ନିର୍ଦ୍ଧାରଣ କ୍ଷେତ୍ରରେ ବହୁ ଜ୍ୟୋତିଃଶାସ୍ତ୍ରର ପ୍ରମାଣ ଦେଇଛନ୍ତି । ରେମୁଣା ଶ୍ରୀ ଗୋପୀନାଥଙ୍କର ପୀଠ ଓ ଶ୍ରୀଧର କୃଷ୍ଣ ଭକ୍ତ, ତେଣୁ ମୟୂର ଗ୍ରାମ (ମେରେଇ ଗାଁ) ତାଙ୍କର ବାସସ୍ଥାନ ହେବା ସ୍ୱାଭାବିକ ଅଟେ । ଏ ସବୁକୁ ବିଚାର କଲେ ଯିଏ ଶ୍ରୀଧର ମହୋପାଧ୍ୟାୟ ଥିଲେ, ସେ ହିଁ ପରବର୍ତ୍ତୀ କାଳରେ ଶ୍ରୀଧର ଗୋସ୍ୱାମୀ ରୂପରେ ପ୍ରତିଷ୍ଠିତ ହେଲେ ।

॥ ଇତି ॥

ସୁତେଇ ବଡଗାଁ, ବାଲେଶ୍ୱର,
ତା ୨୪ । ୧୧ । ୨୦୦୧ ।

## ଶ୍ରୀଧର ସ୍ୱାମୀଙ୍କ ସଂପର୍କରେ ସହାୟକ ପାଠ୍ୟସୂଚୀ

● ଡଃ. ଭାଗବତ ପ୍ରସାଦ ଦାସ


### ପୁସ୍ତକ -

୧. ପଟ୍ଟନାୟକ, ରାଜକିଶୋର
ସିଂହଦେବ, ଗୌରେନ୍ଦ୍ର ପ୍ରତାପ
ସିଂହଦେବ, ଶ୍ରୀଶେଷ ପ୍ରତାପ
'ଶମ୍ଭୁକ୍ଷେତ୍ର କପିଳାସ ଓ ଶ୍ରୀଧର ସ୍ୱାମୀ' ୧୯୮୦, ଦାଶରଥି ପୁସ୍ତକାଳୟ, କଟକ - ୨

### ପ୍ରବନ୍ଧ/ଆଲୋଚନା -

୨. ଆଚାର୍ଯ୍ୟ, ବଳଦେବ ଉପାଧ୍ୟାୟ - 'ଭାରତୀୟ ଦର୍ଶନ' ।

୩. କବିରାଜ, ଶ୍ରୀକ୍ରିଷ୍ଣ ଦାସ - 'ଚୈତନ୍ୟ ଚରିତାମୃତ' ।

୪. ଦାସ, ବଟବିହାରୀ - 'ଶ୍ରୀଧର ସ୍ୱାମୀ', ଝଙ୍କାର, ୩୩ବର୍ଷ, ଶାରଦୀୟ ସଂଖ୍ୟା, ୧୯୮୧ ।

୫. ଦାସ, ଡଃ. ଭାଗବତ ପ୍ରସାଦ -
୫.୧ 'ଶ୍ରୀଧର ସ୍ୱାମୀ' - ଅତୀତକାଳର ଅନାଲୋଚିତ ପ୍ରତିଭା - ୧୯୯୫ - ବିଶ୍ୱପ୍ରକାଶନୀ, ଶ୍ରୀ ନିକେତନ, ଜଳେଶ୍ୱର ।
୫-୨ - 'ରେମୁଣା ଓ ଶ୍ରୀଧର ସ୍ୱାମୀ' - ସ୍ମରଣିକା - ୧୯୯୧-କମ୍ବୁନାରାୟଣ ସଂସ୍କୃତ ବିଦ୍ୟାଳୟ, ରେମୁଣା ।
୫-୩ - 'ପ୍ରସିଦ୍ଧ ଟୀକାକାର ଶ୍ରୀଧର ସ୍ୱାମୀ - ୧୯୯୯-ଉନ୍ମୟନୀ ବାଲେଶ୍ୱର ମହୋତ୍ସବ ।

୬. ଦାସ, ରବିନାରାୟଣ - 'ପ୍ରବାଦପୁରୁଷ ଶ୍ରୀଧର ସ୍ୱାମୀ' - ଫକୀରମୋହନ ମହାବିଦ୍ୟାଳୟ ମୁଖପତ୍ର - ୧୯୯୭ ।

୭. ନନ୍ଦ. ରାମଚନ୍ଦ୍ର - 'ଢେଙ୍କାନାଳ ଇତିହାସ' - ୧୯୨୯ ।

୮. ପଟ୍ଟନାୟକ, ଭକ୍ତକବିମାଧବ - 'ବୈଷ୍ଣବ ଲୀଳାମୃତ' - ପ୍ରକାଶକ - ପ୍ରଦୀପ ପବ୍ଲିକେଶନ, ଆନନ୍ଦବୁକ୍ ସହିଲ, ସମ୍ବଲପୁର ।

୯. ବାବାଜୀ, ଲାଲଦାସ - ଶ୍ରୀ ଶ୍ରୀ ଭକ୍ତିମାଳା ଗ୍ରନ୍ଥ ।

୧୦. ମହତାବ, ହରେକୃଷ୍ଣ - ଓଡ଼ିଶା ଇତିହାସ (ତୃତୀୟ ଖଣ୍ଡ) ୧୯୯୯ (ପରିମାର୍ଜିତ ଚତୁର୍ଥ ସଂସ୍କରଣ)

| | |
|---|---|
| | ହରେକୃଷ୍ଣ ମହତାବ ଫାଉଣ୍ଡେସନ, ବିହାରୀ ବାଗ, କଟକ - ୨ । |
| ୧୧. ମହାପାତ୍ର, ଗୋଲୋକ ଚନ୍ଦ୍ର - | 'ଯୁଗେ ଯୁଗେ ବାଲେଶ୍ୱର' - ୧୯୮୭, ଶ୍ରମିକ ସମବାୟ ପ୍ରେସ୍, ବାଲେଶ୍ୱର । |
| ୧୨. ମହାରଣା, ଲକ୍ଷ୍ମୀନାରାୟଣ - | ୧୨.୧ - କ୍ଷୀରଚୋରା ରସିକ ବିନୋଦ ୧୯୮୮, ବିକାଶ ପ୍ରିଣ୍ଟର୍ସ, ବାଲକୃଷ୍ଣ ରୋଡ଼, କଟକ - ୧<br>୧୨.୨ - ଶ୍ରୀରାଧା ସନ୍ଦର୍ଭ - ୧୯୯୮, ଲଳିତକଳା ନିବାସ, ମଡୁଆ । |
| ୧୩. ମହାନ୍ତି, ଡଃ ପ୍ରହ୍ଲାଦ ଚରଣ - | 'ବାଲେଶ୍ୱରର ଦୁଇ ବିଶ୍ୱ ପ୍ରସିଦ୍ଧ ସଂସ୍କୃତ ଭାଷ୍ୟକାର - ଦୈନିକ ସମ୍ବାଦ - ୪ର୍ଥ ସ୍ୱନକ୍ଷତ୍ରବିଶେଷାଙ୍କ । |
| ୧୪. ମହାରଣା, ଶ୍ରୀ ଶରତ ଚନ୍ଦ୍ର - | 'ଶ୍ରୀଧର ସ୍ୱାମୀ', ଦୈନିକ ସମାଜ - ତା ୨୮-୧୧-୭୭ |
| ୧୫. ମିଶ୍ର, ଅନ୍ତର୍ଯ୍ୟାମୀ - | ୧୫.୧ - ପୂଣ୍ୟପୀଠ କପିଳାସ - ପ୍ରକାଶକ Director, Publication Division, Patiala House, New Delhi.<br>୧୫.୨ - ବିଶ୍ୱ ପ୍ରସିଦ୍ଧ ଟୀକାକାର - ସାପ୍ତାହିକ ସମାଜ, ଶ୍ରୀଧର ସ୍ୱାମୀ ୭ଜୁନ୍ ୧୯୯୫ ସଂଖ୍ୟା ।<br>୧୫.୩ - ବିସ୍ମୃତ ପ୍ରାୟ ଟୀକାକାର ଶ୍ରୀଧର ସ୍ୱାମୀ - ଦୈନିକ ପ୍ରଜାତନ୍ତ୍ର - ୧୪.୨.୯୭ତାରିଖ<br>୧୫.୪ - ଓଡ଼ିଶାର ଗର୍ବ ଓ ଗୌରବ ଟୀକାକାର ଶ୍ରୀଧର ସ୍ୱାମୀ - ଦୈନିକ ପ୍ରଜାତନ୍ତ୍ର - ୨୪.୧.୧୯୯୯ ।<br>୧୫.୫ - ବିସ୍ମୃତି ପ୍ରାୟ ଭାଷ୍ୟକାର ଶ୍ରୀଧର ସ୍ୱାମୀ - ଦୈନିକ ସମୟ - ୧୧.୩.୧୯୯୮ ।<br>୧୫.୬ - ବିଶ୍ୱ ପ୍ରସିଦ୍ଧ ଟୀକାକାର ଶ୍ରୀଧର ସ୍ୱାମୀ - କୋଣାର୍କ - |

୧୦୭ ସଂଖ୍ୟା
୧୫.୭ - ଭାରତୀୟ ଧର୍ମ ଓ ଦର୍ଶନକୁ ଶ୍ରୀଧର ସ୍ୱାମୀଙ୍କ ଅବଦାନ
ଦୈନିକ ସମାଜ -
୧୩ ଫେବୃୟାରୀ - ୨୦୦୦

୧୬. ଶତପଥୀ, ଡଃ ନିତ୍ୟାନନ୍ଦ - ଓଡ଼ିଆ ଭାଗବତ ଓ ଓଡ଼ିଆ ସାହିତ୍ୟର ଏହାର ପ୍ରତିଧ୍ୱନି - ୧୮୮୯ - କୋଣାର୍କ - ପଞ୍ଚସଖା ବିଶେଷାଙ୍କ - ଓଡ଼ିଶା ସାହିତ୍ୟ ଏକାଡେମୀ ଭୁବନେଶ୍ୱର ।

୧୭. ସ୍ମରଣିକା - ଢେଙ୍କାନାଳ ଜିଲ୍ଲା ଲେଖକ ସମ୍ମିଳନୀ - ୧୯୭୯ - ସଂପାଦକ - ବସନ୍ତ କୁମାର ମହାପାତ୍ର ।

୧୮. ସିଂହଦେବ ଶ୍ରୀ ଶେଷ ପ୍ରତାପ - 'ଦୈନିକ 'ସମାଜ' - ୨୭.୨.୭୮
ସିଂହଦେବ ଗୌରେନ୍ଦ୍ର ପ୍ରତାପ
ପ୍ରତିଭା କୁମାରୀ ଦେବୀ ।

ହିନ୍ଦୀ/ ବଂଗଳା -

୧. ଉତ୍କଳ ରତ୍ନ ସଂଗ୍ରହ (ହିନ୍ଦୀ)
୨. ଅଚିନ୍ତ୍ୟଭେଦାଭେଦ (ବଂଗଳା) ସୁନ୍ଦରାନନ୍ଦ ବିଦ୍ୟାବିନୋଦ ।
୩. ଗୌଡୀୟାର ତିନି ଠାକୁର - ସୁନ୍ଦରାନନ୍ଦ ବିଦ୍ୟା ବିନୋଦ, ପ୍ରକାଶକ - ଗୌଡୀୟମିଶନ୍, କଲିକତା - ୭

English -

1. An outline of the religious literature of India - by J. N. Farquhar, (1967 Ed)
2. Gazetter of India - Orissa (Puri District)
3. History of Orissa - Dr. K. C. Panigrahi.
4. The History of Medieval Vaishnavism in Orissa - Pravat Mukherjee.
5. Studies on Orissa History, Archaeology & Archives - Padmashree Paramananda Acharya.

# ପୃଷ୍ଠଲେଖ

ଶ୍ରୀଧର ସ୍ୱାମୀ ସ୍ମୃତି ଜାତୀୟ ଜୀବନର ଉତ୍ସ । ପୂର୍ବସୂରୀ ସ୍ମରଣ ହିଁ ସଭ୍ୟତାର ପରିମାପକ । ଯେଉଁ ଜାତି ଆପଣାର ଐତିହାସିକ ବରପୁତ୍ରମାନଙ୍କୁ ଉପଯୁକ୍ତ ସମ୍ମାନ ପ୍ରଦର୍ଶନ କରେ ସେହି ଜାତି ଉନ୍ନତ । କ୍ଷୋଭର ବିଷୟ ଏହି ମହାନ ସାଧକଙ୍କ ସ୍ମୃତିରକ୍ଷା ପାଇଁ ଆଖିଦୃଶିଆ ସ୍ମୃତି ମନ୍ଦିରଟିଏ କିମ୍ବା ତାଙ୍କ ସମ୍ବନ୍ଧରେ ପୂର୍ଣ୍ଣାଙ୍ଗ ପୁସ୍ତକଟିଏ ପ୍ରକାଶିତ ହୋଇନାହିଁ । ପୂଜ୍ୟ ପୂଜାର ବ୍ୟତିକ୍ରମ ଏକ ଜାତି ପ୍ରତି ଶକ୍ତ ଆଘାତ । ଆନନ୍ଦ ଏବଂ ଗର୍ବର କଥା ଆମ ପରିଷଦର କାର୍ଯ୍ୟକାରୀ ସଭାପତି ଗବେଷକ ଡଃ ଭାଗବତ ପ୍ରସାଦ ଦାସ ଦୀର୍ଘଦିନ ଧରି ବହୁ ଶ୍ରମସ୍ୱୀକାର କରି ଶ୍ରୀଧର ସ୍ୱାମୀଙ୍କ ସଂପର୍କରେ ଦୁଷ୍ପ୍ରାପ୍ୟ ଲେଖାମାନ ସଂଗ୍ରହ କରି ସଂକଳନଟିଏ କରିଛନ୍ତି । ସେଥିପାଇଁ ତାଙ୍କୁ ଗଭୀର କୃତଜ୍ଞତା ଜଣାଉଅଛି ।

ଶ୍ରୀଧର ସ୍ୱାମୀଙ୍କ ଜନ୍ମପୀଠ ମୟୂରଗ୍ରାମକୁ ୧୯୫୬ ମସିହାରେ ଶିବାନନ୍ଦ ସ୍ୱାମୀ ନାମରେ ଜଣେ ଗୌଡୀୟ ଆସି ସେହି ଗ୍ରାମ ଶ୍ରୀଧର ସ୍ୱାମୀଙ୍କର ବୋଲି ଘୋଷଣା କରିଥିଲେ । ସ୍ୱାମୀଜୀଙ୍କର ଉପଦେଶ କ୍ରମେ ତତ୍‌କାଳୀନ ସମୟର କେତେକ ଉତ୍ସାହୀ ଯୁବକ ପ୍ରତିବର୍ଷ ମାଘ ସପ୍ତମୀରେ ଶ୍ରୀଧର ସ୍ୱାମୀଙ୍କର ଜୟନ୍ତୀ ପାଳନ କରିବାକୁ ଶୁଭାରମ୍ଭ କରିଥିଲେ । ସେହି ଦିନଠାରୁ ଅଦ୍ୟାବଧି ଶ୍ରୀଧର ସ୍ୱାମୀଙ୍କ ଜୟନ୍ତୀ ସେହି ନିର୍ଦ୍ଦିଷ୍ଟ ତିଥିରେ ପାଳିତ ହେଉଅଛି ।

ଶ୍ରୀଧର ସ୍ୱାମୀଙ୍କ ନାମାନୁସାରେ ମୟୂରଗ୍ରାମରେ କେତେକ ଅନୁଷ୍ଠାନ ଗଢ଼ି ଉଠିଛି । ତନ୍ମଧ୍ୟରୁ ଶ୍ରୀଧର ସ୍ୱାମୀ ଉ.ପ୍ରା. ବିଦ୍ୟାଳୟ ଓ ଶ୍ରୀଧର ସ୍ୱାମୀ ନିମ୍ନମାଧ୍ୟମିକ ବିଦ୍ୟାଳୟ ଓ ଶ୍ରୀଧର ସ୍ୱାମୀ ପାଠାଗାର । ଶ୍ରୀଧର ସ୍ୱାମୀ ପାଠାଗାର ୧୯୫୭ ମସିହାରେ ପ୍ରତିଷ୍ଠା କରାଯାଇଥିଲା ।

ଶ୍ରୀଧର ସ୍ୱାମୀଙ୍କ ସ୍ମୃତିରକ୍ଷା ପାଇଁ ୧୯୬୦ ମସିହାରେ ମୟୂରଗ୍ରାମରେ 'ଶ୍ରୀଧର ସ୍ୱାମୀ ସ୍ମୃତି ପରିଷଦ' ନାମରେ ଏକ ପରିଷଦ ଗଠନ କରାଯାଇ ୧୯୮୦ ମସିହାରେ ଏହା ସରକାରଙ୍କ ଦ୍ୱାରା ସ୍ୱୀକୃତି ଲାଭ କରିଛି । ଏବେ ଆମ୍ଭମାନଙ୍କ ଉଦ୍ୟମରେ ଶ୍ରୀଧର ସ୍ୱାମୀଙ୍କ ସ୍ମୃତି ପୀଠଟିଏ ନିର୍ମାଣ ହୋଇପାରିଛି ।

ଶ୍ରୀଧର ସ୍ୱାମୀଙ୍କ ଜୟନ୍ତୀ ୧୯୯୬ ପର୍ଯ୍ୟନ୍ତ କେବଳ ରେମୁଣା ବ୍ଲକ୍ ମଧ୍ୟରେ ସୀମିତ ରହିଥିଲା । ଆନନ୍ଦର ବିଷୟ ୧୯୯୭ ମସିହା ଠାରୁ ଓଡ଼ିଶା ସାହିତ୍ୟ ଏକାଡେମୀ ଶ୍ରୀଧର ସ୍ୱାମୀଙ୍କ ରାଜ୍ୟସ୍ତରୀୟ ଜୟନ୍ତୀ ତାଙ୍କ ଜନ୍ମପୀଠରେ ପାଳନ କରିଆସୁଛି । ବିଶ୍ୱ ପ୍ରସିଦ୍ଧ ଟୀକାକାର ପଣ୍ଡିତ ଶ୍ରୀଧର ସ୍ୱାମୀଙ୍କ ସଂକଳନଟି ଆତ୍ମପ୍ରକାଶ କରିବା ଓଡ଼ିଆ ଜାତି ପାଇଁ ଏକ ଗୌରବର କଥା । ଏହି ଉଦ୍ୟମ ପ୍ରଥମଥର ହେଉଥିବାରୁ ସଂକଳକ ଡଃ ଭାଗବତ ପ୍ରସାଦ ଦାସ ଏବଂ ତାଙ୍କୁ ସାହାଯ୍ୟ କରିଥିବା ସମସ୍ତ ଶୁଭେଚ୍ଛୁ ବନ୍ଧୁ ଓ କର୍ମକର୍ତ୍ତାଙ୍କୁ ପରିଷଦ ତଥା ଜନ ସାଧାରଣଙ୍କ ତରଫରୁ ଆନ୍ତରିକ ଧନ୍ୟବାଦ ଜଣାଉଛି ।

ସଂକଳନଟି ସୁଧୀ ପାଠକବର୍ଗଙ୍କ ମଧ୍ୟରେ ଆଦୃତି ଲାଭ କରିବ ବୋଲି ଆଶା ଓ ବିଶ୍ୱାସ । ପରିଷଦର ନିଜସ୍ୱ ପାଣ୍ଠି ନାହିଁ । ପୁସ୍ତକଟି ପ୍ରକାଶ ପାଇଁ କେତେକ ବଦାନ୍ୟ ବ୍ୟକ୍ତିଙ୍କ ଠାରୁ ଅର୍ଥ ସାହାଯ୍ୟ ଆଣି ସୁଦ୍ଧା ବହୁ ଟଙ୍କା ଧାରସୂତ୍ରରେ ଆଣିଛୁ । ତେଣୁ ଜନସାଧାରଣଙ୍କୁ ଓ ବୁଦ୍ଧିଜୀବୀଙ୍କୁ ଅନୁରୋଧ କରିବି, ପ୍ରତ୍ୟେକ ପୁସ୍ତକଟିକୁ କ୍ରୟ କରି ପରିଷଦକୁ ଋଣମୁକ୍ତ କରାଇବେ । ଆମ ଅଞ୍ଚଳ ତଥା ଓଡିଶାର ଗର୍ବ ଗୌରବର ମହାପୁରୁଷଙ୍କ ଗୌରବ ଗାଥା ଏହି ପୁସ୍ତକରେ ଲିଖିତ । ଆଶା ଆପଣମାନେ ନିଶ୍ଚିତ ସାହାଯ୍ୟର ହାତ ବଢ଼ାଇ ଆମକୁ ଉତ୍ସାହିତ କରିବା ସହିତ ପୁସ୍ତକଟିକୁ ପାଠକଲେ ଆମର ଶ୍ରମ ସାର୍ଥକ ହେବ ।

**ଜୟ ଗୋପୀନାଥ !**

***ଶ୍ରୀ ପ୍ରତାପ ଚନ୍ଦ୍ର ପଣ୍ଡା***
ସଭାପତି
ଶ୍ରୀଧର ସ୍ୱାମୀ ସ୍ମୃତି ପରିଷଦ,
ମୟୂରଗ୍ରାମ, ରେମୁଣା - ୭୫୬୦୧୯



ଓଡ଼ିଶା ସାହିତ୍ୟ ଏକାଡ଼େମୀ ଓ ଶ୍ରୀଧର ସ୍ୱାମୀ ସ୍ମୃତି ପରିଷଦ ଆନୁକୂଲ୍ୟରେ
ରାଜ୍ୟସ୍ତରୀୟ ଶ୍ରୀଧର ସ୍ୱାମୀ ଜୟନ୍ତୀ ଉତ୍ସବ । - ମୟୂରଗ୍ରାମ
ବାମରୁ - ଡ଼ାହାଣ - ୧) କବି ଶ୍ରୀଯୁକ୍ତ ବ୍ରଜ ରଥ, ୨) ଡ଼ଃ ଭାଗବତ ପ୍ରସାଦ ଦାସ
୩) ପଣ୍ଡିତ ଘନଶ୍ୟାମ ମିଶ୍ର. ୪) ଶ୍ରୀଯୁକ୍ତ ଇନ୍ଦୁଭୂଷଣ କର (ପୂର୍ବତନ ସମ୍ପାଦକ
ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର)



**ଶ୍ରୀଯୁକ୍ତ ଶଶିଭୂଷଣ ପତି**
(ଶ୍ରୀଧର ସ୍ୱାମୀଙ୍କ ବଂଶଧର)



ଶ୍ରୀଧର ସ୍ୱାମୀ ଉ.ପ୍ରା. ବିଦ୍ୟାଳୟ ଓ
ଶ୍ରୀଧର ସ୍ୱାମୀ ନିମ୍ନ ମାଧ୍ୟମିକ ବିଦ୍ୟାଳୟ, ମୟୂରଗ୍ରାମ ।



ଶ୍ରୀଧର ସ୍ୱାମୀ ସ୍ମୃତି ଭବନ, ମୟୂରଗ୍ରାମ ।



ସମ୍ମୁଖ ଭାଗରେ - ଶ୍ରୀଧର ସ୍ୱାମୀଙ୍କ ସମାଧି
ପଛଭୂମିରେ - ଶ୍ରୀ ବୃଦ୍ଧେଶ୍ୱରଙ୍କ ମନ୍ଦିର, କପିଳାସ ।



ଶ୍ରୀଧର ସ୍ୱାମୀ ସ୍ମୃତିପୀଠ, ମୟୂରଗ୍ରାମ ।

# ବାଲେଶ୍ୱର ଜିଲ୍ଲା ମାନଚିତ୍ର




■ ମୟୂରଗ୍ରାମ - ପଣ୍ଡିତ ଶ୍ରୀଧର ସ୍ୱାମୀଙ୍କ ଜନ୍ମ ସ୍ଥାନ ।

ସୂଚନା - ବାଲେଶ୍ୱର ବସ୍‌ଷ୍ଟାଣ୍ଡରୁ ପଶ୍ଚିମକୁ ଟାଉନ୍ ବସ୍ କିମ୍ବା ଟ୍ରେକରରେ (୬ କି.ମି.) ଆସି ଶ୍ରୀ ଶ୍ରୀ କ୍ଷୀରଚୋରା ଗୋପୀନାଥ ମନ୍ଦିରରେ ପହଞ୍ଚିବେ । ମନ୍ଦିର ଠାରୁ ଉତ୍ତରକୁ ୩ କି.ମି. ପରେ ଶ୍ରୀ ଶ୍ରୀଧର ସ୍ୱାମୀଙ୍କ ଜନ୍ମସ୍ଥାନ ।

